# କିମ୍ବଦନ୍ତୀ ବହୁଳ କେନ୍ଦୁଝର

ଲେଖକ :

**ଶ୍ରୀ ଶତ୍ରୁଘ୍ନ ମହାନ୍ତ**

କାଶୀପୁର

କେନ୍ଦୁଝର

ପ୍ରକାଶିକା :

**ଶ୍ରୀମତୀ ଶକୁନ୍ତଳା ମହାନ୍ତ**

କାଶୀପୁର

କେନ୍ଦୁଝର

ପ୍ରଥମ ପ୍ରକାଶ :

**ପବିତ୍ର ସୁନିଆଁ — ବାମନ ଜନ୍ମ**

**୧୫।୯।୧୯୮୭**

ଦ୍ୱିତୀୟ ସଂଶୋଧିତ ଓ ପରିବର୍ଦ୍ଧିତ ସଂସ୍କରଣ :

**୧୯୯୫**

ମୁଦ୍ରାକର :

**ଶ୍ରୀ କେଶବ ଚରଣ ରଥ**

ପ୍ରକାଶ ପ୍ରିଣ୍ଟର୍ସ

କଟକ ୯

ମୂଲ୍ୟ :

**ତିରିଶ ଟଙ୍କା**

**ବନ୍ଧାଇ—ପଇଁତିରିଶ ଟଙ୍କା**



# ଅଭିମତ

କେନ୍ଦୁଝରର ସୁ-ସାହିତ୍ୟିକ ଶ୍ରୀ ଶତ୍ରୁଘନ ମହାନ୍ତ 'କମ୍ବୃଦଲ୍ରୀ ବହୁଳ କେନ୍ଦୁଝର' ନାମକ ପାଣ୍ଡୁଲିପି ପଢ଼ିବାକୁ ଦେଇଥିଲେ । ବର୍ତ୍ତମାନ ତାହା ପୁସ୍ତକ ଆକାର ଧରିବା ପାଇଁ ଯାଉଥିବାରୁ ମୁଁ ଆନନ୍ଦିତ ।

ଏହା କେନ୍ଦୁଝରର ଯେଉଁ ପରମ୍ପରା ଲୋକ ମୁଖରେ ଶୁଣାଯାଏ ତାହାକୁ ଭିତ୍ତି କରି ଲିଖିତ । ଏଥିରେ କେନ୍ଦୁଝରର କେତେକ ପ୍ରଧାନ ଦେବଦେବୀ ପୀଠ ଓ ପ୍ରାକୃତିକ ସୌନ୍ଦର୍ଯ୍ୟର ବର୍ଣ୍ଣନା ଦ୍ୱାରା ଅନେକଙ୍କୁ କେନ୍ଦୁଝର ଐତିହ୍ୟ ବିଷୟ ପରିଚିତ କରିବା ସଙ୍ଗେ ସଙ୍ଗେ ପ୍ରାକୃତିକ ଚିତ୍ରର ଆଭାସ ଦେବ ।

ମୋଗଲ ଓ ମରହଟ୍ଟା ଶାସନ ସମୟରେ କେନ୍ଦୁଝର ରାଜାମାନଙ୍କୁ ଲୋକେ ଝାଡ଼ଖଣ୍ଡ ବାଦଶାହ ବୋଲି ଡାକୁଥିବାର ଲୋକ ମୁଖରୁ ଶୁଣାଯାଏ । ବୋଧହୁଏ ଏହା ସ୍ୱର୍ଗତ ରାଜା ଲକ୍ଷ୍ମୀନାରାୟଣ ଭଞ୍ଜ ବଡ଼ ଦେଉଳ ନିର୍ମାତା ମୋଗଲ ବାହିନୀଙ୍କୁ ପରାସ୍ତ କରି ପଞ୍ଚର ଦୁର୍ଗକୁ ପଶ୍ଚୁଆ ଓ ସଠାଇକୁଳ ସହିତ ତାଙ୍କ ରାଜ୍ୟରେ ସାମିଲ କରିବାର ଓ ମୀନା ଘାଟୀରେ ପଥର ଉପରେ ଖୋଦିତ "ଫିରଙ୍ଗି ଯା' ଲୌହଟି ଆଇ ନ ଦେଖିବୁ ମୀନା ଘାଟୀ"ର କୃତ ଏହା ମଧ୍ୟ କମ୍ବୃଦଲ୍ରୀ ।

ଶ୍ରୀ ମହାନ୍ତ ବହିର ମୁଖବନ୍ଧ ଲେଖିବାର ଭାର ମୋ ଉପରେ ଦେଇଥିବାରୁ ମୁଁ ଉପକୃତ । ଏହି ପୁସ୍ତକ କେନ୍ଦୁଝର ଐତିହ୍ୟ ଲୋକଙ୍କୁ ବିଦିତ କରିବା ଛଡ଼ା

ପ୍ରକୃତ ଶ୍ରେଣୀରେ ଯେ କେନ୍ଦୁଝର ଉପରେ ଏହା ମଧ୍ୟ ଲୋକଲୋଚନକୁ ଅର୍ପିତ । ଅଧିକନ୍ତୁ ଏଠାକାର ପୁରାତନ ଆଦିବାସୀମାନଙ୍କର କଳା ଓ ତାଙ୍କର ସାଧାରଣ ଜୀବନ ବିଷୟର ଆଭାସ ମଧ୍ୟ ଦେବ ।

ଭଞ୍ଜ ପ୍ରକାଶନର ନୀତି ଅନୁଯାୟୀ ଏହି ପୁସ୍ତକର କିୟଦାଂଶ ମୁଦ୍ରଣ ଖର୍ଚ୍ଚ ଟ୍ରଷ୍ଟ ବହନ କରିଥିବାରୁ ଏହି ଦିଗରେ ଏହା ଟ୍ରଷ୍ଟର ପ୍ରଥମ ପଦକ୍ଷେପ ହେତୁ ମୁଁ ଆନନ୍ଦିତ ।

ଲକ୍ଷ୍ମୀନାରାୟଣ ଭଞ୍ଜଦେବ

୧୨।୫।୮୭

ଶ୍ରେଷ୍ଠରସ୍ତୁ ପ୍ରାସାଦ, କେନ୍ଦୁଝର

# ଶ୍ରୀ ଲୋକନାଥ ମିଶ୍ର

ସ୍ଥାନ—କେନ୍ଦୁଝର
ତା ୨୦।୪।୧୯୮୮

ଶ୍ରୀ ଶତ୍ରୁଘ୍ନ ମହାନ୍ତି ଜଣେ ଖ୍ୟାତନାମା, ହୃଦୟଗ୍ରାହୀ, ସାହିତ୍ୟ ସେବୀ ଏବଂ ମନିଷି ମଧ୍ୟରେ ଜଣେ ଦରଦୀ ମଣିଷ । ସେ ଜଣେ ଦୁଃଖୀ ମଧ୍ୟ । ଦୁଃଖ କିନ୍ତୁ ତାଙ୍କ କଲମର ଓଜନ ପାଖରେ ହାର ମାନିଛି । କ୍ଷୁଦ୍ର ପରିସର ମଧ୍ୟରେ ସେ ନିଜର ଜୀବିକା ପାଇଁ ଷ୍ଟେନୋଗ୍ରାଫିକୁ ବାଛି ନେଇଥିଲେ ସୁଦ୍ଧା, ଜଣେ ନିଷ୍ଠାପର ସାହିତ୍ୟସେବୀ ଓ ଅନୁରାଗୀ ଭାବେ ପ୍ରତିଦିନର ବ୍ରାହ୍ମମୁହୂର୍ତ୍ତରେ ଉଠି କଲମ ଚଳାଇ କାବ୍ୟ, କବିତା, ନାଟକ, ପୌରାଣିକ ବିଷୟବସ୍ତୁ ପାଇଁ ଅନୁସନ୍ଧିତ୍ସୁ ହୋଇ ଗବେଷଣା ମୂଳକ ତଥ୍ୟ ପ୍ରକାଶ, ତାଙ୍କୁ ସର୍ବଜନ ଆଦୃତ କରାଇଛି । ସେ ଜଣେ ଅଜାତ ଶତ୍ରୁ । ତେଣୁ ସେ ଶତ୍ରୁଘ୍ନ । କଣା ଲୋକଟିର ନାମ ପଦ୍ମଲୋଚନ—ଶତ୍ରୁଘ୍ନଙ୍କ ନାମ ସାର୍ଥକତା ଲାଭ କରିଛି ଅଜାତ ଶତ୍ରୁ ଭାବରେ । ସେ ବର୍ତ୍ତମାନ ପରିଣତ ବୟସରେ ଉପନୀତ । କଲମ କିନ୍ତୁ ବେଶ୍ ପୋଖତ ଓ ମାନିଛି ଭଲ ସେ ମହାଶୟଙ୍କ । ଅଣ୍ଟାରେ ପଇସା ନାହିଁ, ଏହି ସାଂସାରିକ ତେଲ ଲୁଣର ସଂସାରକୁ ଚଳାଇବା ପାଇଁ—ନିଜ ହାତ ଅକ୍ଷରର ସୁନ୍ଦର ଅକ୍ଷରଗୁଡ଼ିକୁ ଛାପାକଳକୁ ଦେଇ ବହି, ନାଟକ, କବିତା ଛାପି ଆପଣଙ୍କ ପାଖରେ, ଗୁଣୀ, ସାହିତ୍ୟାନୁରାଗୀଙ୍କ ପାଖରେ ପହଞ୍ଚାଇବା ପାଇଁ । ସମସ୍ତେ ଜାଣନ୍ତି, ଲକ୍ଷ୍ମୀ ସରସ୍ୱତୀ ଦୁଇ ସଉତୁଣୀ । କିଏ କାହାକୁ ଆଡ଼ ଆଖିରେ ଦେଖି ପାରନ୍ତି ନାହିଁ । ଶତ୍ରୁଘ୍ନ ବାବୁ ଯେତେବେଳେ ସରସ୍ୱତୀଙ୍କ ଉପାସକ, ଲକ୍ଷ୍ମୀ ରହିବେ ତାଙ୍କ ନିକଟରେ କିପରି ? ଉଦ୍ୟମୀ, ସହିଷ୍ଣୁ, ନିଷ୍ଠାପର ଓ ହୃଦୟବାନ୍, ଦରଦୀ ପୁରୁଷ ଓ ସାହିତ୍ୟାକାର, କଳାକାର ଭାବରେ ସେ ବହୁଦିନରୁ ଲୋକ ପୂଜିତ ଓ ସର୍ବଜନାଦୃତ । ଭଗବାନ କରନ୍ତୁ, ସେ ଓଡ଼ିଆ ସାହିତ୍ୟକୁ ଅଧିକ ପରିପୁଷ୍ଟ କରିବାରେ ସହାୟକ ହୁଅନ୍ତୁ, ଆମକୁ ଆନନ୍ଦ ଦେଉଥାନ୍ତୁ । ଆମେ ସ୍ୱାର୍ଥପର ହେଲେ ସୁଦ୍ଧା ଆମର ଏହି ଅଭିଳାଷକୁ ଜଗନ୍ନାଥ ଟିକିଏ ଆଡ଼େଇ ନ ଦିଅନ୍ତୁ—ପ୍ରାର୍ଥନା କରୁଛୁ—ସେଥିପାଇଁ ।

ଲୋକନାଥ ମିଶ୍ର
20-4-88
Project Officer, DRDA
Keonjhar

ଶ୍ରୀ ଭଗିରଥୀ ମହାନ୍ତ
ସଭାପତି, କେନ୍ଦୁଝର ଉତ୍କଳ ସଙ୍ଘ
ଆୟକର ପେଶାଦାର ଉକିଲ ତଥା ନୋଟାରିଆନ
କେନ୍ଦୁଝରଗଡ଼

ସୁନ୍ଦର ବିଷୟ ଅନ୍ୟ କୃତି ମଧ୍ୟରେ ସୁ-ସାହିତ୍ୟିକ ଶ୍ରୀ ଶତ୍ରୁଘ୍ନ ମହାନ୍ତିଙ୍କର କୃତି 'କମ୍ବଦନ୍ତୀ ବହୁଳ କେନ୍ଦୁଝର' କେନ୍ଦୁଝର ଜିଲ୍ଲା ତଥା ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ଏକ ଉପାଦେୟ ବସ୍ତୁ । ଏ ଲେଖାଟି ତାଙ୍କର ତେଲ ଲୁଣ ସଂସାର ମଧ୍ୟରେ ବହୁ ଘାତ ପ୍ରତିଘାତରେ ଲିଖିତ । ଓକିଲାତି ଜୀବନରେ ଶ୍ରୀ ମହାନ୍ତିଙ୍କ ସଂସ୍ପର୍ଶରେ ଆସି ମୁଁ ନିଜକୁ ଗୌରବାନ୍ୱିତ ମନେକରେ । ସେ ଅନ୍ୟ ଲେଖକଙ୍କ ମଧ୍ୟରେ ଜଣେ ଉଚ୍ଚକୋଟୀର ଲେଖକ ତଥା ସ୍ୱତଃସ୍ଫୁର୍ତ୍ତି । ଶ୍ରୀ ମହାନ୍ତିଙ୍କ ନାମ କେନ୍ଦୁଝର ଗେଜେଟିୟରରେ ସ୍ଥାନ ପାଇ ଯୁଗ ଯୁଗ ଧରି ଜୀବିତ । ସେ ମହାଶୟ ଖାଲି ପ୍ରାବନ୍ଧିକ ନୁହନ୍ତି ସେ ଜଣେ ଉଚ୍ଚକୋଟୀର ନାଟ୍ୟକାର ଓ ବହୁ ମୁଖରେ ପ୍ରଶଂସିତ । ସେ ଯେଉଁ ଅଦୃଶ୍ୟ ଜନନୀଙ୍କ ନିକଟରେ ନିଜକୁ ହଜାଇ ଦେଇଛନ୍ତି ସେ ତାଙ୍କର ଉତ୍ତରୋତ୍ତର ଉନ୍ନତି କରି ତାଙ୍କର ଲେଖନୀ ଚାଳନାରେ ସହାୟକ ହୁଅନ୍ତୁ ।

ଶ୍ରୀ ଭଗିରଥୀ ମହାନ୍ତ
ଆଡ଼ଭୋକେଟ

ତା ୨୭।୭।୮୮

**ନିରଞ୍ଜନ ପଟ୍ଟନାୟକ**
ଶିଳ୍ପ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ
ଓଡ଼ିଶା
ଭୁବନେଶ୍ୱର

ଶ୍ରୀଯୁକ୍ତ ଶତ୍ରୁଘ୍ନ ମହାନ୍ତି, କେନ୍ଦୁଝରଙ୍କ ଲିଖିତ 'ଜନ୍ମଦାତ୍ରୀ ବତ୍ସଳ କେନ୍ଦୁଝର' ପୁସ୍ତକ ପଢ଼ି ଆନନ୍ଦିତ ହେଲି । ଏହା ଇତିହାସ କହିଲେ ବି ଜନ୍ମଦାତ୍ରୀ ବତ୍ସଳ ତ ମୂଲ୍ୟବାନ ପୁସ୍ତକ ।

ଏହାର ଦ୍ୱିତୀୟ ସଂସ୍କରଣ ହେଲେ କେନ୍ଦୁଝର ତଥା ଓଡ଼ିଶାର ଗବେଷକ, ଶିକ୍ଷାବିତ୍ ଓ ଅଗଣିତ ପାଠକ ପାଠିକାମାନଙ୍କୁ କେନ୍ଦୁଝର ଜିଲାର ତଥ୍ୟ ଉପରେ ସାହାଯ୍ୟ କରିବ । ମୁଁ ଲେଖକଙ୍କର ଉନ୍ନତି କାମନା କରି ରହିଲି । ଇତି ।

**ନିରଞ୍ଜନ ପଟ୍ଟନାୟକ**
ଶିଳ୍ପ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ
ଓଡ଼ିଶା

୨।୧।୮୮

ଭୁବନେଶ୍ୱର

ମହାପାତ୍ର ଶ୍ରୀଯୁକ୍ତ ନୀଳମଣି ସାହୁ
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର
ନଂ ୩୪୭/ଓ. ସା. ଏ.
ତା ୧୫।୨।୮୮

ପ୍ରିୟ ଶ୍ରୀଯୁକ୍ତ ମହାନ୍ତି,

ତା ୧୫।୧।୮୮ ଋଖରେ ଲିଖିତ ଆପଣଙ୍କର ପତ୍ର ଓ 'କମ୍ବୁଦନ୍ତୀ ବହୁଳ କେନ୍ଦୁଝର' ପୁସ୍ତକଟି ପାଇ ଧନ୍ୟବାଦ ଜଣାଉଛୁ । ଇତି ମଧ୍ୟରେ ପୁସ୍ତକଟି ପଢ଼ିଲି ଏବଂ ଏହି ପୁସ୍ତକଟି ଓଡ଼ିଶାର ଐତିହାସିକ ଓ ସାଂସ୍କୃତିକ ଦୃଷ୍ଟିରୁ ଯେ ବହୁ ମୂଲ୍ୟବାନ ଏହା ଯେ କେହି ସ୍ୱୀକାର କରିବେ । ପୁସ୍ତକଟି ଏକାଡେମୀର ଲାଇବ୍ରେରୀରେ ସମ୍ମାନ ସହ ରଖାଗଲା । ଏହିଭଳି ତଥ୍ୟ ସମ୍ବଳିତ ପୁସ୍ତକ ଯଦି ଆପଣ ଅନ୍ୟ କିଛି ଲେଖିଥାନ୍ତି ତେବେ ତାହା ପ୍ରକାଶିତ ହୋଇଥିଲେ ଆମ ପାଖକୁ ଖଣ୍ଡିଏ କପି ପଠାଇବେ । ଯଦି ପାଣ୍ଡୁଲିପି ଆକାରରେ ଥାଏ ତେବେ ସେ ସମ୍ବନ୍ଧେ ଆମକୁ ଜଣାଇବେ ।

ଆପଣଙ୍କର ଉତ୍ତମ ସ୍ୱାସ୍ଥ୍ୟ କାମନା କରି ରହିଲି ।

ଶୁଭେଚ୍ଛା ଓ ସମ୍ମାନ ସହ :

ଆପଣଙ୍କର ଅନୁରକ୍ତ
ସ୍ୱା—ମ. ନୀଳମଣି ସାହୁ
(ମହାପାତ୍ର ନୀଳମଣି ସାହୁ)

ଶ୍ରୀଯୁକ୍ତ ଶତ୍ରୁଘ୍ନ ମହାନ୍ତି
କାଶୀପୁର, କେନ୍ଦୁଝରଗଡ଼
କେନ୍ଦୁଝର

**Harihar Soren**
Member of Parliament
Keonjhar, Orissa.

Date : 16-10-86

'KIMBADANTI BAHULA KENDUJHAR' written by Sri Satrughan Mohanty of Keonjhar is a valuable book not only for Keonjhar district but also for the State of Orissa since it contains a lost of Legends, Topics, History which are epicted in the book.

It would be useful for the students and teachers of Colleges and Schools and also would serve research purpose. The book will be an asset for a Library.

If is highly recommended for acceptance as a Library Book.

Sd/-
( HARIHAR SOREN )
Member of Parliament
Keonjhar, Orissa.

**Sri J. K. Mohapatra,** I.A.S.
Collector and District Magistrate,
K E O N J H A R.

Date : October, 19th. 1986

I have gone through the book 'KIMBADANTI BAHULA KENDUJHAR' written and published by Sri Satrughan Mohanty, a well known writer of this district. This book contains a set of enlightening essays on the history, popular legends and also on the tribal culture of Keonjhar District. This should be a useful book for the public libraries of the State. As such it may be accepted as a library book from the funds of Raja Rammohan Roy Foundation.

Sd/—
(J. K. Mohapatra)
Collector
Keonjhar,



ବଡ଼ ସୁଖର କଥା 'କମ୍ବଦନ୍ତୀ ବହୁଳ କେନ୍ଦୁଝର' ଲେଖକଙ୍କ ଲେଖା ଦେଖିଲି
ଏବଂ ସେ କେନ୍ଦୁଝରର ବିଭିନ୍ନ ସ୍ଥାନରେ ବୁଲି ବହୁ କଷ୍ଟ ସହି ଏ ଲେଖା
ଲେଖିଛନ୍ତି । ଭଗବାନ ତାଙ୍କ ଚେଷ୍ଟାରେ ସାହାଯ୍ୟ କରନ୍ତୁ
ଏହା ମୋର ଅନ୍ତରର କାମନା । ତାଙ୍କର ଉଦ୍ୟମ
କେନ୍ଦୁଝର ଜନପଦ ଜନ ମୁଖରେ ପ୍ରଶଂସିତ
ହେଉ ଏ ଆଶା ପୋଷଣ କରି
ଲେଖକଙ୍କୁ ବହୁତ
ଉତ୍ସାହ ପ୍ରଦାନ
କରୁଅଛି ।

**ଶ୍ରୀ ବୃନ୍ଦାବନ ଦାଶ**
ରାଷ୍ଟ୍ରପତିଙ୍କ ଦ୍ୱାରା ପୁରସ୍କୃତ ଶିକ୍ଷକ
୧୬।୫।୮୭

# 'ମା'

୧୯୬୮ ମସିହାରୁ ମହାସ୍ୱପୀ ଜଗତ୍‌ଜନନୀଙ୍କର କରୁଣାରେ ତେଲକୋଇରୁ ଲେଖନୀ ଚଳାଇ ବହୁ ନାଟକ, କାବ୍ୟ, ଏକାଙ୍କିକା, କବିତା, ପ୍ରବନ୍ଧ, ଗପ ଲେଖିବାର ସୁଯୋଗ ପାଇ କେନ୍ଦୁଝର ତଥା ଅନ୍ୟ ରାଜ୍ୟର ପାଠକ ପାଠିକା ତଥା ଗୁଣୀଜନମାନଙ୍କର ମନ ଆକର୍ଷଣ କରିବାର ସୁଯୋଗ ପାଇ ନିଜକୁ ଧନ୍ୟ ମନେ କରୁଛି ।

'କମ୍ବୃଦନ୍ତୀ ବହୁଳ କେନ୍ଦୁଝର' ଉପରେ ଆଲୋକପାତ କରିବାର ପ୍ରେରଣା ପାଇଲି ଆମର ପଣ୍ଡିତ ଗ୍ରନ୍ଥମନ୍ଦିରର ପ୍ରୋପ୍ରାଇଟର ଅଭିରାମ ବାବୁଙ୍କର ସାନଭାଇ ଗୋବର୍ଦ୍ଧନ ମହାପାତ୍ରଙ୍କଠାରୁ । ଦୀର୍ଘ ୩।୪ ବର୍ଷରେ ବିଷୟବସ୍ତୁ ସଂଗ୍ରହରେ ବ୍ୟସ୍ତ ରହିଲି । କେନ୍ଦୁଝର ରାଜ୍ୟର ବରେଣ୍ୟ ଶ୍ରେଷ୍ଠରାଜ ସାହେବ ଲକ୍ଷ୍ମୀନାରାୟଣ ଭଞ୍ଜଦେଓଙ୍କ ସାହାଯ୍ୟରେ ତାଙ୍କ ପାଠାଗାରର ଅନେକ ପୁସ୍ତକ ଅଧ୍ୟୟନ କରି ଏବଂ ପ୍ରତ୍ୟେକ ସ୍ଥାନ ଦେଖି ଓ ପୁରୁଣା ଲୋକମାନଙ୍କଠାରୁ ସଂଗ୍ରହ କରି ଏହି 'କମ୍ବୃଦନ୍ତୀ ବହୁଳ କେନ୍ଦୁଝର' ଲେଖି ଲୋକଲୋଚନର ଗୋଚରକୁ ଆଣିବାକୁ ସମର୍ଥ ହୋଇଛି । ଅର୍ଥାଭାବରୁ ୭।୮ ବର୍ଷ ଧରି ଏହାକୁ ଲୋକଲୋଚନକୁ ଆଣି ପାରି ନ ଥିଲି । ଶ୍ରେଷ୍ଠରାଜ ସାହେବ ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜଦେଓଙ୍କ ଉତ୍କଣ୍ଠିତ ମହତ ଦାନରେ ଏବେ ଏହାକୁ ଲୋକଲୋଚନକୁ ଆଣିବାକୁ ସକ୍ଷମ ହୋଇଛି । ସେ ମହାଶୟ ଏହାକୁ ପୁଙ୍ଖାନୁପୁଙ୍ଖ ପଢ଼ି ଆଲୋଚନା କରି ତାଙ୍କର ମନ୍ତବ୍ୟ ଦେଇଥିବାରୁ ଲେଖକ ତାଙ୍କ ନିକଟରେ ଋଣୀ । 'ମା'ଙ୍କର ଅଦୃଶ୍ୟ ଚରଣତଳେ ଅର୍ପଣ କରି ରହିଲି । ଭୁଲ୍ ଥିଲେ ସ୍ନେହ ଗୁଣେ ପାଠକ ପାଠିକାମାନେ କ୍ଷମା ଦେବାକୁ ଅନୁରୋଧ ।

। ଇତି ।

ସୌଜନ୍ୟ ମୁଗ୍ଧ—ଶତ୍ରୁଘ୍ନ



# ନିଜକଥା

୧୦ ବର୍ଷ ତଳର କଥା ଯେତେବେଳେ କେନ୍ଦୁଝର ସରକାରୀ ଝିଅ ବାଳିକା ବିଦ୍ୟାଳୟରେ ପୁସ୍ତକ ମେଳା ହେଉଥିଲା । ସେତେବେଳେ ଓଡ଼ିଶାର ଖ୍ୟାତନାମା ଗ୍ରନ୍ଥମନ୍ଦିରର ଶ୍ରୀଯୁକ୍ତ ଅଭିରାମ ମହାପାତ୍ରଙ୍କ ଭାଇ ଗୋବର୍ଦ୍ଧନ ମହାପାତ୍ର ଏଇ ବଣ ପାହାଡ଼ଘେରା କେନ୍ଦୁଝର ଜିଲ୍ଲା ଐତିହାସିକ ପୀଠର ବିବରଣୀ ସଂଗ୍ରହ କରି ତାଙ୍କ ଦ୍ୱାରା ପ୍ରକାଶ କରାଇବାକୁ ଅନୁରୋଧ ତଥା ପ୍ରବର୍ତ୍ତାଇ ଥିଲେ । ମୁଁ ତା'ପରେ ୧୬ ବର୍ଷ ଧରି ଅନେକ ବହି, ପୋଥୀ, ନଥି ପଢ଼ିବା ସଙ୍ଗେ ସଙ୍ଗେ ଆଦର୍ଶ ବା ଜନ୍ମଦାତ୍ରୀ ବହୁଳ ପୀଠମାନଙ୍କୁ ଦର୍ଶନ କରିବାର ସୁଯୋଗ ପାଇଲି,' ସେଇଗୁଡ଼ିକ ମୋତେ 'ମା'ଙ୍କର ଆଶୀର୍ବାଦରେ ସଂଗ୍ରହ କରିବାକୁ ବିଶେଷ ସମୟ ଲାଗି ନ ଥିଲା । ମୁଁ ବର୍ଷକରୁ ବେଶୀ ଅନୁସନ୍ଧାନ ଚଳାଇଲି । ମା'ଙ୍କର ଆଶୀର୍ବାଦରେ ବିବରଣୀ ସଂଗ୍ରହ କରିସାରି ଗ୍ରନ୍ଥମନ୍ଦିରକୁ ପ୍ରକାଶ ପାଇଁ ପଠାଇଲି । ଦୁର୍ଭାଗ୍ୟବଶତଃ ଦୀର୍ଘଦିନ ଧରି ମୋର ଲେଖାଗୁଡ଼ିକ ତାଙ୍କର ପାଖରେ ପଡ଼ି ରହିଥିଲା । ଛପାଖର୍ଚ୍ଚ ନ ଦେଇ ପାରି ପାଣ୍ଡୁଲିପି ଫେରାଇ ଆଣିଲି ।

ସୌଭାଗ୍ୟବଶତଃ କୋଠାଟି ରାସ ପୂଜା କମିଟି ଓ ଶିକ୍ଷାବିସ୍ତାର ପାଠାଗାର, କେନ୍ଦୁଝରର ସମ୍ପାଦକ ଶ୍ରୀ ଅର୍ଜ୍ଜୁନ ଚରଣ ବେହେରାଙ୍କୁ ପଢ଼ିବାକୁ ଦେଇଥିଲି । ତାକୁ ପଢ଼ି ସେ ମହାଶୟ ପାଣ୍ଡୁଲିପିଟି ଶିକ୍ଷା ବିସ୍ତାର ପାଠାଗାର ତରଫରୁ ଛପାଇବାକୁ ପ୍ରତିଶ୍ରୁତି ଦେଇଥିଲେ । କେନ୍ଦୁଝର ବିଷୟରେ ଏହା

ପ୍ରକାଶ କରିବା ପୂର୍ବରୁ ଆମର କେନ୍ଦୁଝରର ବନ୍ଧୁ, ଜ୍ଞାନୀ, ଶ୍ରେଷ୍ଠବ୍ୟକ୍ତି ସାହେବ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ଭଞ୍ଜ ମହୋଦୟଙ୍କୁ ଗତ ନଭେମ୍ବର ମାସରେ ପଢ଼ିବାକୁ ଦେଇଥିଲି । ସେ ମହାଶୟ ପାଣ୍ଡୁଲିପିଟି ଆମୂଳଚୂଳ ପଢ଼ି କେତେକ ଜାଗାରେ ଭ୍ରମ ସଂଶୋଧନ କରି ଭଞ୍ଜ ପ୍ରକାଶନୀ ତରଫରୁ ଛପାଇବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । କେତେଦିନ ପରେ ଅର୍ଥାତ୍ ଗତ ମେ ମାସରେ ସେ ମୋତେ କିୟଦାଂଶ ଆର୍ଥିକ ସାହାଯ୍ୟ ଉକ୍ତ ବହିର ପ୍ରକାଶନ ପାଇଁ ଦାନ କରିଥିଲେ ଏବଂ ନିଜର ସ୍ୱଚ୍ଛନ୍ଦିତ ମତ ନିଜ ହାତରେ ଲେଖି ଦେଇଥିଲେ । ପରିତାପ ଓ ଦୁଃଖର ବିଷୟ ଭଞ୍ଜ ବଂଶର ଏକମାତ୍ର ଗୁଣୀ, ଜ୍ଞାନୀ, ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଗତ ତା ୯।୭।୮୬ରେ ଜଳନ୍ଧର ଡାକ୍ତରଖାନାରେ ଇହଲୀଳା ସାଙ୍ଗକରି ପରଂବ୍ରହ୍ମଙ୍କ ପଦରେ ଲୀନ ହୋଇ ଯାଇଛନ୍ତି । ତାଙ୍କର ଅବଦାନ 'କମ୍ୟୁନିଷ୍ଟ ବହୁଳ କେନ୍ଦୁଝର' ଲୋକଲୋଚନକୁ ଆଣିଥିବାରୁ ଲେଖକ ତାଙ୍କ ନିକଟରେ ଚିରଋଣୀ । ତାଙ୍କର ଫଟୋ ଓ ଅଭିମତ ଏହି ପୁସ୍ତକରେ ଦେବା ସଙ୍ଗେ ସଙ୍ଗେ ତାଙ୍କର ଅତିପ୍ରିୟ ଶ୍ଳୋକ ଭିତରୁ ଗୋଟିଏ ଶ୍ରେଷ୍ଠ ଶ୍ଳୋକ ଏଠାରେ ଉଦ୍ଧାର କଲି—

"ଅପୂଜ୍ୟା ଯତ୍ର ପୂଜ୍ୟନ୍ତେ
ପୂଜ୍ୟା ଯତ୍ର ପରାନ୍ ମୁଖା
ତତ୍ର ତ୍ରିଣି ପ୍ରବର୍ତ୍ତନ୍ତେ
ମରଣଂ, ଦୁର୍ଭିକ୍ଷଂ ଭୟଂ ।"

ଲେଖାଟିକୁ ଲୋକଲୋଚନର ଗୋଚରକୁ ଆଣିବାକୁ ଉକ୍ତଶୀୟ ଲେଖକ ଲମାଇକମ ଓ ଦଲେଇଲମା, କ୍ଷେତ୍ରମୋହନ ମିଶ୍ର, ଡାଃ ପ୍ରସନ୍ନ କୁମାର ମିଶ୍ର, **Fuedutory State of Orissa,** ପଣ୍ଡିତ ବିନାୟକ ମିଶ୍ର, **Dr. N. Pattnaik**ଙ୍କ **ITDA Report, Statistical Report,** ଉତ୍କଳ ଦୀପିକା, ଖଣି ମାଲିକ ବଂଶୀଧର ପଟ୍ଟନାୟକ, ଭଗିରଥୀ ମହାନ୍ତି, ଓଲଳ ପୁରୁଣା ବଜାରର ଜଗବନ୍ଧୁ ସାହୁ, ଗୋନାସିକା ଓ ବାଂଶପାଳର କେତେକ ଜୁଆଙ୍ଗମାନଙ୍କ ସହାୟତାରେ ଏହାକୁ ପୂର୍ଣ୍ଣାଙ୍ଗ କରି ପାରିଛି ।

'ମୁନିନାଂଚ ମତିଭ୍ରମ' ଯାତରେ ମୋର ଅନେକ ଜାଗାରେ ଲେଖାରେ ତ୍ରୁଟି ଆସିପାରେ । ତେଣୁ ଏ ଅକିଞ୍ଚନ ଲେଖକକୁ ସ୍ନେହ ଗୁଣେ କ୍ଷମା ଦେବାକୁ ବିନମ୍ର ଅନୁରୋଧ ରହିଲି । ଲେଖାଟି ସେହି ଜଗତ୍‌ଜନନୀଙ୍କ ପଦାରବିନ୍ଦରେ ଅର୍ପଣ କରି ରହିଲି ।

। ଇତି ।

ସୌଜନ୍ୟମୁଗ୍ଧ
**ଶତ୍ରୁଘ୍ନ ମହାନ୍ତି**
କେନ୍ଦୁଝରଗଡ଼

# ସୂଚୀପତ୍ର







ଶ୍ରୀ ବଳଦେବଜୀଉ ମନ୍ଦିର (କେନ୍ଦୁଝର)

ଫଟୋ—ବିନୋଦ ବେଲ୍



ଶ୍ରୀ ଜଗନ୍ନାଥ ବଳଭଦ୍ର ସୁଭଦ୍ରା (କେନ୍ଦୁଝର)

ଫଟୋ— ବିନୋଦ ବେଲ୍

# କେନ୍ଦୁଝର

ଏ ଯୁଗର କେନ୍ଦୁଝର ଓଡ଼ିଶା ପ୍ରଦେଶରେ ତ୍ରୟୋଦଶ ଜିଲ୍ଲା ଭାବରେ ପରିଗଣିତ । ଏହା ଉତ୍କଳର ଉତ୍ତର ୨୧°.୧୧' ଏବଂ ୨୨°.୧୦' ଅକ୍ଷାଂଶ ଏବଂ ୮୫°.୧୧' ଓ ୮୬°.୨୨' ପୂର୍ବ ଦ୍ରାଘିମାରେ ଅବସ୍ଥିତ । ଏହାର ଉତ୍ତରରେ ସିଂହଭୂମି ଜିଲ୍ଲା, ଦକ୍ଷିଣରେ କଟକ ଜିଲ୍ଲା, ପୂର୍ବରେ ମୟୂରଭଞ୍ଜ ଓ ପଶ୍ଚିମରେ ଢେଙ୍କାନାଳ ଓ ସୁନ୍ଦରଗଡ଼ ଜିଲ୍ଲା ଅବସ୍ଥିତ ।

ଏହି କେନ୍ଦୁଝର ଆଦିମ ଯୁଗରୁ ଆଦିବାସୀ ଅଧ୍ୟୁଷିତ ରାଜ୍ୟ ହିସାବରେ ପରିଚିତ । ଏହା ପ୍ରକୃତି ସୌନ୍ଦର୍ଯ୍ୟଭରା ଜଙ୍ଗଲ ପାହାଡ଼ରେ ପରିପୂର୍ଣ୍ଣ । ଗନ୍ଧମାଦନ ପର୍ବତ ଏହାର କୀର୍ତ୍ତି ଭାବରେ ଦଣ୍ଡାୟମାନ । ଗୋନାସିକା ଏହାର ନାଭିର ବସଣୀ ହିସାବରେ ମଣ୍ଡନ କରେ । ରାଜ୍ୟର ଉଚ୍ଚ ରାଜପଥ ଏହାଙ୍କୁ ଦୁଇ ଭାଗରେ ବିଭକ୍ତ କରିଅଛି । ଗନ୍ଧମାଦନ ସମୁଦ୍ର ପତ୍ତନଠାରୁ ୩୪୬୭ ଫୁଟ, ମାଙ୍କଡ଼ ନାଚ ୩୬୩୯ ଫୁଟ, ଗୋନାସିକା ୩୨୧୯ ଫୁଟ ଏବଂ ଠାକୁରାଣୀ ୩୦୦୩ ଫୁଟ ଉଚ୍ଚରେ ଉପସ୍ଥିତ ହୋଇ ଖଣିଜ ସମ୍ପଦରେ କେନ୍ଦୁଝର ରାଜ୍ୟକୁ ଦେଶ ବିଦେଶରେ ପରିଚିତ କରାଇଛନ୍ତି ।

ପୁଣ୍ୟତୋୟା ବୈତରଣୀ (ଗୁପ୍ତଗଙ୍ଗା) ଗୋନାସିକାରୁ ବାହାରି କେନ୍ଦୁଝରକୁ ଏକ ଶଙ୍ଖାକୃତିରେ ପ୍ରବାହିତ ହୋଇ ବଙ୍ଗୋପସାଗରରେ ଜୀବନ ଦର୍ଶନକୁ ଆଖି ଆଗରେ ରଖି ମିଶିଯାଇଅଛି । ବୈତରଣୀ ବ୍ୟତୀତ ସାଲନ୍ଦୀ, ଘରଡ଼େଇ, କାଳଞ୍ଜିର, ମାଛକାନ୍ଦଣା, ମୂଷଣ, କୁଶଭଦ୍ରା, ସାମାକୋଇ, ରେମାଳ, ଦେଓ, ସୀତା, କୁକୁରକଟା, ସୋଣେଇ, ରେବ, ଭସେଲ, କାଳ (କାରୋ) ନଦୀଗୁଡ଼ିକ ଏ ରାଜ୍ୟର ଉର୍ବରତା ବୃଦ୍ଧି କରି ଯୁଗ ଯୁଗ ଧରି ବହି ଚାଲିଛନ୍ତି ।

କେନ୍ଦୁଝର ଦିନେ କମ୍ବୁଝର ବା ଶଙ୍ଖ କ୍ଷେତ୍ର ନାମରେ ପରିଚିତ ଥିଲା । ଆଦିମ ଯୁଗରୁ ସଦର ମହକୁମାକୁ ଲୋକମାନେ ଯମଗିରି କ୍ଷେତ୍ରମଣ୍ଡଳ ବୋଲି

କରୁଥିଲେ । କାଳ ବୋହିବା ସଙ୍ଗେ ସଙ୍ଗେ ମଣିଷର ପରିବର୍ତ୍ତନ, ସ୍ଥାନ ନାମର ପରିବର୍ତ୍ତନ ହୋଇ ଚାଲେ; ସେହି ପରିପ୍ରେକ୍ଷୀରେ ଏହି ରାଜ୍ୟ ଢେଙ୍କାନାଳ ଓ ମୟୂରଭଞ୍ଜକୁ ନେଇ ଖିଜିଙ୍ଗ କୋଠ ନାମରେ, ପରେ ନହର ରାଜ୍ୟ, ହରିପୁର ରାଜ୍ୟ ନାମରେ ପରିଚିତ ଥିଲା । ଏ ରାଜ୍ୟ ବହୁ କିମ୍ବଦନ୍ତୀରେ ଭରପୁର । ଐତିହାସିକ ତଥ୍ୟ କିମ୍ବଦନ୍ତୀକୁ ଆଖି ଆଗରେ ରଖି ଏହାକୁ 'କିମ୍ବଦନ୍ତୀ ବହୁଳ କେନ୍ଦୁଝର' ନାମରେ ଲୋକ ମୁଖରେ ଶକ୍ତିମୟୀ ଜଗତ ଜନନୀଙ୍କ ଆଶୀର୍ବାଦ ନେଇ ବହୁ ପ୍ରକାର ଯାହାତ୍ୟରେ ପରିଚିତ କରାଇବାକୁ ସମର୍ଥ ହୋଇଥିବାରୁ ଚିର ଋଣୀ ।

ଏହି କେନ୍ଦୁଝର ରାଜ୍ୟ ଖ୍ରୀ: ପୂ: ୭ ଠାରୁ ୧୧୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ୨୧ ଜଣ ରାଜା ରାଜତ୍ୱ କରି ଯାଇଛନ୍ତି ।

୯ ଖ୍ରୀଷ୍ଟାବ୍ଦରେ ଭୂୟାମାନେ ମଗଧରୁ ଆସି ଆଦିମ ଅଧିବାସୀ ପୃଥଙ୍ଗ-ମାନଙ୍କ ତଳେ ବସବାସ କରୁଥିଲେ । ଐତିହାସିକ ମତାନୁଯାୟୀ ରାଜପୁତନାରୁ ଜୟ ସିଂ ପ୍ରଥମେ ପୁରୀର ଗଜପତିଙ୍କ କନ୍ୟାକୁ ବିବାହ କରି ଜୋହାର ରାଜ୍ୟ ହରିପୁର ଉପଢୌକନ ହିସାବରେ ପାଇଥିଲେ । ଏହି ଜୋହାର ରାଜ୍ୟ ପ୍ରଥମେ ଖିଜିଙ୍ଗ ମଣ୍ଡଳ (ଖାଟକେଶ୍ୱର ନାମାନୁସାରେ) ହରିପୁର ରାଜ୍ୟ ହିସାବରେ ପରିଚିତ ଥିଲା । ପକାଶ ଥାଉକି ମୟୂରଭଞ୍ଜ ଓ କେନ୍ଦୁଝର ଯଥାକ୍ରମେ ଖିଜିଙ୍ଗ କୋଠ ଓ ଖିଜିଙ୍ଗ ମଣ୍ଡଳ ହିସାବରେ ପରିଚିତ ଥିଲା । ଏହି ପୂର୍ବିଯୁ ରାଜା ଜୟ ସିଂହଙ୍କର ପ୍ରଥମ ପୁତ୍ର ମାନ ସିଂହଙ୍କ ନାତି ଆଦି ଭଞ୍ଜ (ସିଂ) ଗୋଟିଏ ମୟୂର ଡିମ୍ବରୁ ଜନ୍ମଲାଭ କରି ବଶିଷ୍ଠ ଋଷିଙ୍କର ଆଶୀର୍ବାଦ ଲାଭକରି ଭଞ୍ଜ ଉପାଧିରେ ଭୂଷିତ ହୋଇଥିଲେ । ଏ ବିଷୟରେ Cobden Ramsey ବେଙ୍ଗଲ ଗେଜେଟିଅରରେ ଉଲ୍ଲେଖ କରିବାର ପ୍ରମାଣ ପଣ୍ଡିତ ବିନାୟକ ମିଶ୍ର ଆରକ୍ୟୋଲଜିକାଲ ସର୍ଭେ, ଭାରତ ୧୯୨୨-୨୩, ୧୨୪-୧୨୮ ପୃଷ୍ଠାରେ ପାଇ ଭଞ୍ଜ ବଂଶ ଏବଂ ତାଙ୍କର ପୁରାତନ ରାଜଧାନୀ ବିଷୟରେ ଲେଖି ଯାଇଛନ୍ତି । ଏହା ମଧ୍ୟ ସୋସାଇଟି ଅଫ୍ ବେଙ୍ଗଲ ପତ୍ରିକାର Vol. XL Part-I ଓ ବିହାର ଓଡ଼ିଶା ରିସର୍ଚ୍ଚ ସୋସାଇଟି Vol. IV-1918 ୧୭୨-୧୭୭ ପୃଷ୍ଠା ପତ୍ରିକାରେ ଉଲ୍ଲେଖ କରାଯାଇଛି ।

ହେନମୋହନ ମିଶ୍ରଙ୍କ କେନ୍ଦୁଝର ଇତିହାସରୁ ପ୍ରମାଣ ମିଳେ ଯେ ୧୧୨୮ ଖ୍ରୀଷ୍ଟାବ୍ଦରେ ହରିପୁର ଷ୍ଟେଟର ରାଜା ଜୟ ସିଂହଙ୍କର ପୁଅ ଆଦି ଭଞ୍ଜ ଓ ଜ୍ୟୋତି ଭଞ୍ଜ ଯଥାକ୍ରମେ ବୈତରଣୀ ନଦୀର ଦୁଇ ପାର୍ଶ୍ୱରେ ଆଦିପୁର ଓ ଜ୍ୟୋତିପୁର ମୁକାମରେ ରାଜା ହୋଇଥିଲେ । ଖିଜିଙ୍ଗ ମଣ୍ଡଳର ଅଧିବାସୀମାନେ (ଭୌମ

ବଂଶୀୟ ପ୍ରଜାମାନେ) ଖିଜିଙ୍ଗ କୋଠା (ବର୍ତ୍ତମାନର ମୟୂରଭଞ୍ଜ)ରୁ ଖେଦଇ ଆଣି ଆଦି ଭଞ୍ଜଙ୍କୁ ଖିଜିଙ୍ଗ କୋଠା ଓ କେଓଝର ଭଞ୍ଜଙ୍କୁ ଖିଜିଙ୍ଗ ମଣ୍ଡଳର ଅଧିକାରୀ (ରଜା) ଭାବେ ସାବ୍ୟସ୍ତ କରିଥିଲେ । ଏହି ମଣ୍ଡଳ ଦୁଇଟିର ନାମ କଷ୍ଟକେଶ୍ୱରଙ୍କ ନାମାନୁସାରେ ଖିଜିଙ୍ଗ କୋଠା ଓ ଖିଜିଙ୍ଗ ମଣ୍ଡଳ ଭାବରେ ନାମିତ ହୋଇଥିଲା । ବୈତରଣୀ ନଦୀର ଦୁଇ ପାଖରେ ଦୁଇଟି ବଡ଼ ପଥର ମଧ୍ୟ ଏହାର ପ୍ରମାଣ ସ୍ୱରୂପ ଅଦ୍ୟାବଧି ମୂକବଧିର ଭାବେ ଛିଡ଼ି ରହିଛନ୍ତି । ନଦୀର ଦୁଇ ପାର୍ଶ୍ୱରେ ଥିବା ଏହି ଗ୍ରାମ ଦୁଇଟି ଏ ଯାବତ ଆଦିପୁର ଓ କେଓଝପୁର ଭାବେ ପରିଚିତ । ପୁରାତନ ଯୁଗର ଦୁଇଟି ଭଙ୍ଗା ଗଡ଼ର ନମୁନା ମଧ୍ୟ ଏଯାଏ ଏହି ଗ୍ରାମରେ ପଡ଼ି ରହିଅଛି । ଆଦିପୁର ଗଡ଼ କଷ୍ଟକେଶ୍ୱରଙ୍କର ନିକଟତମ ଗ୍ରାମ ।

ମୟୂର ଅଣ୍ଡାରୁ ଜନ୍ମଲାଭ କରିଥିବାରୁ ଖିଜିଙ୍ଗ କୋଠା ମଣ୍ଡଳ ମୟୂରଭଞ୍ଜ ନାମରେ ନାମିତ ହୋଇଥିଲା ଏବଂ ଏମାନଙ୍କର ଭାବୀ ବଂଶଧରମାନେ ମୟୂର ସଙ୍କେତ (Emblem) ବ୍ୟବହାର କରି ଆସୁଥିଲେ । ମଗଧର ଭୌମ ବଂଶାଧିକାରୀ ରାଜସ୍ୱ ଟଙ୍କାରୁ ଆସି ଏମାନେ ଭଞ୍ଜ ଉପାଧିରେ ଭୂଷିତ ହୋଇଥିଲେ ।

ସାଧାରଣତଃ ସବୁ ଯୁଗର ମଣିଷମାନେ ସୁବିଧାବାଦୀ । ନିଜର ସୁବିଧା ହାସଲ କରିବା ପାଇଁ ସେ ରାଜ୍ୟର ଉନ୍ନତ ଭୂୟାଁମାନେ କେଓଝପୁର ମୁକାମରେ କେଓଝ ଭଞ୍ଜଙ୍କୁ ରଜା କରାଇ, ପରେ ନୟାଗଡ଼କୁ ଆଣି ଗଡ଼ ତିଆରି କରି ପ୍ରଥମେ ଗାଦିସୀନ କରାଇଥିଲେ । କାଳକ୍ରମେ ନୟାଗଡ଼ରୁ ବାରଗଡ଼ ପାଟେଶ୍ୱରୀ ଗ୍ରାମରେ ମଧ୍ୟ ଗଡ଼ ତିଆରି କରି ରାଜାଙ୍କ ରାଜତ୍ୱ କାଳରେ ସାହାଯ୍ୟ କରୁଥିଲେ ।

କମ୍ବଦନ୍ତୀରୁ ଜଣାପଡ଼େ ଏବଂ କ୍ଷେତ୍ରମୋହନ ମିଶ୍ରଙ୍କର କେନ୍ଦୁଝର ଇତିହାସରୁ ଜଣାପଡ଼େ ବୁଦ୍ଧିମାନ ଓ କୌଶଳୀ ଭୂୟାଁମାନେ ତଦାନୀନ୍ତନ ରାଜାଙ୍କର ଗଡ଼ ସ୍ଥାପନା କରିବାର ଏକ ନିଭୃତ ସ୍ଥାନ ଖୋଜି ଖୋଜି ଇନ୍ଦ୍ରଛନ୍ଦ ଗୋବରୀ ବୁଲିଆ ପାହାଡର ପାଦ ଦେଶକୁ ଉପଯୁକ୍ତ ସ୍ଥାନ ବୋଲି ନିରୂପଣ କରିଥିଲେ । ସେ ସ୍ଥାନର ମହତ୍ତ୍ୱ ପ୍ରତିପାଦନ କରୁଥିଲା ସେତେବେଳର ଏକ ଝରଣା ଯେ କି ଗୋଟିଏ କେନ୍ଦୁମୂଳରୁ କୁଳୁକୁଳୁ ସ୍ୱନରେ ବହିଯାଇ ସେମାନଙ୍କର ମନ ମୁଗ୍ଧ କରିଥିଲା । ଆଉ ଏକ ବଳିଷ୍ଠ କମ୍ବଦନ୍ତୀ ମଧ୍ୟ ଏହି ରାଜ୍ୟର ରାଜାଙ୍କର ଉଆସ ବା ଗଡ଼ ତୋଳିବାରେ ସାହାଯ୍ୟ କରିଥିଲା । ତାହା କପୋଳକଳ୍ପିତ ନୁହେଁ । ଐତିହାସିକ ମିଶ୍ର ମହୋଦୟ ମଧ୍ୟ ତାଙ୍କର କେନ୍ଦୁଝର ଇତିହାସରେ ଏହି କମ୍ବଦନ୍ତୀଟିକୁ ସ୍ଥାନ ଦେଇଥିଲେ । ଭୂୟାଁମାନେ ଶିକାର ପ୍ରିୟ । ଶିକାର କରିବା ସମୟରେ ଏହି କେନ୍ଦୁମୂଳେ ଗୋଟିଏ କେନ୍ଦୁଆ ଉପରେ ଗୋଟିଏ ଶିଆଳର

ଆକ୍ରମଣ ଦେଖି ଏ ରାଜ୍ୟର ଅଧିବାସୀମାନେ ଚମକିତ ହୋଇ ଏହି ସ୍ଥାନକୁ ରାଜଧାନୀ ରୂପେ ମନୋନୀତ କରି ପରବର୍ତ୍ତୀରେ ଗଡ଼ ଓ ସିଂହାସନ ନିର୍ମାଣ କରି ଭଞ୍ଜ ରାଜବଂଶର ଶୁଭ ଦେଇଥିଲେ । ଏହି ସିଂହାସନ ତିଆରି କରିବାବେଳେ ତତ୍କାଳୀନ ଭୂୟାଁମାନେ ଗଣ୍ଡକୀ ନଦୀରୁ ଲକ୍ଷେ ଶାଳଗ୍ରାମ ଆଣି ସିଂହାସନ ତଳେ ପୋତି ଏହାକୁ ଏକ ଧର୍ମପୀଠ ଭାବରେ ପ୍ରମାଣିତ କରିଥିଲେ । ଏ ରାଜ୍ୟର ଅଧିବାସୀମାନଙ୍କର ମତ କେନ୍ଦୁଝରର ଆକୃତି ଶଙ୍ଖ ସଦୃଶ ଓ ପୂର୍ବୋତ୍ତୋୟା ବୈତରଣୀ ତଥା ଗୁପ୍ତଗଙ୍ଗା ଏହାର ପଦ ଧୌତ କରୁଥିବାରୁ ଏହାକୁ କେନ୍ଦୁଝର ରାଜ୍ୟ ନାମରେ ନାମିତ କରିଥିଲେ । ତଥାକଥିତ ଭୂୟାଁମାନେ (ପ୍ରଜାମାନେ) ରାଜ୍ୟର ବଳିଷ୍ଠ ସ୍ଥାନର ନିରୂପଣବେଳେ ଦେଖିବାକୁ ପାଇଲେ ଗୋଟିଏ ବଡ଼ କେନ୍ଦୁ ମୂଳରୁ ଗୋଟିଏ ଝରଣା ପ୍ରବାହିତ ହେଉଛି । ତେଣୁ ଏହାକୁ କେନ୍ଦୁଝର ରୂପେ ନାମିତ କରିଥିଲେ । ଗଡ଼ର ପଶ୍ଚିମ ପାଖରେ କେନ୍ଦୁଆ ଦୁଆର ଏବେ ବି ସହସ୍ର ମୂକରେ ମୂକେଉ; କିନ୍ତୁ ଏଇ ରାଜ୍ୟ ପୂର୍ବରୁ ଯମଗରଭ କ୍ଷେତ୍ରମଣ୍ଡଳ ହିସାବରେ ପରିଚିତ ଥିଲା । କେନ୍ଦୁଝର ଧରଣୀଧର କଲେଜର ଇତିହାସ ଉପାଧ୍ୟକ୍ଷ ଶ୍ରୀ ଜନ୍ମେଜୟ ସାହୁ ମଧ୍ୟ ଡ଼. ଏନ୍. ହାଇସ୍କୁଲର ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକାରେ ଏହି ତଥ୍ୟକୁ ସ୍ୱୀକାର କରିଛନ୍ତି ।

ଏହି ଭୌମ ବଂଶ ଅଧିବାସୀମାନେ ଦୁଇ ଭାଗରେ ବିଭକ୍ତ ହୋଇ ଏବେ ମଧ୍ୟ ଏହି ରାଜ୍ୟରେ ବସବାସ କରୁଛନ୍ତି । ସେମାନେ ୧—ତାପସୀ ଓ ୨—ଭଲିକା ସମ୍ପ୍ରଦାୟଭୁକ୍ତ; କିନ୍ତୁ ଶ୍ରୀ ଜନ୍ମେଜୟ ସାହୁ ତାଙ୍କର ସଂଗ୍ରହ ମଧ୍ୟରେ ତାପସୀ ଓ ଭଲିକା ନାମରେ ଦୁଇ ଜଣ ବ୍ୟବସାୟୀ ବୌଦ୍ଧଧର୍ମାବଲମ୍ବୀ ଏ ରାଜ୍ୟକୁ ଆସି ଭୌମ ବଂଶ ବଢ଼ାଇବାରେ ଅଗ୍ରଗାମୀ ହୋଇଥିଲେ ବୋଲି ଦର୍ଶାଇଥିଲେ । Dr. N. Pattnaik Integrated Tribal Dev. Agency Reportରେ ଏଇ ଦୁଇଟି ଜାତିର ଲୋକମାନେ ୧୦୦୦ ଖ୍ରୀଷ୍ଟାବ୍ଦ ବେଳକୁ ଯମଗରଭ କ୍ଷେତ୍ରମଣ୍ଡଳର ଅଧିବାସୀ ହିସାବରେ ଗ୍ରହଣ କରିଛନ୍ତି । ଏ ଯୁଗରେ ଏମାନେ ପାହାଡ଼ୀ ଓ ରାଜକୁଳୀ ଭୂୟା ନାମରେ ନାମିତ ହୋଇ ବସବାସ କରି ଚାଲିଛନ୍ତି । ଯେଉଁମାନେ ରାଜାଙ୍କ ସଂସ୍ପର୍ଶରେ ରହିଲେ ସେମାନେ ରାଜକୁଳୀ ଭୂୟାଁ ରୂପେ ପରିଚିତ । ଏମାନଙ୍କର ଚାଲିଚଳନ ସାଧାରଣତଃ ହିନ୍ଦୁ ସମାଜର ସାମଞ୍ଜସ୍ୟ ପ୍ରମାଣିତ ହୁଏ । ଏମାନେ ଚାଙ୍ଗୁ ଓ ମାଦଳ ଆବିଷ୍କାରକ ବୋଲି ଗର୍ବ କରନ୍ତି; କିନ୍ତୁ ଚାଙ୍ଗୁ ବାଦ୍ୟ କେବଳ ଯୁଆଙ୍ଗମାନଙ୍କର ଦୁର୍ମୂଲ୍ୟ ସମ୍ପତ୍ତି ବୋଲି ସେମାନେ ଦାବୀ କରନ୍ତି । ଏମାନେ ହିନ୍ଦୁମାନଙ୍କ ଭଳି ବାର ମାସରେ ତେର ପର୍ବ ପାଳିବା ସଙ୍ଗେ ସଙ୍ଗେ ପୁଜିଆଁ ଓ ପୃଷ୍ପୁନେଇଁରେ ରାଜାଙ୍କୁ ଭେଟି ଦିଅନ୍ତି

ଏହି ଭୂୟାଁମାନଙ୍କର ଏ ରାଜ୍ୟକୁ ପ୍ରବେଶ କରିବାର ସମୟ ୯ ଖ୍ରୀଷ୍ଟାବ୍ଦ ବୋଲି Cobden Ramsey ମଧ୍ୟ ଦର୍ଶାଇଛନ୍ତି । ଏମାନଙ୍କ ପୂର୍ବରୁ ଯୁଆଙ୍ଗମାନେ ଆଦିମ ଅଧିବାସୀ ହିସାବରେ ପରିଚିତ ବୋଲି କ୍ଷେତ୍ରମୋହନ ମିଶ୍ର, ପଣ୍ଡିତ ବିନାୟକ ମିଶ୍ର, ଫକୀରମୋହନ ସେନାପତି ତଥା ଦଲେଇଲାମା ଲାମାଇଜମରେ ତାଙ୍କ ଲେଖା ମାଧ୍ୟମରେ ସୂଚ୍ଛ ଦେଇଛନ୍ତି ।

ଏହି ଯୁଆଙ୍ଗମାନେ ଅଷ୍ଟ୍ରୋ ଏସିଆଟିକ୍ ବା ସେଣ୍ଟ୍ରାଲ ଏସିଆଟିକ୍ ହିସାବରେ ପରିଚିତ । ଏମାନେ ଖ୍ରୀ:ପୂ: ୬ରେ ତଥାକଥିତ ଯମଗିରି କ୍ଷେତ୍ରମଣ୍ଡଳରେ ବସବାସ କରୁଥିଲେ । ଭୂୟାଁମାନଙ୍କର ପ୍ରବେଶ ପରେ ଏମାନେ ବିତାଡ଼ିତ ହୋଇ ଗୋନାସିକା, ମାଲ୍ୟଗିରି, ଗନ୍ଧମାଦନ ପାଦ ଦେଶରେ ପଲ ମାଶ ରହୁଥିଲେ ।

ଏହି ତଥାକଥିତ ଯୁଆଙ୍ଗମାନେ ସେହି ଗୋନାସିକା, ଗନ୍ଧମାଦନର ପାଦ ଦେଶରେ ରହି ଫଳମୂଳ, ପଶୁପକ୍ଷୀଙ୍କର କଞ୍ଚା ମାଂସ ଖାଇ, ଅର୍ଦ୍ଧଲଗ୍ନ ଅବସ୍ଥାରେ ଥିଲେ । ଏବେ ବି ସେମାନେ ସଂଖ୍ୟାଧିକ ନ ହେଲେ ମଧ୍ୟ ସେହି ପର୍ବତର ପାଦ ଦେଶରେ ପତ୍ରର କୁଡ଼ିଆରେ ବସବାସ କରି ଆସୁଛନ୍ତି ଏବଂ ପୂର୍ବପରି ଚଳୁଛନ୍ତି । ଜାତୀୟ ସରକାରଙ୍କ ଶୁଭଦୃଷ୍ଟି ଫଳରେ ଏମାନେ ପୋଡ଼ୁଚାଷ ସରକାରଙ୍କ ଦାନ ଜମିରେ ଚାଷ କରି ଚଳୁଛନ୍ତି । ଏହି ଯୁଆଙ୍ଗମାନେ ପରିଶ୍ରମ କାତର ହେଲେ ମଧ୍ୟ ଅତିଥି ସତ୍କାରର ଏକ ଜ୍ୱଳନ୍ତ ନିଦର୍ଶନ । ଏମାନେ ପେଟକୁ ନ ଖାଇ ଅତିଥି ସତ୍କାର କରନ୍ତି । ଏମାନଙ୍କର ସଂସ୍କୃତି ବିଷୟରେ ପର ପଂକ୍ତିରେ ଆଲୋକପାତ କରିଛି ।

ଖ୍ରୀ: ପୂ: ୬ର ମଧ୍ୟପାଦରେ କୁଶାଣମାନେ ଏହି ମଣ୍ଡଳରେ ବସବାସ କରିଥିବାର ପ୍ରମାଣ ମଧ୍ୟ ମିଳେ । ପ୍ରମାଣ ସ୍ୱରୂପ ଚମ୍ପୁଆ ଅନ୍ୟ ଅଞ୍ଚଳ ଅଶନ-ପାଟ ଐତିହାସିକ ପୀଠ ଓ ସହରର ଅନ୍ୟ ଅଞ୍ଚଳ ସୀତାବିଞ୍ଜରେ କୁଶାଣ ମୁଦ୍ରା ଏବେ ବି ସୁରକ୍ଷିତ ।

ମୋଗଲ ଓ ଅଫଗାନସ୍ଥାନମାନଙ୍କର ଉତ୍କଳ ପ୍ରବେଶ ସମୟରେ ଏହି ଖିଞ୍ଜିଲିଙ୍ଗ ମଣ୍ଡଳର ପ୍ରଜାମାନେ ଯୁଦ୍ଧରେ ଯୋଗଦେଇ ବହୁ ଦୁଃଖ ବରଣ କରିଥିଲେ ।

ଅଶୋକଙ୍କର ରାଜତ୍ୱ କାଳରେ ମଧ୍ୟ ଖିଞ୍ଜିଲିଙ୍ଗ ମଣ୍ଡଳର ଲୋକମାନେ ଯୁଦ୍ଧ କରିଥିବାର ସମ୍ବାଦ ଇତିହାସ ଅଧ୍ୟାପକ ଶ୍ରୀ ଜନ୍ମେଜୟ ସାହୁ ମଧ୍ୟ ଦର୍ଶାଇଛନ୍ତି । ମରହଟ୍ଟାଙ୍କ ଶାସନ କାଳରେ ମଧ୍ୟ ଏ ରାଜ୍ୟର ପ୍ରଜାମାନେ ଗୌଠ ପରିମାଣ ଜିଜିଆ ଦେଇ ମରହଟ୍ଟା ଶାସନକୁ ସ୍ୱୀକାର କରିଥିଲେ ବୋଲି ଶ୍ରୀ ସାହୁ ମଧ୍ୟ

ବର୍ଣ୍ଣାଇଛନ୍ତି । ଏ ରାଜ୍ୟ ବିଦେଶୀ ଶାସନର ଶିକାର ହୋଇ ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ପର୍ଯ୍ୟନ୍ତ କର ଦେଇ ଆସୁଥିଲେ ।

ଡା. ପ୍ରସନ୍ନ କୁମାର ମିଶ୍ରଙ୍କ 'Political upset in Orissa in the 19 century ପୁସ୍ତକରେ ମଧ୍ୟ ମରହଟ୍ଟାଙ୍କ ସଙ୍ଗେ ସମରରତ କ୍ଷେତ୍ର-ମଣ୍ଡଳର ପ୍ରଜାମାନେ ଯୁଦ୍ଧ କରି ଜର୍ଜ୍ଜରିତ ହୋଇଥିଲେ । ଫଳରେ ସେ ସମୟରେ ଏମାନେ ଖାଦ୍ୟ ସଙ୍କଟର ସମ୍ମୁଖୀନ ହୋଇଥିଲେ ବୋଲି ଉଲ୍ଲେଖ ଅଛି ।

ବର୍ତ୍ତମାନ ଯୁଗରେ କେନ୍ଦୁଝର ରାଜ୍ୟ ସମ୍ମିଶ୍ରଣ ପରେ ଜନବହୁଳ ହୋଇ ଓଡ଼ିଶା ପ୍ରଦେଶର ୧୩ଶ ଜିଲ୍ଲା ଭାବରେ ପରିଚିତ । ଏହାର ଉତ୍ତରରେ ସିଂହଭୂମି ଓ ପଶ୍ଚିମରେ ଢେଙ୍କାନାଳ ଓ ସୁନ୍ଦରଗଡ଼, ପୂର୍ବରେ ମୟୂରଭଞ୍ଜ ଓ ବାଲେଶ୍ୱର ଏବଂ ଦକ୍ଷିଣରେ କଟକ ଜିଲ୍ଲା ଢେଙ୍କାନାଳର କିୟଦାଂଶ ଅବସ୍ଥିତ । ଏହାର ଲୋକସଂଖ୍ୟା ୧୯୮୧ ସେନସସ ଅନୁଯାୟୀ ୧୧, ୦୯, ୫୪୬; ଆୟତନ ୮୨୪୦ ବର୍ଗମାଇଲ । ଏହା ଜଙ୍ଗଲ ପାହାଡ଼ଘେରା ୩ଟି ଅଣୁ ବିଭାଗ ମଣ୍ଡଳରେ ବିଭକ୍ତ । ମୋଟ ୨୦୮୨ଟି ଗ୍ରାମକୁ ନେଇ ଏ ଜିଲ୍ଲା ଗଠିତ । ଏ ଜିଲ୍ଲାର ୪୨ଟି ଆଦିବାସୀ ଉପଜାତି ମଧ୍ୟରେ ଯୁଆଙ୍ଗମାନେ ବେଶୀ ଅନୁନ୍ନତ । ଏମାନେ ଯୁଆଙ୍ଗ ପୀଢ଼ ତଥା ଭୂୟାଁପୀଢ଼ମାନଙ୍କରେ ବସତି ସ୍ଥାପନ କରି ରହିଛନ୍ତି । ଏମାନଙ୍କ ବ୍ୟତୀତ ଉଚ୍ଚ ଜାତିର ହିନ୍ଦୁ ଓ ମୁସଲମାନମାନେ ମଧ୍ୟ ବାସ କରନ୍ତି । ପୁରାତନ ଯୁଗରୁ କେନ୍ଦୁଝର ଜିଲ୍ଲା କେନ୍ଦୁଝର ଓ ଚମ୍ପୁଆ ଅଣୁ ବିଭାଗ ମଣ୍ଡଳ ମଧ୍ୟରେ ସୀମିତ ଥିଲା । ଉପର କେନ୍ଦୁଝର ଅଞ୍ଚଳରେ ଯୁଆଙ୍ଗ, ଭୂୟାଁ, ବେଢ଼ାକାଲ, ସାନ୍ତାଳ, କନ୍ଧ ଆଦିବାସୀଙ୍କ ସଂଖ୍ୟା ବେଶି । ଖଣିଜୋନ୍ନତ ବଡ଼ବିଲ ଯୋଡ଼ା ଅଞ୍ଚଳରେ ମୁଣ୍ଡା, ହୋ, କୋହ୍ଲ, ସାନ୍ତାଳମାନେ ବସତି ସ୍ଥାପନ କରି ଖଣି ଅଞ୍ଚଳରେ ଶ୍ରମ ଉପରେ ନିର୍ଭର କରନ୍ତି । ୨ୟ ତଳ କେନ୍ଦୁଝର (ଆନନ୍ଦପୁର) ଆନନ୍ଦପୁର ଅଞ୍ଚଳରେ ସବର୍ଣ୍ଣ ହିନ୍ଦୁଙ୍କ ସାଙ୍ଗରେ ଭୂୟାଁ ବା ଥୁଡ଼, କୋହ୍ଲ, ସାନ୍ତାଳ, ଶବର, ମୁଣ୍ଡା ପ୍ରଭୃତି ଆଦିବାସୀମାନେ ବସବାସ କରନ୍ତି । ଏ ରାଜ୍ୟ ତଥା ଜିଲ୍ଲାର ଯୁଆଙ୍ଗମାନେ ଆଦିମ ଅଧିବାସୀ ହିସାବରେ ପରିଚିତ । ଏ ଜିଲ୍ଲାରେ ଉପର କେନ୍ଦୁଝରରେ ୬୦% ଓ ତଳ କେନ୍ଦୁଝରରେ ୫୦% ଆଦିବାସୀ ବାସ କରନ୍ତି ।

ଖ୍ରୀ: ୧୧୨୮ ଠାରୁ ୧୯୪୮ ସୁଦ୍ଧା ଏ ରାଜ୍ୟରେ ୩୮ ଜଣ ଭଞ୍ଜ ରାଜା ରାଜତ୍ୱ କରି ଯାଇଛନ୍ତି । ସେମାନଙ୍କ ଭିତରେ ସନ୍ଥ ଭଞ୍ଜ ବୌଦ୍ଧ ଧର୍ମର ପ୍ରତିଷ୍ଠା କରିଥିଲେ । ତା'ର ଜ୍ୱଳନ୍ତ ପ୍ରମାଣ ଦିଏ ସୀତାବିଞ୍ଜି ଓ ସନ୍ତେଇ ହୁଡ଼ । ସୀତାବିଞ୍ଜି

ଓ ସନ୍ଦେହ ଦୂର କରିବା ଶୀର୍ଷକ ଦୁଇଟି ଲେଖାରେ ସନ୍ଥ ଭଞ୍ଜ ବା ଶାନ୍ତ ଦେବଙ୍କ ବିଷୟରେ କିଛି ଜାଣିବାର ସୁଯୋଗ ପାଇବେ । ଭକ୍ତକବି ଗୋବିନ୍ଦ ଭଞ୍ଜ ତାରଣୀ, ରଘୁନାଥ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଜଣେ କବି ସ୍ତରରେ ପରିଚିତ । ତାଙ୍କର ଶ୍ରୀଚରଣ ସୁଧାନିଧି, ବଉଳା ଚରିତ, ଭକ୍ତିବିନୋଦ, ରସ ମୁକ୍ତାବଳୀ କାବ୍ୟଗ୍ରନ୍ଥକ ଏ ଯାବତ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ଭଞ୍ଜ ଦେଓଙ୍କ ପାଠାଗାରରେ ଗଚ୍ଛିତ । ଏହି ଭଞ୍ଜ ବଂଶରେ ରାଜା ପ୍ରତାପ ବଳଭଦ୍ର ଭଞ୍ଜ ଶିବ ପାର୍ବତୀ ଉପାଖ୍ୟାନ ଅମ୍ବିକା ବିଳାସ କାବ୍ୟରେ ଲେଖି ଜନମାନସରେ ପରିଚିତ । ଏମାନଙ୍କ ବ୍ୟତୀତ ଜନାର୍ଦ୍ଦନ ଭଞ୍ଜଙ୍କ ରାଜତ୍ୱ କାଳରେ ସଂସ୍କୃତରେ ଲିଖିତ 'ଭଞ୍ଜ ମହୋଦୟମ୍' ନାଟକ କେନ୍ଦୁଝରରେ ମଣି ସଦୃଶ ଜାଜ୍ଜ୍ୱଲ୍ୟମାନ । ଏ ରାଜ୍ୟରେ ରାଜାମାନଙ୍କ ବ୍ୟତୀରେକ ଅନେକ ସୁ-କବି ଓଡ଼ିଆ ଭାଷା ସାହିତ୍ୟକୁ ଅବଦାନ ଦେଇ ଚିରଦିନପାଇଁ ଅମର । ସେମାନଙ୍କ ଭିତରେ ନୀଳକଣ୍ଠ ମିଶ୍ର, ନରହରି ମିଶ୍ର, ହଳଧର ମିଶ୍ର, ବାସୁଦେବ ମିଶ୍ର, ବନମାଳୀ ପଟ୍ଟନାୟକ, କ୍ଷେତ୍ରମୋହନ ମିଶ୍ର, ରାମ ମାହାଳୁଡ଼, ସୁଭଦ୍ରା ଦେବୀ, ନରୋତ୍ତମ ପଟ୍ଟନାୟକ, ପ୍ରାଣବଲ୍ଲଭ ପଟ୍ଟନାୟକ, ସୁଦର୍ଶନ ମିଶ୍ର, ରବି ନନ୍ଦନ ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

କେନ୍ଦୁଝର ଜିଲ୍ଲା ଅନୁନ୍ନତରେ ଶ୍ରେଷ୍ଠ ହେଲେ ମଧ୍ୟ ଖଣିଜ ସମ୍ପଦ ସମ୍ପନ୍ନା ଓ କର୍ମଦକ୍ଷୀରେ ପରିପୂର୍ଣ୍ଣ । ଏହି କର୍ମଦକ୍ଷୀ ବହୁଳା କେନ୍ଦୁଝର ଜିଲ୍ଲା କେତେ-ଗୁଡ଼ିଏ କର୍ମଦକ୍ଷୀ ଉପରେ ଆଲୋକପାତ କରି ଲୋକଲୋଚନର ଦୃଷ୍ଟି ଆକର୍ଷଣ କରୁଛି । ଏ ଜିଲ୍ଲା ଆଦିବାସୀ ବହୁଳ ଜିଲ୍ଲା ହେଲେ ମଧ୍ୟ ଏହି ଜିଲ୍ଲାରେ ଭଞ୍ଜ ରାଜା-ମାନେ ତାଙ୍କର ରାଜତ୍ୱ କାଳରେ ରାଜ୍ୟର ସ୍ଥାନେ ସ୍ଥାନେ ଉଚ୍ଚ ପ୍ରାଥମିକ ତଥା ମଧ୍ୟ ଇଂରାଜୀ ବିଦ୍ୟାଳୟମାନ ସ୍ଥାପନା କରି ପ୍ରଜାମାନଙ୍କୁ ଶିକ୍ଷା ଦେବାକୁ କୁଣ୍ଠା-ବୋଧ କରୁ ନ ଥିଲେ । ୧୯୦୭-୦୮ ମସିହାରେ ଏ ରାଜ୍ୟରେ ମାତ୍ର ୨ଟି ମି.ଇ. ୭ଟି ଅପରପ୍ରାଇମେରୀ, ୧୧୫ଟି ନିମ୍ନ ପ୍ରାଇମେରୀ ସ୍କୁଲ ଓ ୪ଟି ବାଳିକା ସ୍କୁଲ ନିର୍ମାଣ କରାଯାଇଥିଲା । ଏହାଛଡ଼ା ୧ଟି ସଂସ୍କୃତ ଟୋଲ, ୩ଟି ପ୍ରଧାନ ସ୍କୁଲ ବ୍ୟତୀତ ୩୭ଟି ପାଠଶାଳା ଥିଲା । ଏ ରାଜ୍ୟ ବ୍ରିଟିଶ ସରକାରଙ୍କ ଠାରୁ ୧୯୦୭-୦୮ରେ ୧୦,୦୦୦ ଟଙ୍କା ପ୍ରାଥମିକ ଶିକ୍ଷା ବିଭାଗ ପାଇଁ ଗ୍ରାଣ୍ଟ ପାଇଥିଲା ।

ରାଜ୍ୟ ସମ୍ମିଶ୍ରଣ ଅବ୍ୟବହିତ ପୂର୍ବରୁ କେନ୍ଦୁଝରର ସଦର ମହକୁମାରେ Gibson High School (D. N. H. School), ଆନନ୍ଦପୁରରେ B.N. High School ପ୍ରତିଷ୍ଠିତ ହୋଇଥିଲା । ୧୯୩୪ ମସିହା ଅଗଷ୍ଟ ୨୦ ତାରିଖରେ Col. A. S. Meik C. M. G. Agent for Governor General, Estern Stateଙ୍କ ଦ୍ୱାରା Gibson ହାଇସ୍କୁଲ ଓ B. N.

ହାଇସ୍କୁଲ ସ୍ୱର୍ଗତ ରାଜା ବଳଭଦ୍ର ନାରାୟଣ ଭଞ୍ଜଙ୍କ ଦ୍ୱାରା ୧୯୫୪ରେ ପ୍ରତିଷ୍ଠିତ ହୋଇଥିଲା ।

ଗଡ଼ଜାତ ସମ୍ମିଶ୍ରଣ ପରେ କେନ୍ଦୁଝର ଜିଲ୍ଲାରେ ଶିକ୍ଷାର ପ୍ରସାର ହୋଇ-ଥିଲା । ଫଳରେ ଗୋଟିଏ ମହାବିଦ୍ୟାଳୟରୁ ୧୦ଟି ମହାବିଦ୍ୟାଳୟ ଓ ଗୋଟିଏ ବାଳିକା ମହାବିଦ୍ୟାଳୟ, ଗୋଟିଏ ଅଇନ ମହାବିଦ୍ୟାଳୟ, ୭୨ଟି ଉଚ୍ଚଇଂରାଜୀ ବିଦ୍ୟାଳୟ, ୧୧୩ଟି ମାଧ୍ୟମିକ ବିଦ୍ୟାଳୟ ଓ ୧୧୮୧ଟି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ହେବା ସତ୍ତ୍ୱେ ଆଦିବାସୀମାନଙ୍କ ଉନ୍ନତିକଳ୍ପେ ଅମ୍ଭମାନଙ୍କ ଜାତୀୟ ସରକାରଙ୍କ ଦ୍ୱାରା ୫୪ଟି ସେବାଶ୍ରମ, ୫ଟି ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ ୮ଟି ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନା କରାଯାଇଛି ।

ଏ ରାଜ୍ୟରେ ୩ଟି ଉପ ଅଞ୍ଚଳ, ୧୩ଟି ବ୍ଲକ, ୭ଟି ତହସିଲ, ୧୩ଟି ପୋଲିସ ଥାନା ଅନୁଷ୍ଠିତ ହୋଇ ଲୋକମାନଙ୍କର ସୁବିଧା ଅସୁବିଧା ଦେଖୁଛନ୍ତି । ଏ ରାଜ୍ୟରେ ଲୌହ ସମ୍ପଦ ଛଡ଼ା ହେମାଟାଇଟ, ମାଙ୍ଗାନିଜ ବିଦେଶକୁ ରପ୍ତାନି ହୁଏ । ଏହା ଶ୍ରୀସମ୍ପନ୍ନା ହେଲେ ମଧ୍ୟ ଏ ରାଜ୍ୟର ଅଧିବାସୀମାନେ ସାଧାରଣତଃ ଖଣି ଶ୍ରମିକ ହିସାବରେ ଜୀବିକା ଅର୍ଜନ କରନ୍ତି । ଏ ରାଜ୍ୟରେ ଅନେକଗୁଡ଼ିଏ ଦେବା ଦେବୀ ମନ୍ଦିର ପ୍ରତିଷ୍ଠିତ ହୋଇ ଲୋକମାନଙ୍କୁ ଧାର୍ମିକ ପରିବେଶରେ ପରିଚିତ କରାଇ ପାରିଛି । ପୁଣ୍ୟତୋୟା ବୈତରଣୀ ନଦୀ ବ୍ୟତୀତ ଏ ରାଜ୍ୟରେ ଅନେକ ଗୁଡ଼ିଏ ଛୋଟ ବଡ଼ ନଦୀ ପ୍ରବାହିତ ହୋଇ ମାଟିର ଉର୍ବରତା ବଢ଼ାଇ ଚାଲିଛି । ଏ ରାଜ୍ୟର ସବୁ ଅଂଶ ପ୍ରାୟ ଏକ ଫସଲି; କିନ୍ତୁ କୃଷିର ଜାତୀୟକରଣ ପରେ ଅନେକ ଜାଗାରେ ତାଇଚୁଙ୍ଗ ଧାନ, ଗହମ, ରବି ଫସଲ ଓ ପନିପରିବା ଉତ୍ପନ୍ନ ହୋଇ କଟକ ଜିଲ୍ଲା ତଥା ସୁନ୍ଦରଗଡ଼ ଓ ବାଲେଶ୍ୱର ଜିଲ୍ଲାକୁ ସାମୟିକ ପନିପରିବା ରପ୍ତାନି କରିବାରେ ସାହାଯ୍ୟ କରୁଛି । ଏ ରାଜ୍ୟରେ ଶୀତଦିନ ଆରମ୍ଭରୁ କୋବି ଫସଲ ହୋଇ ଅନେକଙ୍କର ଚାହିଦା ମେଣ୍ଟାଇ ଥାଏ । ଶୀତ ଦିନରେ ପାହାଡ଼ିଆ ଅଞ୍ଚଳରେ ସୋରିଷ ଓ ରାଶି ମଧ୍ୟ ବହୁ ପରିମାଣରେ ଉତ୍ପନ୍ନ ହୋଇ ଅନ୍ୟ ରାଜ୍ୟକୁ ଯୋଗାଯାଇଥାଏ । ରାଶି, ସୋରିଷ ଆଦିବାସୀମାନଙ୍କର ପ୍ରଧାନ କୃଷି । ଏହା ବ୍ୟତୀତ ଜଙ୍ଗଲ ଜାତୀୟ ଦ୍ରବ୍ୟ ଲାଖ, ମହୁଲ, ତସର, କେନ୍ଦୁପତ୍ର ଆମଦାନି ହୋଇ ଅନ୍ୟ ରାଜ୍ୟକୁ ରପ୍ତାନି କରାଯାଏ । ଆନନ୍ଦପୁର ଅଣୁଅଞ୍ଚଳର ଫକୀରପୁର, ବୋଡ଼ବଲ, ଆନନ୍ଦପୁର ଗାଁ ମାନଂକରେ ଟସରରେ ମଠାଲୁଗା, ଚଦର, ପଞ୍ଜାବୀ କନା ତିଆରି କରି ଓଡ଼ିଶା ତଥା ଅନ୍ୟ ଅଞ୍ଚଳକୁ ଯୋଗାଇ ଦିଅନ୍ତି । ମଫସଲ ଅଞ୍ଚଳରେ ରାଶି ଓ ସୋରିଷ ବ୍ୟତୀତ ଅନେକ ରକମର ପନିପରିବା କୃଷି କରି ପରିବା ବିକ୍ରୟ କରି ଲାଭବାନ ହେଉଛନ୍ତି ।

# କେନ୍ଦୁଝରରେ ଅଶାନପାଟ

## (ପ୍ରସ୍ତର ଯୁଗର ବନ୍ଧ୍ୟାଟବୀ-ବନ୍ଧ୍ୟାବତୀ)

ପ୍ରସ୍ତର ଯୁଗରେ ଅଶନପାଟ କନ୍ଦର ରାଜ୍ୟରେ ଗୋଟିଏ ଐତିହାସିକ ପୀଠ ରୂପେ ପରିଚିତ ହେଉଥିଲା । ୫ମ ଶତାବ୍ଦୀରେ ଗୁପ୍ତ ଯୁଗରେ ନାଗବଂଶର ଶତ୍ରୁ ଭଞ୍ଜ ନାମରେ ଜଣେ ରାଜା ଏ ରାଜ୍ୟରେ ରାଜତ୍ୱ କରୁଥିଲେ । ଶତ୍ରୁ ଭଞ୍ଜ ମାନ ଭଞ୍ଜଙ୍କର ପୁଅ ଥିଲେ । ଶତ୍ରୁ ଭଞ୍ଜଙ୍କ ନାମ ଦମୟନ୍ତୀ ଥିଲା । ଶତ୍ରୁ ଭଞ୍ଜ ମାନ ଭଞ୍ଜଙ୍କ ସେହି ପ୍ରସ୍ତର ଯୁଗର ବନ୍ଧ୍ୟାଟବୀ ରାଜ୍ୟର ରାଜକୁମାର । ସେ ଶାସନଭାର ଗ୍ରହଣ କଲା ପରେ ପରେ ପାଟଳୀପୁତ୍ର, ଗୟା, ନିମିଳା, ତଣ୍ଡବର୍ଦ୍ଧନ, ପଣ୍ଡ୍ରା ବର୍ଦ୍ଧନ, ବର୍ଦ୍ଧମାନ, ଗୋରାଦ୍ୱାଟି,ଶୁଭ୍ରଙ୍କା. ତାମ୍ରଲିପ୍ତି ଏବଂ ଅଭସ୍ତ କୋଷଳର ରାଜ୍ୟ ମାନଙ୍କରେ ଲକ୍ଷ ଲକ୍ଷ କାମଧେନୁ (ଗାଈ) ଦାନ କରି ସୁନାମ ଅର୍ଜନ କରିଥିଲେ । ସେ ବ୍ରହ୍ମଚାରୀମାନଙ୍କ ପାଇଁ ଉପଯୋଗୀ ରାଜ୍ୟ ତଥା ଅନ୍ୟ ଅଞ୍ଚଳରେ ବ୍ରହ୍ମଚାରୀ ପୀଠ ତଥା ସାଧୁସନ୍ଥ ମାନଙ୍କ ପାଇଁ ଧର୍ମଶାଳା ନିର୍ମାଣ କରି ଗୁପ୍ତ ରାଜତ୍ୱ କାଳରେ ଜଣେ ଧାର୍ମିକ ରାଜା ରୂପେ ପରିଚିତ ହେଉଥିଲେ । ସେ ମଧ୍ୟ ପୁରାଣ, ଶାସ୍ତ୍ର, ମୀମାଂସା, ଛନ୍ଦ, ବେଦଯୋଜରଣ, ସାଂଖ୍ୟ ଓ ବିଜ୍ଞାନରେ ଜ୍ଞାନ ଅର୍ଜନ କରି ସାରା ଭାରତ ବର୍ଷରେ ଜଣେ ଜ୍ଞାନୀ ଓ ପଣ୍ଡିତ ହିସାବରେ ପରିଚିତ ଥିଲେ । ଡାକ୍ତର ୰ନବୀନ କୁମାର ସାହୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଐତିହାସିକଙ୍କ ମତରେ ଏହି ବନ୍ଧ୍ୟାଟବୀରେ ନାଗବଂଶର ରାଜା ମାନ ଭଞ୍ଜ ତାଙ୍କ ରାଜତ୍ୱ କାଳରେ ଉତ୍ତର ପ୍ରଦେଶର ଅହିଛତ୍ର, କୌଶମ୍ବୀ ଏବଂ ମଧ୍ୟପ୍ରଦେଶର ପଦ୍ମାବତୀ ରାଜ୍ୟ ଜୟ କରି କୁଶାଣମାନଙ୍କୁ ବିନ୍ଧ୍ୟାଟବୀର ଉତ୍ତର ଭାରତ (ବିହାର) ଅଞ୍ଚଳରୁ ତଡ଼ି ଦେଇଥିଲେ ।

ନାଗବଂଶୀୟ ରାଜା ମାନ ଭଞ୍ଜ ସମୁଦ୍ର ଗୁପ୍ତଙ୍କ ଦ୍ୱାରା ପରାସ୍ତ ହୋଇ ଆତ୍ମସମର୍ପଣ କରିଥିଲେ । ସମୁଦ୍ର ଗୁପ୍ତ ସେ ସମୟରେ ଉତ୍ତର ଭାରତଖଣ୍ଡ

ଜସ୍ୱକଣ ଗୁପ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ । ନାଗବଂଶର ଉତ୍ତରାଧିକାରୀ ଶତ୍ରୁଭଞ୍ଜ ସମ୍ରାଟ ଗୁପ୍ତଙ୍କ ପୁତ୍ର ୨ୟ ଚନ୍ଦ୍ର ଗୁପ୍ତଙ୍କୁ ତାଙ୍କର କନ୍ୟା ଦାନକରି ଗୁପ୍ତବଂଶ ସାଙ୍ଗରେ ସୁ-ସମ୍ପର୍କ ସ୍ଥାପନ କରିଥିଲେ । ଏହି ଶତ୍ରୁଭଞ୍ଜ ଶୈବଧର୍ମାବଲମ୍ବୀ ଥିଲେ । ଶତ୍ରୁଭଞ୍ଜ ଭଞ୍ଜ ଜହ୍ନର ରାଜ୍ୟର ପୀଠସ୍ଥଳୀ ସୀତାବିଞ୍ଜରେ ଗୋଟିଏ ଶିବ ମନ୍ଦିର ନିର୍ମାଣ କରି ଚତୁର୍ମୁଖୀ ଶିବଲିଙ୍ଗ ସ୍ଥାପନ କରିଥିଲେ । ସେ ଯୁଗରେ ଶୈବଧର୍ମାବଲମ୍ବୀ ଏହି ଚତୁର୍ମୁଖୀ ଶିବଙ୍କ ଦର୍ଶନ ପାଇଁ ଦକ୍ଷିଣ ଭାରତରୁ ଭକ୍ତମାନେ ଆସି ପାର୍ବତନ ପୀଠସ୍ଥଳୀରେ ରହି ଶ୍ରୀ ଶଙ୍କରଙ୍କ ଦର୍ଶନ ପାଇ ଯାଉଥିଲେ । ଫଳରେ ଶତ୍ରୁଭଞ୍ଜ ଏହି ପୀଠରେ ୨୪ଟି ଧର୍ମଶାଳା ନିର୍ମାଣ କରାଇ ଭକ୍ତମାନଙ୍କର ସମସ୍ତ ବ୍ୟବସ୍ଥା କଲେ ଓ ନିଜ ହାତରେ କରି ବହୁ ଭକ୍ତମାନଙ୍କର ହୃଦୟ ଓ ମନହରଣ କରୁଥିଲେ । ସେହି ସମୟରେ ୬ଷ୍ଠଶତାବ୍ଦୀରେ ଧରପଦ ନାମରେ ଜଣେ ଶୈବଭକ୍ତ ପଶ୍ଚିମ ଗଙ୍ଗା କୂଳର ପ୍ରଭୁତା କର୍ଣ୍ଣାଟକ ରାଜ୍ୟର ଭେଦ ଅଞ୍ଚଳରୁ ପାଦରେ ଚାଲି ଚାଲି ସୀତାବିଞ୍ଜକୁ ଆସି ଚତୁର୍ମୁଖୀ ଭୋଳା ମହେଶ୍ୱରଙ୍କର ଦର୍ଶନ ଲାଭକରି ତାଙ୍କର ଶ୍ରୀଅଙ୍ଗରେ ଲୀନ ହୋଇ ଯାଇଥିଲେ ।

ଏହି ନାଗବଂଶର ଶେଷ ରାଜା ୬ଷ୍ଠ ରଣ ଭଞ୍ଜ ଥିଲେ । ଏହି ରଣ ଭଞ୍ଜ ଢେଙ୍କାନାଳ ରାଜ୍ୟ ଜୟ କରିବାର ନିମନ୍ତେ ପଥରେ ସୀତାବିଞ୍ଜଠାରେ ଶ୍ରୀ ଶଙ୍କରଙ୍କର ଦର୍ଶନାଭିଳାଷୀ ହୋଇ କିଛିଦିନ କାଟିଥିଲେ । ସାଙ୍ଗରେ ବହୁ ସୈନ୍ୟ ସାମନ୍ତ ମଧ୍ୟ ଡେରା ପକାଇ ରହିଥିଲେ । ସେମାନଙ୍କ ରହଣିକାଳରେ ଦୁଇଟି ବୃହତ୍ ପଥରଖଣ୍ଡ ଉପରେ ଆଉ ଖଣ୍ଡିଏ ପଥର ଖଣ୍ଡ ଥିବାର ଦେଖି ସ୍ୱତଃପ୍ରବୃତ୍ତ ହୋଇ ଉପରେ ରହିଥିବା ପଥରଖଣ୍ଡ ଉପରେ କାରୁକାର୍ଯ୍ୟ ଗଢ଼ିବା ମାଧ୍ୟମରେ ଅନେକଗୁଡ଼ିଏ ତୈଳଚିତ୍ର ଅଙ୍କି ଯାଇଥିଲେ । ଯାହା ଅଦ୍ୟାବଧି ରାବଣଛାୟା ରୂପେ ଯାଜ୍ୱଲ୍ୟମାନ । ଏହି ସୁନ୍ଦର କାରୁକାର୍ଯ୍ୟଭରା ତୈଳଚିତ୍ରକୁ ଆଜିକାଲି ଦର୍ଶକ ଓ ଗବେଷକଙ୍କ ନିକଟରେ ଏହା ଗୋଟିଏ ଫେରେସ୍କୋ ପେଣ୍ଟ ରୂପେ ବିଦିତ । ଯାହାକୁ ବିଦେଶୀୟ ପରିବ୍ରାଜକମାନେ ଦର୍ଶନ କରି ବହୁ ଗବେଷଣାରତ ।

ଏହି ନାଗବଂଶର ଶେଷ ରାଜା ୧୦ ଖ୍ରୀଷ୍ଟାବ୍ଦର ଶେଷ ଭାଗ ପର୍ଯ୍ୟନ୍ତ ଏ ଅଞ୍ଚଳରେ ରାଜୁତି କରୁଥିଲେ । ଏହି ବନ୍ଧ୍ୟାଟବୀ ସେ ଯୁଗରେ କୋଣ୍ଡାର ରାଜ୍ୟର ଅଂଶ ବିଶେଷ ।

କାଳକ୍ରମେ ୧୦୪୮ ଖ୍ରୀଷ୍ଟାବ୍ଦ ବେଳକୁ କଚୁଆ ରାଜପୁତ ତଥା ରାଜପୁତାନାର ସୂର୍ଯ୍ୟବଂଶ ସମ୍ଭୂତ ରାଜକୁମାର ଜୟ ସିଂ ଶ୍ରୀକ୍ଷେତ୍ର ଧାମରେ ଶ୍ରୀଜଗନ୍ନାଥଙ୍କ

ବର୍ଣ୍ଣନାରୁ ଆସି ପୁରୀ (ଶ୍ରୀଯାତ୍ରା)ର ଗଜପତି କପିଳେନ୍ଦ୍ର ଦେବଙ୍କ କବଳରୁ ବିବାଦ କରି କୋହ୍ରାର ରାଜ୍ୟର ବଶପୁର ଷ୍ଟେଟ ଉପନୌଳିକ ଭାବରେ ଗ୍ରହଣ କରି ଏ ରାଜ୍ୟରେ ରାଜତ୍ୱ ଆରମ୍ଭ କରିଥିଲେ । ସେତେବେଳେ ଏହି ବଶପୁର ଦୁଇ ଭାଗରେ ବିଭକ୍ତ ଥିଲା ଯଥା—ଖିଜ୍ଜିଙ୍ଗ ମଣ୍ଡଳ (ମୟୂରଭଞ୍ଜ) ଓ ସମଗଡ଼ଭ କ୍ଷେତ୍ର ମଣ୍ଡଳ (କେନ୍ଦୁଝର) । ଏହି ବନ୍ଧ୍ୟାଟସା ସେତେବେଳେ ସମଗଡ଼ଭ କ୍ଷେତ୍ର ମଣ୍ଡଳର ରାଜଧାନୀ ଥିଲା । ଯାହାକି ଏ କାଳରେ ଅଣନପାଟ ନାମରେ ଖ୍ୟାତ । ପୁରୀର ଠାକୁର ରାଜା କପିଳେନ୍ଦ୍ର ଦେବ ଭୌମଂକର ବଂଶରୁ ସମ୍ଭୂତ ହୋଇ ସୂର୍ଯ୍ୟବଂଶୀ ରାଜାଙ୍କର ପ୍ରଥମ ସ୍ଥାପୟିତା ବୋଲି ଗବେଷକଙ୍କ ମତ ।

୧୧୬୮ ଖ୍ରୀଷ୍ଟାବ୍ଦରେ ଜୟ ସିଂହଙ୍କ ପୁତ୍ର ଯଥାକ୍ରମେ ଆଦି ଭଞ୍ଜ ଓ ଜ୍ୟୋତି ଭଞ୍ଜ ଆଡପୁର (ଖିଜ୍ଜିଙ୍ଗ କୋଠ—କୀଚକେଶ୍ୱରୀଙ୍କ ପୀଠ) ଓ (ଖିଜ୍ଜିଙ୍ଗ ମଣ୍ଡଳ କେନ୍ଦୁଝରର) ଜ୍ୟୋତିପୁରରେ ରାଜା ହେବା ପରେ ବଶପୁର ଷ୍ଟେଟର ଏ ରାଜ୍ୟ ଦୁଇଟି ମୟୂରଭଞ୍ଜ ଓ କେନ୍ଦୁଝର ରାଜ୍ୟ ରୂପେ ପରିଚିତ ହୋଇଥିଲେ ।

ଏହି ପ୍ରସ୍ତର ଯୁଗରେ Microlithse and Polished Stone Celt ପଥର ଅଣନପାଟ-ବନ୍ଧ୍ୟାଟସା ଅଞ୍ଚଳରେ ବହୁ ପରିମାଣରେ ରହିଥିବାର ବୈଜ୍ଞାନିକମାନଙ୍କର ମତ । ଏହି ପ୍ରସ୍ତର celt (belt) ବୈତରଣୀ ନଦୀର କୂଳେ କୂଳେ ପାଟଣା ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ । ସେହି ପଥରରୁ କୃଷି ଉପକରଣ ବିଂବହାର୍ଯ୍ୟ ଧନୁଶର, ଟାଙ୍ଗିଆ, ଫାଳ, କୋଦାଳ, ଫାଳ ଇତ୍ୟାଦି ତିଆରି କରି ସେ ସମୟରେ କୃଷି କାର୍ଯ୍ୟରେ ବ୍ୟବହାର କରାଯାଉଥିଲା । ସେହି ପଥରରେ ତିଆରି ଉପକରଣର କିୟଦାଂଶ ଶ୍ରୀ କୀଚକେଶ୍ୱରୀ ଠାକୁରାଣୀଙ୍କ ମନ୍ଦିର ନିକଟ ମିଉଜିୟମରେ ସଂରକ୍ଷିତ । ଏହି ପ୍ରସ୍ତର ଖଣ୍ଡର ନମୂନା ଆମର ଭୁବନେଶ୍ୱର ମିଉଜିଅମରେ ମଧ୍ୟ ସଂରକ୍ଷିତ । Mr. Federick Dandua wibben, ଜଣେ ବାଉଁଶ ବ୍ୟବସାୟୀ । ତାଙ୍କର ବ୍ୟବସାୟ ସମୟରେ ଅର୍ଥାତ୍ ୧୯୧୭ ମସିହାରେ ଚମ୍ପୁଆ ଠାରୁ ରାମଳା, ଅଣନପାଟ, ପାଟଣା ଆଦି ଅଞ୍ଚଳରେ ତଥା ବୈତରଣୀ କୂଳେ କୂଳେ Quartzile belt ଆକାରରେ ମାଟି ଭିତରେ ଖଣି ରହିଥିବାର କଥା ତାଙ୍କର ଖଣ୍ଡିଏ ବହିରେ ଲେଖି ଯାଇଛନ୍ତି ।

ସେହି ପ୍ରାଚୀନ ପ୍ରସ୍ତର ଯୁଗର ବନ୍ଧ୍ୟାଟସା ଏ ଯୁଗରେ ଅଣନପାଟ ରୂପେ ପରିଚିତ । ଏହି ଗ୍ରାମଟିରେ ପ୍ରାୟ ୨୫୦୦।୩୦୦୦ ଘର ଅଛି । ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କ ପାଖରେ ବାଟ ଦ୍ଧି ଏହି ଗ୍ରାମରେ ବାସ କରନ୍ତି । କେତେକଙ୍କ ମତରେ ଆମର ସ୍ୱନାମଧନ୍ୟ ଶ୍ରୀ କୃଷ୍ଣକେଶ ନାୟକଙ୍କ ଦ୍ୱାରା ପ୍ରଥମେ ଛଉନୃତ୍ୟର ଆରମ୍ଭ

ହୋଇଥିଲା । ଆଉ କେତେକଙ୍କ ମତରେ ଷଢ଼େଇକଳାର ନୃତ୍ୟଗୁରୁ ଆସି ଅଣନ ପାଟରେ ଏହି ଛଉନୃତ୍ୟର ଶିକ୍ଷା ଦେଉଥିଲେ । କିନ୍ତୁ ଗତ ଦଶ ବର୍ଷ ମଧ୍ୟରେ ଅଣନପାଟ (ବନ୍ଧ୍ୟାଟବୀ) ଗ୍ରାମରେ ଅନ୍ୟୁନ ତିନୋଟି ଛଉନୃତ୍ୟ ଦଳ ମୁଣ୍ଡଟେକ ଓଡ଼ିଶା ତଥା ବିହାରର ବିଭିନ୍ନ ଅଞ୍ଚଳରେ ଛଉନୃତ୍ୟ ପରିବେଷଣ କରି କୋଟି ମୁଖରେ ପ୍ରଶଂସିତ । କେତେକ ଗବେଷକଙ୍କ ମତରେ ଏହି ଅଣନପାଟ ଗ୍ରାମରେ ଛଉନୃତ୍ୟ ଷଢ଼େଇକଳାକୁ ଅଣାଯାଇଛି । ଛଉନୃତ୍ୟରେ ପୁରାତନ ଯୁଗର ସୁଆଙ୍ଗରେ ବ୍ୟବହୃତ ହେଉଥିବା ମୁଖା ବ୍ୟବହାର କରି ତ୍ରେତା ଓ ଦ୍ୱାପର ଯୁଗର ରାମାୟଣ ଓ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ତଥା କଂସବଧ ଅନ୍ୟତମ । ଏହି ଛଉନୃତ୍ୟରେ ମଞ୍ଚ ଭିତରୁ ସଙ୍ଗୀତ ଲହରୀ ସାଙ୍ଗରେ ମୁରଲୀ ନିସ୍ୱନ ଦର୍ଶକମାନଙ୍କୁ ମୁଗ୍ଧ କରାଇ ପାରୁଛି । ପଶୁପକ୍ଷୀମାନଙ୍କର ମୁଖା ବ୍ୟବହାର କରି କଳାକାର-ମାନେ ଦର୍ଶକମାନଙ୍କ ମନ ମୋହି ପାରୁଛନ୍ତି । ଏମାନଙ୍କର ଛଉଦଳ ମଧ୍ୟ କଟକ, ଭୁବନେଶ୍ୱର ଓ ଦିଲ୍ଲୀ ସହରରେ ଛଉନୃତ୍ୟ ପରିବେଷଣ କରି ଦର୍ଶକମାନଙ୍କର ମନମୁଗ୍ଧ କରି ପାରିଛନ୍ତି ।

---

ସୂତ୍ର—An upset of fredatory state of Orissa, Keonjhar ଓ Mayurbhanjର Gazatter ଏବଂ ଡ. ନବୀନ କୁମାର ସାହୁଙ୍କର ଲେଖାରୁ ସଂଗ୍ରହ କରାଯାଇଛି ।

●

(ବଲାଙ୍ଗିର ଷନାମ୍ମି ପତ୍ରିକାରେ ପ୍ରକାଶିତ)

# ମା' ତାରିଣୀ

ଖ୍ରୀ: ୧୪୮୦ର ଶେଷ ଭାଗର କଥା; ଯେତେବେଳେ ଏହି କେନ୍ଦୁଝରର ଘଞ୍ଚ ପାହାଡ଼ ଜଙ୍ଗଲରେ ପରିପୂର୍ଣ୍ଣ ହୋଇ ଦର୍ଶକମାନଙ୍କ ମନ ହରଣ କରୁଥିଲା, ସେହି ସବୁଜ ପାହାଡ଼ଘେରା କେନ୍ଦୁଝରର ଜନମାନସ ତଳେ ଦାକ୍ଷିଣାତ୍ୟର କାଞ୍ଚି ରାଜ୍ୟର କନକ ଦୁର୍ଗାଙ୍କ ମନ ମଧ୍ୟରେ ନାଚି ଉଠିଥିଲା। ଯାହାଙ୍କର ଆକର୍ଷଣ ହିଁ କେନ୍ଦୁଝରର ସ୍ୱର୍ଗୀୟ ତ୍ରିଲୋଚନ ଭଞ୍ଜଙ୍କର ଏକମାତ୍ର ସନ୍ତାନ ଭକ୍ତ ଗୋବିନ୍ଦଙ୍କୁ ଟାଣିନେଲା। ସେହି ଭଞ୍ଜବଂଶୀୟ ଗୋବିନ୍ଦଙ୍କର ଭକ୍ତିପୂର୍ଣ୍ଣ ଆଳାପ (କଥୋପକଥନ)କୁ କେନ୍ଦୁଝରର ଲୋକମାନେ ପାଗଳର ପ୍ରଳାପ ଆଖ୍ୟା ଦେଉଥିଲେ। ଗୋବିନ୍ଦଙ୍କର ଶ୍ରୀକ୍ଷେତ୍ରରେ ଜଗନ୍ନାଥ ଦର୍ଶନ ପାଇଁ ବ୍ୟାକୁଳତାରେ ମ୍ରିୟମାଣ ହୋଇ ରାଜା କେନ୍ଦୁଝର ବେବର୍ତ୍ତାଙ୍କ ସାଙ୍ଗରେ ଗୋବିନ୍ଦଙ୍କୁ ୧୪୭୮ ଖ୍ରୀଷ୍ଟାବ୍ଦରେ ଶ୍ରୀକ୍ଷେତ୍ରକୁ ପଠାଇଲେ। ଭକ୍ତ ଗୋବିନ୍ଦଙ୍କର ଶ୍ରୀକ୍ଷେତ୍ରରେ ରହଣି ଓ ଜଗନ୍ନାଥଙ୍କର ନିତ୍ୟ ନୈମିତ୍ତିକ ଦର୍ଶନ ରାଜାଧିରାଜ ଶ୍ରୀପୁରୁଷୋତ୍ତମ ଦେବଙ୍କ ଅଗୋଚର ହେଲାନାହିଁ। ଜଗନ୍ନାଥଙ୍କ ସ୍ୱପ୍ନାଦେଶରେ ଗଜପତି ଗୋବିନ୍ଦଙ୍କୁ ଦେଖିବାକୁ ଚାହିଁଲେ; କିନ୍ତୁ ଗୋବିନ୍ଦ ଶ୍ରୀ ଜଗନ୍ନାଥଙ୍କ ପାଦପଦ୍ମରେ ନିଜକୁ ନିୟୋଜିତ କରି ଗଜପତିଙ୍କର ଆଦେଶ ଭୁଲିଗଲେ।

ସେହି ସମୟରେ କାଞ୍ଚି ନରପତି ଶାଲୁ ନରସିଂହ ଦାକ୍ଷିଣାତ୍ୟ ଜୟ କରିବାକୁ ତାଙ୍କର ଏକମାତ୍ର କନ୍ୟା ପଦ୍ମାଙ୍କୁ ସାଙ୍ଗରେ ନେଇ ଯାଇଥିଲେ। ଶାଲୁ ନରସିଂହ ଦାକ୍ଷିଣାତ୍ୟ ଜୟ କଲେ ଗଜପତିଙ୍କର ଅପମାନ ହେବ; ଏଣୁ ଗଜପତି ଶାଲୁଙ୍କର ସମ୍ମୁଖୀନ ହେବାକୁ ଦାକ୍ଷିଣାତ୍ୟ ଯୁଦ୍ଧରେ ଅଗ୍ରସର ହେଲେ। ବଡ଼ ଠାକୁରଙ୍କର ସ୍ୱପ୍ନାଦେଶରେ ଗୋବିନ୍ଦଙ୍କୁ ସେନାପତି ପଦରେ ଅଭିଷିକ୍ତ କରି ସାଙ୍ଗରେ ଧରି ଦାକ୍ଷିଣାତ୍ୟ ଗଲେ। ଉତ୍କଳ ଇତିହାସ ଏ ବିଷୟରେ ବିଶଦ ବର୍ଣ୍ଣନା ବହନ ଶ୍ରୀ ଜଗନ୍ନାଥଙ୍କର ମାଣିକ ପାଟଣାରେ ଦହିଖିଆ କଥା କାହାକୁ ଅଜଣା ନୁହଁ। ସେହିବାର

ଯୁଦ୍ଧରେ ସ୍ୱୟଂ ଜଗନ୍ନାଥ କାଞ୍ଚି ଅଭିଯାନରେ ଯାଇଥିଲେ ଏକଥା କବଚନ୍ଦ୍ର କାଳୀ ପଟ୍ଟନାୟକ ତାଙ୍କର କାଞ୍ଚି ଅଭିଯାନରେ ବର୍ଣ୍ଣାଇଥିଲେ; କିନ୍ତୁ ସେହି ଉତ୍କଳ ସ୍ୱାମୀସ୍ୱ ଶ୍ରୀ ଜଗନ୍ନାଥଂକ ଆଶୀର୍ବାଦରେ ଦାକ୍ଷିଣାତ୍ୟ ଜୟ କରିବାକୁ ଯାଇ ପୁରୁଷୋତ୍ତମଦେବ ପଦ୍ମାଂକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପଦ୍ମାଙ୍କୁ ବିବାହ କରିବାକୁ ଇଚ୍ଛା କଲେ; କିନ୍ତୁ ଶାଳୁଂକ ସଙ୍ଗେ ଯୁଦ୍ଧରେ ପରାଜିତ ହୋଇ ଗଜପତି ମନଦୁଃଖରେ ଶ୍ରୀକ୍ଷେତ୍ରକୁ ଫେରି ଆସିଲେ । ଭକ୍ତ ଗୋବିନ୍ଦ କିନ୍ତୁ ଯେଉଁ ଗୁରୁଣୀଙ୍କୁ ପାଦପଦ୍ମ ଧରି ଗୁଡ଼ିବାଲେ ନାହିଁ । ତାଂକର ଏକମାତ୍ର ଆକାଂକ୍ଷା କାହିଁକି ସେମାନେ ଯୁଦ୍ଧରେ ପରାଜିତ ହେଲେ ? ଏହି ଭାବନା ନେଇ ସେ କାଞ୍ଚି ଅଧିଷ୍ଠାତ୍ରୀ ଦେବୀ କନକ ଦୁର୍ଗାଙ୍କୁ ଭକ୍ତିରେ ସନ୍ତୁଷ୍ଟ କରିବାକୁ ବଦ୍ଧପରିକର ହେଲେ । କାଞ୍ଚି ରାଜ୍ୟର କନକ ଦୁର୍ଗା ଗୋବିନ୍ଦଂକ ଭକ୍ତିରେ ବାଧ୍ୟ ହୋଇ ଦିନେ ରାତିରେ ତାଙ୍କୁ ସ୍ୱପ୍ନରେ ଦେଖାଦେଲେ ଏବଂ କହିଲେ—"ତାଂକର ତ୍ରିଶୂଳ ହିଁ ଗଜପତିଂକ ସୈନ୍ୟ କ୍ଷୟ କରି ପୁରୁଷୋତ୍ତମଙ୍କୁ ପରାସ୍ତ କରିଛି । ତୁ ଦୁଃଖ ନ କରି ଫେରି ଯା' । ମୋର ଭାରି ଇଚ୍ଛା—ମୁଁ ସେହି କଳାଧଳାବେଣୀ ଠାକୁରଙ୍କୁ ଥରେ ଦର୍ଶନ କରିବି । ମୋତେ ଅତି ଅଲଅଲି ପଦ୍ମାଙ୍କୁ ଗଜପତିଂକର ହାତରେ ଅର୍ପଣ କରି ତୋ' ସାଙ୍ଗରେ ନେଇଯିବୁ ।"

ଗୋବିନ୍ଦ ଦେବୀଂକ କଥାରେ ଭାବବିହ୍ୱଳିତ ହୋଇ କାନ୍ଦି ଉଠିଲେ । ତାଙ୍କୁ ସାନ୍ତ୍ୱନା ଦେଇ ଦୁର୍ଗା କହିଲେ—"ତୋ'ପରି ଭକ୍ତ ଏ ଯୁଗରେ ବିରଳ । ତୁ ମୋତେ ସାଙ୍ଗରେ ନେଇ ପାରିଲେ ମୁଁ ତୋର ରାଜ୍ୟରେ ମନ ଆନନ୍ଦରେ ରହି ପାରିବ । ଏ ରାଜ୍ୟରେ କେବଳ ପଦ୍ମାଙ୍କୁ ଗୁଡ଼ିଦେଲେ ମୋର ପ୍ରକୃତ ପୂଜାସ୍ୱ କେହି ନାହାନ୍ତି ।" ଗୋବିନ୍ଦ କହିଲେ- ତୁମେ ଏ ରାଜପୁରର ମୋହ ଗୁଡ଼ି ପାରିଲେ ସିନା ମୋ ସାଙ୍ଗରେ ଯିବ ମା" !! କନକ ଦୁର୍ଗା କହିଲେ, ମୁଁ ତୋର ଭକ୍ତିରେ ବାଧ୍ୟ ହୋଇ ତୋର ସାଙ୍ଗରେ ଯିବି; କିନ୍ତୁ ତା' ପୂର୍ବରୁ ପଦ୍ମାଙ୍କୁ ଗଜପତି ସାଙ୍ଗରେ ଛନ୍ଦି ଦେଇଯିବି—ଏତକ କହି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । ଏହି କନକ ଦୁର୍ଗା ଦକ୍ଷଯଜ୍ଞ ପରେ ସତୀଂକ କଟି ଦେଶରୁ ଛୁଟିପଡ଼ି କାଞ୍ଚିର କନକ ଦୁର୍ଗା ରୂପେ ପୂଜିତା । ଶାଳୁଂକ ପିତା, ପିତାମହ, ପ୍ରପିତାମହମାନେ ଠାକୁରାଣୀଙ୍କୁ ଭକ୍ତିରେ ବାଧ୍ୟ ପୂଜା କରୁଥିଲେ; କିନ୍ତୁ ଶାଳୁ ଗଣେଶଂକ ଭକ୍ତ ଥିବାରୁ ତାଂକର ପୂଜାରେ ବ୍ୟାହତ ହୋଇଥିଲା ।

× × ×

ପରଦିନ ସକାଳୁ ଗୋବିନ୍ଦ ଭଞ୍ଜ ଘୋଡ଼ା ପିଠିରେ ସବାର ହୋଇ ଶ୍ରୀକ୍ଷେତ୍ରକୁ ଗଲେ । ଶ୍ରୀକ୍ଷେତ୍ରରେ ଗଜପତିଙ୍କୁ ଦେବୀଙ୍କର ନିର୍ଦ୍ଦେଶ ବିଷୟ ବର୍ଣ୍ଣନା

କଶପାର ସେହ୍ ଚକାଡୋଳା କାଳଆଙ୍କର ପ୍ରେମରେ ବୃକ୍ତ ହେଲେ । କରୁଦନ ପରେ ସେହ୍ କାଳିଆର ଦୟା ହେଲ । ସେ ଏକ ସମୟରେ ଗଜପତଙ୍କୁ, ଗୋବନ୍ଦଙ୍କୁ ଓ ପଦ୍ମାଙ୍କୁ ସ୍ୱପ୍ନରେ ଦେଖା ଦେଇ ଜନକ କାଞ୍ଚି ଅଭଯାନ କରବାକୁ ନର୍ଦ୍ଦେଶ ଦେଲେ । ଏହ୍ କାଞ୍ଚି ଅଭଯାନକୁ ମୁଖ୍ୟ କର ସ୍ୱର୍ଗୀୟ କବ ଡ. କାଳୀଚରଣ ପଟ୍ଟନାୟକ ମାଣିକ ଗଉଡୁଣୀ ଆଖ୍ୟାନ ଓ ପଦ୍ମାଙ୍କ ସହତ ପୁରୁଷୋତ୍ତମଙ୍କ ବବାହ ବଷୟରେ ସମସ୍ତଙ୍କ ମନ ମଧ୍ୟରେ ପ୍ରେମାନ୍ଦ ଜଗାଇ ପାରଛନ୍ତ । ସେ ବଷୟରେ ମୁଁ ଅଯଥା କଲମ ପାଠକ ପାଠିକାମାନଙ୍କର ବହୁମୂଲ୍ୟ ସମୟ ନଷ୍ଟ କରବାକୁ ଚାହୁଁନାହିଁ । କେବଳ ପରେଷରେ କନକ ଦୁର୍ଗାଂକ ତଥା ତାରଣୀଂକ ବଷୟରେ ଆଲୋକପାତ କରୁଛୁ ।

ଦ୍ୱିତୀୟ ଥର ଯୁଦ୍ଧରେ ଶ୍ରୀ ଜଗନ୍ନାଥ ଓ ବଳଦେବଂକ ସାନିଧ୍ୟ ଲାଭକର ଗୋବନ୍ଦ ଭଞ୍ଜ ଶାଳ୍ୱଙ୍କୁ ବନ୍ଦୀ କଲେ । ଗଜପତଂକ ଆଦେଶରେ ଶାଳ୍ୱ ନରସିଂହଙ୍କ ସହ ତାଂକର ଉପାସ୍ୟ ଗଣପତଙ୍କୁ ନେଇ ଗୋବନ୍ଦ ପୁରୀ ଗଲେ । ମାଙ୍କ ଆଦେଶରେ ପଦ୍ମାଙ୍କୁ ମଧ୍ୟ ସାଙ୍ଗରେ ନେବାକୁ ଗୋବନ୍ଦ ଭୁଲଯାଇ ନ ଥିଲେ । ଶାଳ୍ୱ ନରସିଂହଙ୍କର ଉକ୍ତି ' ଗଜପତ ରଥଯାତ୍ରାରେ ଚଣ୍ଡାଳ କାମ କରେ, ଜାଣିଶୁଣି କାଞ୍ଚି ରାଜକେମାଙ୍କୁ ମୁଁ ଗୋଟେ ଚଣ୍ଡାଳ ହାତରେ ଦେବ-ନାହିଁ ।'' ଏହ୍ ବାକ୍ୟବାଣରେ ଗଜପତ ପଦ୍ମାବରଣ ବାସନାକୁ ଅପୂର୍ଣ୍ଣ ରଖି ଶ୍ରୀକ୍ଷେତ୍ର ଧାମକୁ ଫେର ଯାଇଥିଲେ । ଶ୍ରୀକ୍ଷେତ୍ରରେ ପଦ୍ମାବତୀ, ମନ୍ତ୍ରୀ ଓ ଗୋବନ୍ଦଙ୍କ ତତ୍ତ୍ୱାବଧାନରେ ଗୋଟିଏ ବର୍ଷ ରହେଲେ । ଭକ୍ତ ଗୋବନ୍ଦ ଶ୍ରୀକ୍ଷେତ୍ରରେ ଚକାଡୋଳାଙ୍କ ଦର୍ଶନରେ ନଜକୁ ହଜାଇ ଦେଇଥିଲେ । ଶାଳ୍ୱ ବନ୍ଦୀ ହୋଇ ଗଜପତଙ୍କ ବନ୍ଦୀଶାଳା ମଣ୍ଡନ କରୁଥିଲେ । ଗଜପତ ସଙ୍ଗରେ କାଞ୍ଚିରୁ ଆଣିଥିବା ଗଣେଶ ମୂର୍ତ୍ତିକୁ ଶ୍ରୀକ୍ଷେତ୍ରର ପଶ୍ଚିମ ଦୁଆରେ ଫିଙ୍ଗି ଦେଇଥିଲେ—(ଗଣପତ ଅଦ୍ୟାବଧି ଶ୍ରୀକ୍ଷେତ୍ରର ପଶ୍ଚିମ ଦୁଆର ମଣ୍ଡନ କରୁଛନ୍ତି) ।

ଦନ ତ କାହାରକୁ ଅପେକ୍ଷା କରେନାହିଁ । ଗୋଟିଏ ବର୍ଷ ଗୁଡୁଁ ଗୁଡୁଁ ବତଗଲା । କନକ ଦୁର୍ଗା ଗୋବନ୍ଦଙ୍କୁ ସ୍ୱପ୍ନରେ ପଦ୍ମାଙ୍କ ବଷୟ ସୂଚାଇଦେଲେ । ଠାକୁରଙ୍କ ରଥଯାତ୍ରା ଆରମ୍ଭ ହେଲ । ଉନ ଠାକୁର ପହଣ୍ଡି ବଜେ କର ରଥ ମଣ୍ଡନ କଲେ । ପୁରୀ ଗଜପତ ସୁନା ପହଁରା ଧର ଶ୍ରୀ ଜଗନ୍ନାଥଙ୍କ ଆଗରେ ଛେରା ପହଁରା କଲେ । ଅଧିଷ୍ଠାତ୍ରୀ ଦେବୀଙ୍କର ମାୟାରେ ଗୋବନ୍ଦ ଜଗନ୍ନାଥଙ୍କୁ ଭୁଲଯାଇ ମାଆଙ୍କର ଇଙ୍ଗିତକୁ ମନେ ପକାଇ ମହାମନ୍ତ୍ରୀଙ୍କ ସଙ୍ଗେ ପରାମର୍ଶ କଲେ । ଶାଳ୍ୱଙ୍କର ଏକମାତ୍ର କନ୍ୟା ପଦ୍ମାଇଙ୍ଗ ରଥ ଉପରେ ଶ୍ରୀଜଗନ୍ନାଥଙ୍କର ଦର୍ଶନ

କରିବାକୁ ଆସିଥିଲେ । ବୁଦ୍ଧିମାନ ଗୋବିନ୍ଦ ଗଜପତିଙ୍କ ସେବା ପଦ୍ଧତିରେ ବାଧା ସୃଷ୍ଟି କରି ଅତି ବିନମ୍ର ସ୍ୱରରେ—ବର୍ତ୍ତମାନ ଉତ୍କଳ ମହାରାଣୀ ପୁଣି ଗଜପତି ଚଣ୍ଡାଳ କାର୍ଯ୍ୟରେ ନିଯୁକ୍ତ । ସ୍ୱୟଂ ଗଜପତିଙ୍କ ଭାଷାରେ 'ପଦ୍ମାକୁ ଚଣ୍ଡାଳ ହାତରେ ଅର୍ପଣ କରିବା ଉଚିତ୍' ଏ ଉକ୍ତିର ଯଥାର୍ଥତା ଉପଲବ୍ଧି କରି ପଦ୍ମାଙ୍କୁ ଗ୍ରହଣ କରିବାକୁ ଗୋବିନ୍ଦ ଗଜପତିଙ୍କୁ ଅନୁରୋଧ କଲେ । ମହାମନ୍ତ୍ରୀ ମଧ୍ୟ ସ୍ୱାଗତ ଜଣାଇଲେ । ବଡ଼ପଣ୍ଡା ଉଚ୍ଚ କଣ୍ଠରେ 'ଜୟ ଜଗନ୍ନାଥଙ୍କର ଜୟ' ଓ 'ଜୟ ଉତ୍କଳ ମହାରାଣୀଙ୍କର ଜୟ' ସ୍ୱରରେ ବଡ଼ଦାଣ୍ଡ ମୁଖରିତ କଲେ । ଗୋବିନ୍ଦ ପଦ୍ମାବତୀଙ୍କୁ ଗଜପତିଙ୍କ କରରେ ଅର୍ପଣ କଲେ । ଶଙ୍ଖ ହୁଳହୁଳିରେ ଗଗନ ପବନ ମୁଖରିତ ହେଲା । ଶ୍ରୀ ଜଗନ୍ନାଥଙ୍କ ମସ୍ତକରୁ ଫୁଲ ବି ପଡ଼ିଗଲା । ଶୂନ୍ୟରୁ ମଧ୍ୟ ପୁଷ୍ପବୃଷ୍ଟି ହେଲା । ଶାଳ୍ୱ ନରସିଂହ ବନ୍ଦୀଶାଳାରୁ ମୁକ୍ତ ହୋଇ ରଥରେ ଗଜପତି ଓ ପଦ୍ମାଙ୍କୁ ତୋଳନେଇ ଶ୍ରୀ ଜଗନ୍ନାଥଙ୍କର ଆଶୀର୍ବାଦ ଗ୍ରହଣ କଲେ । ଗୋବିନ୍ଦ ଗଜପତିଙ୍କର ପ୍ରୀତିଭାଜନ ହେଲେ । କିଛୁଦିନ ଶ୍ରୀକ୍ଷେତ୍ରରେ ରହିଣି ପରେ ଗୋବିନ୍ଦ, ଶାଳ୍ୱ ନରସିଂହଙ୍କ ସଙ୍ଗରେ କାଞ୍ଚି ପ୍ରତ୍ୟାବର୍ତ୍ତନ କଲେ ।

ଗୋବିନ୍ଦଙ୍କ କାଞ୍ଚି ରହଣି ମଧ୍ୟରେ କନକ ଦୁର୍ଗାଙ୍କୁ ଭକ୍ତିରେ ଆପ୍ୟାୟିତ କରିପାରିଥିଲେ । କନକ ଦୁର୍ଗାଙ୍କ ଇଚ୍ଛାରେ ଗୋବିନ୍ଦ ତାଙ୍କ ସାଙ୍ଗରେ କନକ ଦୁର୍ଗାଙ୍କୁ କାଞ୍ଚିରୁ ନେଇ ବାହାରିବାବେଳେ ଶାଳ୍ୱ ଗୋବିନ୍ଦଙ୍କର ପଥରୋଧ କଲେ । ଶାଳ୍ୱ ମନ୍ଦିର ଦ୍ୱାରରେ କାନ୍ଦି କାନ୍ଦି ଗଡ଼ିଲେ । ତଥାପି ଠାକୁରାଣୀ ତାଙ୍କ କଥାରେ ଅଟଳ ଓ ଅଚଳ ରହିଲେ । ପରିଶେଷରେ କାଞ୍ଚି ରାଜାଙ୍କର କରୁଣ ନିବେଦନରେ କନକ ଦୁର୍ଗା ତାଙ୍କର ପ୍ରତିମୂର୍ତ୍ତି ନିଜ ଅଙ୍ଗରୁ ବାହାର କରି ଶାଳ୍ୱ ନରସିଂହଙ୍କ ପାଖରେ ଛାଡ଼ି ଗୋବିନ୍ଦଙ୍କ ସହିତ ତାରିଣୀ ବେଶରେ ସହଗାମିନୀ ହେଲେ । ଗଲାବେଳେ ଶାଳ୍ୱଙ୍କୁ କହିଲେ, "ଦେଖ୍ ରାଜା ! ତାରଙ୍କର ଉପଯୁକ୍ତ ପୂଜା ନ କରି ପାରିଲେ ମୁଁ ବି ତୁମ ପାଖରେ ରହି ପାରିବିନି ।" ତୁମର ଶେଷ ସମୟ ବହୁ ଦୁଃଖରେ କଟିବ । ଗୋବିନ୍ଦ ଶ୍ରୀକ୍ଷେତ୍ରକୁ ଫେରିଗଲେ ।

× × ×

ଗୋବିନ୍ଦ ଶ୍ରୀ ଜଗନ୍ନାଥ ଓ ରାଜାଙ୍କଠାରୁ ମେଲାଣି ନେଇ ଜଗନ୍ନାଥ, ସୁଭଦ୍ରା ଓ ରଘୁନାଥଙ୍କୁ ଯୌତୁକ ସ୍ୱରୂପ ନେଇ କେନ୍ଦୁଝର ଅଭିମୁଖେ ଯାତ୍ରା କଲେ । ପୁରସ୍କାର ସ୍ୱରୂପ ଆଠଗଡ଼ (ଆନନ୍ଦପୁର) ସନନ୍ଦ ଲାଭକରି ଚାଲପଥରେ ଦୀର୍ଘଦିନ ଅତିକ୍ରମ କରି ଗୋବିନ୍ଦ ଶ୍ରୀ ରଘୁନାଥଙ୍କୁ ବୀର ଗୋବିନ୍ଦପୁରରେ ସ୍ଥାପନ କଲେ । ଶ୍ରୀ ରଘୁନାଥ ଜୀଉଙ୍କର ପୂଜା ଲାଗି ବୀର ଗୋବିନ୍ଦପୁର ଶାସନ ବସାଇ

ପୂଜା ପାଇଁ ବ୍ରାହ୍ମଣ ନିୟୋଜିତ କଲେ । ଯାହା ତାମ୍ର ଫଳକରେ ପ୍ରମାଣିତ । ସେହି ରଘୁନାଥ ଅଦ୍ୟାବଧି ପୂଣ୍ୟତୋୟା ବୈତରଣୀ ନଦୀକୂଳ ସ୍ଥିତ ଗୋବିନ୍ଦପୁର ଶାସନ ଉପକଣ୍ଠରେ ଲୀଳାଖେଳା କରୁଛନ୍ତି । ବାସ୍ତବିକ୍ ସେହି ଗୋବିନ୍ଦପୁର ଶାସନ ମଧ୍ୟରେ ରଘୁନାଥଜୀଉଙ୍କ ମନ୍ଦିର ଗୋଟିଏ ଦର୍ଶନୀୟ ଦେବାଳୟ । ଶ୍ରୀରାମଚନ୍ଦ୍ର-ଙ୍କର ବଡ଼ ଭକ୍ତ ହନୁମାନ ସଦାସର୍ବଦା ତାଙ୍କ ପାଖରେ ପୂଜାପାଉଛନ୍ତି । ତାରଣୀ ଗୋବିନ୍ଦଙ୍କ ପଛେ ପଛେ ଗହଣରେ ଆସୁଥାନ୍ତି । ଧାନ୍ଦୁ ଦୁଇ ଦିନ ବାଟ ଚାଲିସାରେ ଦରଖୋଲାଠାରୁ ଗୋବିନ୍ଦ ଭକ୍ତ ଘଞ୍ଚଜଙ୍ଗଲ ମଧ୍ୟରେ ପଶିଲେ । ଦୁର୍ଗମ ଘୋଡ଼ା ଜଙ୍ଗଲ ଭିତରେ ଚାଲିବାକୁ ଭୟକଲେ । ପଶୁମାନଙ୍କ 'ମଡ଼ା' ଗନ୍ଧରେ ଲକ୍ଷ୍ୟକରି ପାଇକମାନଙ୍କ ପଛେ ପଛେ ଭକ୍ତ ଗୋବିନ୍ଦ ଚାଲୁଥିଲେ । ସର୍ବଶେଷରେ ତାରଣୀ ତାଙ୍କୁ ଅନୁସରଣ କରି ଯଟି ଭିତରେ ରହି ମଧୁର ନୂପୁର ଶବ୍ଦ କରି କରି ଚାଲୁଥିଲେ । ସୌଭାଗ୍ୟବଶତଃ ଗୋବିନ୍ଦ ସେ ମର୍ଯ୍ୟନ୍ତ ଠାକୁରାଣୀଙ୍କର ନୂପୁର ଧ୍ୱନି ଶୁଣିପାରୁ ପାଉଥିଲେ । ଜଙ୍ଗଲ ଯେତିକି ନିବିଡ଼ ହୋଇ ଆସୁଥାଏ, ଠାକୁରାଣୀଙ୍କ ନୂପୁରର ସ୍ୱନ ସେତିକି ଅଧିକ ଗୋବିନ୍ଦ ଶୁଣି ପାରୁଥାନ୍ତି; କିନ୍ତୁ ଦରଖୋଲାଠାରୁ କିଛିଦୂର ପଥ ଅତିକ୍ରମ କରିବାପରେ ହଠାତ୍ ଗୋଟିଏ ବାଘ ଗର୍ଜନରେ ଗୋବିନ୍ଦ ଚମକିପଡ଼ି ବୁଲିଁ ପଛକୁ ଅନାଇଦେଲେ । ସେ ବୁଲିବା ମଧ୍ୟରେ ତାରଣୀଙ୍କର ଆନନ୍ଦ ବିହ୍ୱଳ ମୂର୍ତ୍ତି ସେ ଦେଖି ପାରିଲେ । ମା'ଙ୍କର ସେ କମନୀୟ କାନ୍ତି ଦେଖି ହାତରୁ ଓହ୍ଲାଇ ପଡ଼ି ଗୋବିନ୍ଦ ତଳେ ଅଶ୍ରୁମାଡ଼ି ବସିପଡ଼ି ପଗ୍ଭରିଲେ, ମା' ଭୁଲରେ ଆଉ ଭୟରେ ପଛକୁ ବୁଲିଦେଲି—ସେଥିପାଇଁ ମୋତେ କ'ଣ କ୍ଷମା ଦେବୁନାହିଁ ମା' ?

ତାରଣୀ ଆନନ୍ଦ ବିହ୍ୱଳ ହୋଇ ଗୋବିନ୍ଦଙ୍କୁ କହିଲେ—''ଭକ୍ତ ସବୁ-ବେଳେ ମା'ର ପୁଅ ବାବା ! ସେ ମା'ର ସ୍ନେହ ସବୁବେଳେ ପାଇ ପାରୁଥିବ । ଏହି ସ୍ଥାନର କମନୀୟତାରେ ମୋର ହୃଦୟ ଉଲ୍ଲସିତ ହୋଇ ଉଠୁଛି ବାବା ! ଆହା, କି କମନୀୟ ଏହି ଜଙ୍ଗଲର ଦୃଶ୍ୟ । ନାନା ଜାତି ଫୁଲର ସୁବାସରେ ନାକ ଫାଟି ପଡ଼ୁଛି । ଏହି ସ୍ଥାନରେ ମୋର ପୀଠ ସ୍ଥାପନା କଲେ ମୁଁ ଆନନ୍ଦରେ ରହିବି ଗୋବିନ୍ଦ । ତା'ଛଡ଼ା ମୁଁ ଏହିଠାରେ ରହିଲେ ଶ୍ୟାମକୁଣ୍ଡର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ଜାଜପୁରେଶ୍ୱରୀଙ୍କୁ ଦେଖିବାର ସୁଯୋଗ ପାଇପାରିବି ଏବଂ ବୈତରଣୀ କୂଳରେ ଶଙ୍କରଙ୍କ ଦର୍ଶନରୁ ବଞ୍ଚିତ ହେବିନାହିଁ । ଏଥିରେ ତୋର ଅମତ ହେବାରେ କିଛି ଅଛି କି ?'' ଗୋବିନ୍ଦ ଭକ୍ତି ଗଦ୍‌ଗଦ୍ ସ୍ୱରରେ କହିଲେ—ଅନୁକମ୍ପାମୟୀ ମା'ଙ୍କ ଇଚ୍ଛାରେ ଗୋବିନ୍ଦର ମତ—ହେଲେ କେନ୍ଦୁଝର

ଏଠାରୁ ଆହୁରି ୧୭।୧୫ କୋଶ ଦୂର ହେବ ମା' । ଏଠି ମା'ଙ୍କର ପୀଠ ହେଲେ ଗୋବନ୍ଦ ଦର୍ଶନରୁ ବଞ୍ଚିତ ହେବ ଏବଂ...

ତାରଣୀ—ନା ମୋ ପକ୍ଷରେ ଦୂର ନୁହଁ ବାବା ! ତୋର ଭକ୍ତିରେ ତାରଣୀ ବାନ୍ଧ ହୋଇ ସବୁ ସମୟରେ ତୋ ପାଖେ ପାଖେ ଥିବ ଏବଂ ତୋତେ ଦର୍ଶନ ଦେଉଥିବ ।

ଗୋବନ୍ଦ—ଏଠି ତୋର ପୂଜା କିଏ କରିବ ମା' ?

ତାରଣୀ—"ବାବା—ମୁଁ ଦେଉଳ ଭିତରେ ଅନ୍ଧାର ଘରେ ନ ରହି ଜଙ୍ଗଲର ରମଣୀୟ ଦୃଶ୍ୟ ଉପଭୋଗ କରିବା ସଙ୍ଗେ ସଙ୍ଗେ ବୈତରଣୀ କୂଳରେ ପ୍ରତିଷ୍ଠିତ ଶଙ୍କରଙ୍କର ଦର୍ଶନ ପାଇବ ଏବଂ ଗୋନାସିକାର ପାଦଦେଶରେ ଥିବା ବ୍ରହ୍ମେଶ୍ୱରଙ୍କର ପାଦପୂଜା କରି ପାରିବ । ତୁ ଅନ୍ୟ କିଛି ନ ଭାବି ମୋର ପୀଠ ଏହିଠାରେ ସ୍ଥାପନ କର !"

ଗୋବନ୍ଦ—ତୋର ପୂଜା ତା'ହେଲେ କିଏ କରିବ ମା' ?

ତାରଣୀ—ଏହି ବନ କନ୍ଧ ହିଁ ମୋର ପୂଜକ ହେବ ଏବଂ ମୋତେ ତା'ର ଅନ୍ନର ଦେଇ ସେ ପୂଜା ପାଇବ । ତା'ର ଭବିଷ୍ୟତ ଉତ୍ତରାଧିକାରୀମାନେ ମୋର ମାଠ ଠିକ୍ ରୂପେ ଚଳାଇ ପାରିବେ । ମୋର ଅତି ଆଦରର ଗୋଟିଏ ନିସ୍ତାରା—ଏଠାରୁ ଆସିବ ବାବା !

ଗୋବନ୍ଦ—ମା' ! (ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ)

ଠିକ ସେତିକବେଳେ ରାଜା ବିଲୋଚନ ଭକ୍ତଙ୍କର ଦେହଲାଗି ଚାକର ଗୋଲୁଲ ଧଇଁସଇଁ ହୋଇ ସେଇଠାରେ ପହଞ୍ଚିଲା । ତା' ଆଗେ ଆଗେ ରାଜା ସର୍ଦ୍ଦାର ଝିଅ ମଞ୍ଜରୀ ଓ ଗୋପାଲ୍ ନାମରେ ଜଣେ ଭୂୟାଁ ଧଇଁସଇଁ ହୋଇ ପଡ଼ିଗଲା ।

ମଞ୍ଜରୀ—(ହଠାତ୍ ତାରଣୀଙ୍କୁ ଦେଖି) ତୁଇ * 'ପତର ସରେଇ' ନା ? ମା' ? ହଁ-ହ ତୁଇ ସତରେ ପତର ସରେଇ । ଏତେଦିନ ପରେ କେଉଁଥିର ତୋର ମନେ ପଡ଼ିଲା ମା' ! (କହି ଚଳେ କମ୍ପିତ ହୋଇ ପଡ଼ିଗଲା)—(ଗୋପାଲ୍ ତା' ପଛେ ପଛେ ମଧ୍ୟ ପଡ଼ିଗଲା) ।

ତାରଣୀ—ଉଠ ! ମା' ମଞ୍ଜରୀ ଉଠ । ମୁଁ ତୋତେ ଭୁଲି ପାରିନି ନାହିଁ ମା'—ତୋର ସାଙ୍ଗକୁ ବ ମୋର ସାଙ୍ଗରେ ଆଣିଛୁ । ତାକୁ ନେଇ ତୁ ଏଠି ମୋର ପୂଜା କର—

---

*ପତର ସରେଇ—ପତର ଶବରୁଣୀରୁ ଅପଭ୍ରଂଶ (ସ୍ଥାନୀୟ ବନ ଦେବୀ)

ମଞ୍ଜରୀ—ମୋର ପଛେ ପଛେ ଏଠା ଗୋଡ଼ାଉଛୁ ଯେ ?

ତାରଣୀ—(ହସି ହସି କହିଲେ) ଗୋପାଳ୍ ?? ତା'ର ପରୀଭବ ସେ ପାଇ ସାରଲାଣି ମା' । ତୁ ଏବେ ଉଠ । ଉଠ ! ଉଠ !

ଗୋକୁଳ ଏମାନଙ୍କର ଅବସ୍ଥା ଦେଖି ଅବାକ୍ ହୋଇ କଚୁକ୍ଷଣ ପାଇଁ ସ୍ତବ୍ଧ ରହିଲା । ଆଖି ଫେରାଇ ଗୋବିନ୍ଦ ଭଞ୍ଜଙ୍କୁ ଦେଖି କାନ୍ଦି କାନ୍ଦି କହିଲା— "ରାଜକୁମାର—ଆପଣ ଏଠି ! ରାଜା ଡେଙ୍ଗେଶ ଆଜକୁ ସାତ ଦିନ ହେଲା ମରି ପଡ଼ିଛନ୍ତି । ରାଜାଙ୍କ ଖବର କ'ଣ ପାଇ ନାହାନ୍ତି ? ରାଜା ତ୍ରିଲୋଚନ ଭଞ୍ଜ ଆଉ ନାହାନ୍ତି ମଣିମା !"

ଗୋବିନ୍ଦ—ଏହା କ'ଣ ସତ ଗୋକୁଳ ?

ତାରଣୀ—ହଁ ବାବା ! ମୋର ଆବିର୍ଭାବ ଆଗରୁ ସେ ସ୍ବର୍ଗ ଯାଇଛନ୍ତି । ତୁ ବର୍ତ୍ତମାନ କେନ୍ଦୁଝର ସିଂହାସନରେ ବସି ମୋର ଦର୍ଶନ କେନ୍ଦୁଝରରେ ହିଁ ପ୍ରତିଦିନ ବାଳିକା ସ୍ଥାନ ପରେ ପୂଜା ପୀଠରେ ପାଇବୁ ।

ଗୋବିନ୍ଦ ଅତି ବ୍ୟଗ୍ର ହୋଇ କାନ୍ଦି କାନ୍ଦି ପୀଠ ସ୍ଥାପନା ପାଇଁ ପ୍ରଜା-ମାନଙ୍କୁ ନିର୍ଦ୍ଦେଶ ଦେଲେ । ପୀଠ ସ୍ଥାପନା ହେଲା । ବନ କନ୍ଧ ପୂଜା ଆରମ୍ଭ କଲା । ମା'ଙ୍କ ଆଦେଶରେ ପରଦିନ ଗୋବିନ୍ଦ କେନ୍ଦୁଝର ଅଭିମୁଖରେ ମନ ଦୁଃଖରେ କାନ୍ଦି କାନ୍ଦି ଫେରିଗଲେ । ସେହି ଦିନରୁ ମହାମାୟୀ ତାରଣୀ ରୂପରେ (ସେହି ଘଣ୍ଟିଗ୍ରାମ) ଏ ଯୁଗର ଘଟଗାଁ ଗ୍ରାମରେ ପୂଜା ପାଇ ଆସୁଛନ୍ତି ।

× × ×

ଏକ ଦୈନନ୍ଦିନ କାର୍ଯ୍ୟାବଳୀ ମଧ୍ୟରେ ରାଜା ଗୋବିନ୍ଦ ଭଞ୍ଜ ତାରଣୀଙ୍କର ଦର୍ଶନ କରି ଘଣ୍ଟିଗ୍ରାମରୁ କେନ୍ଦୁଝରକୁ ଫେରୁଥିଲେ । ବହୁ ଅସୁବିଧାର ସମ୍ମୁଖୀନ ହୋଇ ତାରଣୀଙ୍କର ଏକ ପ୍ରତିମୂର୍ତ୍ତି ଉଆସ ଭିତରେ ରଖି ପୂଜିବାକୁ ମା'ଙ୍କ ନିକଟରେ ଅଳି କଲେ । ମା'ଙ୍କର ନିର୍ଦ୍ଦେଶରେ ତାରଣୀଙ୍କର ପ୍ରତିମୂର୍ତ୍ତି ଉଆସରେ ସ୍ଥାପନ କରାଗଲା । ସେହି ଦିନଠାରୁ ଏଯାଏ ତାରଣୀଙ୍କର ପ୍ରତିମୂର୍ତ୍ତି କେନ୍ଦୁଝର ଉଆସରେ ମଧ୍ୟ ପୂଜା ହେଉଛୁ । ସ୍ବର୍ଗୀୟ ଗୋବିନ୍ଦ ଭଞ୍ଜ ଜଣେ ଭକ୍ତିମାର୍ଗର ରାଜା ବୋଲି ତାଙ୍କର ଲିଖିତ ଚରଣ ସୁଧାନିଧି କାବ୍ୟ ପରିଚୟ ଦିଏ । ସେ ସିଦ୍ଧ କାଳୀଙ୍କୁ କେନ୍ଦୁଝର ହାଟ ପଡ଼ିଆର ଚଉବଚ୍ଛା ପାଖରେ ମଧ୍ୟ ସ୍ଥାପନ କରିଥିଲେ ବୋଲି ଜନମୁଖରେ ପ୍ରଚଳିତ ।

× × ×

ସେହି ମା' ତାରିଣୀ ବର୍ତ୍ତ· ଭୁବନେଶ୍ୱର ରାସ୍ତାରେ ଘଟଗାଁ ଗ୍ରାମର ଶେଷ ଭାଗରେ ରାସ୍ତାକଡ଼ରେ ଅଦ୍ୟାବଧି ପୂଜିତା । କେତେ ଯେ କୋଟି ମୁଖରେ ପ୍ରଶଂସିତା । ତାଙ୍କର ପ୍ରକୃତ ସ୍ୱରୂପର ଅନେକ ନମୁନା ଅଛି । ଏ ଯାବତ୍ ମଧ୍ୟ ଗୋଟିଏ ବ୍ୟାଘ୍ର ନିଃଶବ୍ଦ ରଜନୀର ନିଃଶବ୍ଦତା ଭେଦକରି ତାଙ୍କର ପୀଠସ୍ଥଳୀ ମଣ୍ଡପ ତଳେ ନିଜ ବାସସ୍ଥାନକୁ ଅର୍ଦ୍ଧରାତ୍ରିରେ ଫେରିଯାଏ । ଯୁଗ ଯୁଗ ଧରି ଅନେକ ଭକ୍ତ ତାଂକର ଅନୁକମ୍ପା, ଆଶୀର୍ବାଦ ଲାଭକରି ଅଭିଷ୍ଟ ସାଧନ କରିପାରୁଛନ୍ତି । ସେହି ବନ ଜଙ୍ଗଲର ବଂଶଧରମାନେ ଏଯାଏ ଠାକୁରାଣୀଙ୍କୁ ପୂଜା କରୁଛନ୍ତି । ସେହି ମହା ମହିମାମୟୀ ମା' ତାରିଣୀଙ୍କର ଦୟା ଓ ଅନୁକମ୍ପାରେ ଲେଖକ ତାଂକର ଜୀବନବୃତ୍ତାନ୍ତ ଉପରେ ଗୋଟିଏ ନୃତ୍ୟନାଟିକା ୧୯୭୪ ମସିହାରେ ଓ ସମ୍ପୂର୍ଣ୍ଣ ନାଟକ ୧୯୮୦ ମସିହାରେ କେନ୍ଦୁଝର ଉପକଣ୍ଠରେ ମଞ୍ଚସ୍ଥ କରାଇଥିବାର ସୁଯୋଗ ପାଇ ନିଜକୁ ଧନ୍ୟ ମନେକରେ । ତାଂକର ଭକ୍ତ ଶ୍ରୀ ପରମାନନ୍ଦ ମିଶ୍ର ଓ.ଏ.ଏସ୍, ଶ୍ରୀ ଶ୍ୟାମସେନ ରାଉତ ତାଂକର ଘଟଗାରେ ପୁସ୍ତିକା ଉପରେ ତାରିଣୀ ମାହାତ୍ମ୍ୟ ଲେଖି ଜନପ୍ରିୟ ହୋଇ ପାରିଛନ୍ତି ।

ସେହି ଜଗତ୍ ଜନନୀଙ୍କୁ ମୁଖ୍ୟକରି ପଞ୍ଚୁପଲ୍ଲୀସ୍ଥ ନାଟ୍ୟକାର ଶ୍ରୀ ବେଣୁଧର ପଟ୍ଟନାୟକ ମଧ୍ୟ ମା' ତାରିଣୀ ନାଟକ ଲେଖି କେନ୍ଦୁଝର ଜିଲ୍ଲାର ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ କରାଇବାକୁ ସକ୍ଷମ ହୋଇ ପାରିଛନ୍ତି । କେହି ଭକ୍ତ ବା ଭକ୍ତା ଅନ୍ତରର ସହିତ ସେହି ଘଣ୍ଟିଗ୍ରାମସ୍ଥିତ ମା' ତାରିଣୀଙ୍କୁ ଉପାସନା ବା ପୂଜାକରି ପାରିଲେ ତାଂକର ସାନିଧ୍ୟ ସଙ୍ଗେ ସଙ୍ଗେ ଆଶୀର୍ବାଦରୁ ମଧ୍ୟ ବଞ୍ଚିତ ହୁଏନାହିଁ, ହେଉନାହିଁ ଲମ୍ବା ହେବନାହିଁ । ସେହି ପୀଠ ଘଟଗାଁ ସବୁଦିନ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିଛି ଓ ରହିଥିବ ।

× × ×

ସେହି ମା' ତାରିଣୀଂକ ଉପରେ କେତୋଟି ଦୃଷ୍ଟାନ୍ତ—

୧—କିଛିଦିନ ତଳର କଥା କେହି ଜଣେ ଦୁର୍ବୃତ୍ତ ତାଂକର ତାରିଣୀ ବାକ୍ସ ଉଠାଇ ନେଇ ଯାଜପୁର (ଘର)କୁ ପଳାଇ ଯାଇଥିଲା; କିନ୍ତୁ ମା'ତାଂକର ପରୋକ୍ଷ ନିର୍ଯାତନା ସହି ନ ପାରି ସେ ସେହି ବାକ୍ସଟିକୁ ତିନି ଦିନ ମଧ୍ୟରେ ଫେରାଇ ଆଣି ଯଥା ସ୍ଥାନରେ ରଖି ଯାଇଥିଲା ।

୨—କେନ୍ଦୁଝର ରାଜ୍ୟ ରାଜାଙ୍କର ଗଡ଼ ଖସିପଡ଼ିବା ପୂର୍ବରୁ ତାରିଣୀ ମା' କେନ୍ଦୁଝର ଉଚ୍ଚ କର୍ମଚାରୀ ପ୍ରାଇଜ ସାହେବଙ୍କୁ ଦେଖାଦେଇ ଭାବୀ ବିପଦର ସୂଚନା

ଦେଇଥିଲେ । ସେ ଗୋଟାଏ ସ୍ୱତନ୍ତ୍ର କଥା । ଯେତେବେଳେ କେନ୍ଦୁଝରର ଦେଓ୍ୱାନ ପ୍ରାଇଜ ସାହେବ ଜଣେ (ରାମ (ହନୁ) ଗୋଲାମ) ଡ୍ରାଇଭରକୁ ସାଙ୍ଗରେ ନେଇ ଆନନ୍ଦପୁର ଯିବା ବାଟରେ ତାରିଣୀ ଶାଳ ପରେ ପରେ ମହାବଳ ବାଘ ରାସ୍ତା ଅବରୋଧ କରି ଶୋଇଥିବା ଦେଖି ଗୁଳି ଚଳାଇ-ଥିଲେ । ପର ମୁହୂର୍ତ୍ତରେ ବାଘ ବଦଳରେ ଗୋଟିଏ ଷୋଡ଼ଶୀ ଦେଖି ସାହେବ ଚମକ ପଡ଼ି ଗାଡ଼ିରୁ ଓହ୍ଲାଇ କରି ଡ୍ରାଇଭର ରାମଗୋଲାମ ସଙ୍ଗରେ ଷୋଡ଼ଶୀ ରୂପଧାରୀ ମା' ତାରିଣୀଙ୍କଠାରୁ କେନ୍ଦୁଝରର ଭବିଷ୍ୟତ ବିପଦର ସୂଚନା ପାଇଥିଲେ ।

ତାଙ୍କର ଏହି ଉକ୍ତି ପରେ କେନ୍ଦୁଝର ଓଡ଼ିଶାରେ ମିଶିଗଲା । ପ୍ରଜାନୁ-ରଞ୍ଜନ ଭକ୍ତ ବଳଭଦ୍ର ଭଞ୍ଜ ତାଙ୍କର କର୍ମ ଶେଷକରି କେନ୍ଦୁଝରରୁ ବିଦାୟ ନେଇ ଚାଲିଗଲେ । ରାଜବଂଶର ଅଧୋପତନ ହେଲା । ଆଶ୍ଚର୍ଯ୍ୟର ବିଷୟ ଏବେ କିନ୍ତୁ ତାଙ୍କର ନିର୍ଦ୍ଦେଶରେ ହେଉ ବା ନ ହେଉ ଠାକୁରାଣୀଙ୍କ ପୀଠ ସ୍ଥିର ପାଖ ପକ୍କା ପାଚେରି କରାଯାଇ କେତେକ ସଦସ୍ୟ ଗୋଟିଏ କମିଟି ଗଢ଼ି ତାଙ୍କର ନିତ୍ୟ ନୈମିତ୍ତିକ ପୂଜା ଏବଂ ତାଙ୍କର ବାର୍ଷିକ ପୂଜା ପଦ୍ଧତି ସୁଚାରୁରୂପେ ପରିଚାଳନା କରି ଆସୁଥିଲେ । ସୁଖର ବିଷୟ ଓଡ଼ିଶା ସରକାରଙ୍କ Endowment Department ଏବେ ସେହି ଜଗନ୍ମାତାଙ୍କ ପରିଚାଳନା ଭାର ଗ୍ରହଣ କରିଛନ୍ତି । ମୋର ବିଶ୍ୱାସ ଓ ସେହି ଦୟାମୟୀ ମା'ଙ୍କ ନିକଟରେ ଜଣାଣ ସେ ଯୁଗ ଯୁଗ ଧରି ସେହି ଘଣ୍ଟିଗ୍ରାମ ମଣ୍ଡନ କରି ଭକ୍ତମାନଙ୍କୁ ଦର୍ଶନ ଦେଇ ଆଶୀର୍ବାଦ ଦେଉଥାନ୍ତୁ । ତାଙ୍କର ଆଶୀର୍ବାଦ ଓ ପ୍ରତ୍ୟାଦେଶରେ ଏ ଅକିଞ୍ଚନ ୧୯୭୪ରେ ତାଙ୍କର କେନ୍ଦୁ-ଝରରେ ଆବିର୍ଭାବ ଉପରେ ଏକ ଶ୍ରେଷ୍ଠ ନାଟିକା, ୧୯୮୦ ଓ ୧୯୮୧ରେ ତାଙ୍କ ଆବିର୍ଭାବ ଉପରେ ନାଟକ ଲେଖି କେନ୍ଦୁଝର ଟାଉନ ହଲ (ନଗର ଭବନ) ଆଟଓପର ବିଦ୍ୟାଳୟ ଓ କାଶୀପୁର ବିଦ୍ୟାଳୟ ରଙ୍ଗମଞ୍ଚରେ ମଞ୍ଚସ୍ଥ କରାଇ ପ୍ରୀତିଭାଜନ ହୋଇପାରିଛି; କିନ୍ତୁ ଦାରିଦ୍ର୍ୟତାର କଶାଘାତରେ ଉପେକ୍ଷିତ ହୋଇ ଲୋକଲୋଚନର ଗୋଚରକୁ ଆଣି ପାରିନାହିଁ । ତା'ର ଅନୁକମ୍ପା ଥିଲେ ଏହା ଦିନେନା ଦିନେ ଛପା ହୋଇ ଲୋକଲୋଚନକୁ ଆସି ପାରିବ । ସେହି ମା' ତାରିଣୀ ଏ ଯାବତ୍ ସେହି ଘଣ୍ଟିଗ୍ରାମ (ଘଟଗାଁ)ରେ ଷୋଡ଼ଶ ଉପଚାରରେ ପୂଜା ପାଉଛନ୍ତି । ଖାଲି ଓଡ଼ିଶା ନୁହେଁ ଅନ୍ୟାନ୍ୟ ଦେଶମାନଙ୍କରୁ ବହୁ ଭକ୍ତ ମାନସିକ କରି ନଡ଼ିଆ, ସିନ୍ଦୂର ପଠାଇ ସେମାନଙ୍କର ମନସ୍କାମନା ପୂର୍ଣ୍ଣ କରୁଛନ୍ତି । ପରି-ଶେଷରେ ସେହି କରୁଣାମୟୀଙ୍କର କରୁଣା କଣିକା ଭିକ୍ଷାକରି ରହିଲି ।

"

( ସୁଖର ବିଷୟ ବା ଦୁଃଖର ବିଷୟ ଐତିହାସିକ ବେତ୍ତାଙ୍କ ମତରେ କେନ୍ଦୁଝରରେ ଘଟମଙ୍ଗଳା ଅଧିଷ୍ଠାତ୍ରୀ ଦେବୀ ଘଣ୍ଟି ଗ୍ରାମରେ ପ୍ରତିଷ୍ଠିତା । କିନ୍ତୁ ଦୁଃଖର ବିଷୟ ଆମ ରାଜ୍ୟର ରାଜାଙ୍କ ସଂଗ୍ରହାଳୟରେ ସଂରକ୍ଷିତ ତାମ୍ରଲେଖା ତଥା ମୂଲ୍ୟବାନ ପୋଥି ଆମ ରାଜ୍ୟରେ ନ ଥିବାରୁ ଏହି ଠାକୁରାଣୀଙ୍କ ଆବିର୍ଭାବକୁ କିମ୍ବଦନ୍ତୀ ଛଡ଼ା ଆଉ କିଛି କୁହାଯାଇ ପାରେନାହିଁ ।)



# ଶ୍ରୀ ଶ୍ରୀ ବଳଦେବଜୀଉ

ପୁରାଣ କଥିତ ନୁହେଁ ଐତିହାସିକ ମତରେ କେନ୍ଦୁଝର ଦିନେ କୋହ୍ଲାର ରାଜ୍ୟରୂପେ ବିଦିତ ଥିଲା । କାଳର କରାଳ ଚକ୍ରରେ ଘୂରି ଘୂରି ଆଜି କେନ୍ଦୁଝର ରୂପେ କୋଟି ମୁଖରେ ମୁଖରିତ । ଜ୍ୟୋତି ଭଞ୍ଜ ସିଂହାସନାସୀନ ହେଲାବେଳେ ଏ ରାଜ୍ୟରେ ଭୂୟାମାନଙ୍କର କୃତିତ୍ୱ ସହସ୍ର ମୁଖରେ ପରିଚିତ ହେଉଥିଲା; କିନ୍ତୁ କେନ୍ଦୁଝରର ଅଷ୍ଟମ ରାଜା ସ୍ୱର୍ଗୀୟ ସନ୍ଥ ଭଞ୍ଜଙ୍କ ରାଜତ୍ୱ କାଳରେ ଏହା ବୌଦ୍ଧ-ପୀଠରୂପେ ବିଦିତ ହୋଇଥିଲା । ତାହାର ପ୍ରମାଣ ସ୍ୱରୂପ ସୀତାବିଞ୍ଜି, ଚମ୍ପୁଆର ଅସନପାଟ ଓ ଆନନ୍ଦପୁରର ବୁଢ଼ିଖିଆରେ ଗଚ୍ଛିତ ଶିଳାଲିପି ଏଯାଏ ବିଦ୍ୟମାନ ।

କେନ୍ଦୁଝରର ଏକ ତାମ୍ରଲିପିରୁ ଜଣାଯାଏ ଯେ କେନ୍ଦୁଝରର ରାଜା ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ଭଞ୍ଜ ବଳଦେବଙ୍କ ମନ୍ଦିର ନିର୍ମାଣ କରାଇ ବଳଦେବଙ୍କୁ ପ୍ରତିଷ୍ଠା କରାଇଥିଲେ । ସେ ଯୁଗରେ ଆନନ୍ଦପୁରସ୍ଥ ବଙ୍କୋ ଗ୍ରାମରେ ଜଣେ ସନ୍ଥଙ୍କର ଗୋଟିଏ ବଉଳା ରଙ୍ଗର ଗାଈ ଛୁଆଁରୁ କ୍ଷୀର ଦାନ କରିସାରି ବଳଦେବଙ୍କ ମସ୍ତକ ଦେଶରେ ନିଜର କ୍ଷୀର ଦାନ କରୁଥିଲା । ଅତି ଆଶ୍ଚର୍ଯ୍ୟର କଥା ଶୁଣିବାକୁ ମିଳେ ଯେ ଗାଈକୁ ତା'ର ମୁନିବ ଦୁହିଁସାରି ଚରିବାକୁ ଛାଡ଼ିଦିଏ; କିନ୍ତୁ ଗାଈ ନଈ ପାରହୋଇ ସିଧା ସେହି ହୁଙ୍କା ନିକଟକୁ (ଯେଉଁ ସ୍ଥାନରେ ହିଁ ବଳଦେବ ବିଜେ କରିଥିଲେ) ଯାଏ । ଗାଈ ହୁଙ୍କା ପାଖରେ ନିଜର ସ୍ତନ ଦେଖାଇ ଦିଏ, ଲୀଳା-ମୟଙ୍କ ବିଚିତ୍ର ଇଙ୍ଗିତରେ ଗାଈଠାରୁ କ୍ଷୀର ବୋହିଯାଏ । ଏହିପରି ଅନେକ ଦିନ ବିତିଗଲାପରେ ଗାଈର କ୍ଷୀର ଦାନ ଗ୍ରାମର କେହି ଜଣେ ଦେଖି ପାରିଲା । "ଏ ମଣିଷ ଜାତି ତ ସତ୍ୟବେଳେ ତିଳକୁ ତାଳକରି ଗଢ଼ି ଦିଅନ୍ତି ଅନେକ ଅକଥ-ନୀୟ ବସ୍ତୁ" । କୌଣସି ଏକ ଆଶ୍ଚର୍ଯ୍ୟକର ଜିନିଷ ବା ବସ୍ତୁ ଦେଖିଲେ ଅନ୍ୟ ମାନଙ୍କ ପାଖରେ ଗାଇ ବୁଲନ୍ତି । ଗୁପ୍ତ ବସ୍ତୁର ପ୍ରସାର ହୁଏ । ସେହିପରି ଭାବରେ ଏକଥା ବେଶୀଦିନ ଅଛପା ହୋଇ ରହି ପାରିଲା ନାହିଁ । ବଙ୍କୋଠାରୁ କେନ୍ଦୁଝର

ପ୍ରାୟ ୬୦ ମାଇଲ । ସେତେବେଳେ ଏହି କେନ୍ଦୁଝର ଘଞ୍ଚଜଙ୍ଗଲରେ ଭର୍ତ୍ତି ଥିଲା । ତଥାପି 'ଭୁଣ୍ଡ ବାଇଦ ସହସ୍ର କୋଣ' ଅନୁଯାୟୀ ଶ୍ରୀ ବଳଦେବ ଜୀଉଙ୍କ ସେ ଗ୍ରାମରେ ଅବସ୍ଥିତ ରାଜା ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ଭଞ୍ଜଙ୍କ ପାଖକୁ ଗଲା । ଭଞ୍ଜ ମହୋଦୟ ସେତେବେଳେ ସେହି ଅଦୃଶ୍ୟଙ୍କ ଇଙ୍ଗିତରେ ବଶବର୍ତ୍ତୀ ହୋଇ ଦେଉଳ ତୋଳାଇ ସାରିଥିଲେ । ସ୍ୱପ୍ନାଦେଶ ହେଉ ବା ଲୋକଙ୍କ ପ୍ରସ୍ତାବରେ ପ୍ରଚାର ଲଭକରୁ—ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଠାକୁରଙ୍କୁ ବହୁଖୋଜରୁ ମହା ସମା-ରୋହରେ ଆଣି କେନ୍ଦୁଝର ମନ୍ଦିରରେ ଅବସ୍ଥାପିତ କରାଇଥିଲେ । ସ୍ୱର୍ଗୀୟ ରାଜା କେନ୍ଦୁଝରରେ ୧୬୮୮ରୁ ୧୬୦୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେହି ଭୁଣ୍ଡ ବାଇଦରେ ରାଜ୍ୟପାଠ ସମସ୍ତେ ଜାଣିଲେ ଶ୍ରୀ ଶ୍ରୀ ବଳଦେବଜୀଉ କେନ୍ଦୁଝର ସହର ମହକୁମା ମଣ୍ଡନ କରିଥିଲେ; କିନ୍ତୁ ଆଦ ଭାଇ ଭଉଣୀଙ୍କୁ ନ ପାଇ ବଳଙ୍କୁ ସ୍ୱପ୍ନରେ ପ୍ରବର୍ତ୍ତାଇଲେ । ନମ୍ରଦେବୀ ହେଲା କେନ୍ଦୁଝର ପ୍ରସିଦ୍ଧ ଠିଲା । ବଳଦେବର ମୁଖାମରୁ ଜଗନ୍ନାଥ ସୁଭଦ୍ରାଙ୍କୁ ମହା ସମାରୋହରେ ଅଣାଯାଇ ପ୍ରତିଷ୍ଠା କରାଯାଇଥିଲା । ସେହି ବଳଦେବଜୀଉଙ୍କର ମନ୍ଦିର ଆମର ଉତ୍କଳ ମାଟିର ୨ୟ ଉଚ୍ଚତମ ମନ୍ଦିର । ଏହା ଚୁର ଧାମ ମଧ୍ୟରେ ଅନ୍ତର୍ଗତ ନ ହେଲେ ମଧ୍ୟ କେବଳ ଜଗନ୍ନାଥ ଓ ବଳଦେବ ତଥା ଘଟଗାଁ ତାରିଣୀଙ୍କ ପାଇଁ କେନ୍ଦୁଝର ଉତ୍କଳ ଦେଶରେ ଏକ ଶାନ୍ତପୀଠ । କେନ୍ଦୁଝର ରାଜାଙ୍କ ବଂଶାବଳୀରୁ ଜଣାପଡ଼େ ଭଜୁକବି ଗୋବିନ୍ଦ ଭଞ୍ଜ ଅମ୍ଳୀ ଅନୁଯାୟୀ ୧୦୧୧ରୁ ୧୦୪୧ ଇଂରେଜ ଏବଂ ଅନୁଯାୟୀ ୧୬୦୩ରୁ ୧୬୩୪ ଓ କେନ୍ଦୁଝର ଗଡ଼ଜାତ ଗେଜେଟିଅର ଅନୁଯାୟୀ ୧୬୮୦ରୁ ୧୬୩୪ ମଧ୍ୟରେ ରାଜୁତି କରୁଥିଲେ । ୧୪୮୦ ଖ୍ରୀଷ୍ଟାବ୍ଦ ଅନୁସାରେ ଶ୍ରୀ ପୁରୁଷୋତ୍ତମ ଦେବ ଗଜପତି ରାଜବରେ ପୁରୀ ଧାମରେ ରାଜୁତି କରୁଥିଲେ । ସେହି ପରିପ୍ରେକ୍ଷୀରେ ଲକ୍ଷ୍ମୀନାରାୟଣ ଭଞ୍ଜ ୧୬୮୮ରୁ ୬୭୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ; କିନ୍ତୁ ତାମ୍ରପଟକରୁ ଜଣାପଡ଼େ ୧୬୭୪ରେ ଶ୍ରୀ ବଳଦେବଜୀଉଙ୍କ ମନ୍ଦିର ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜ ନିର୍ମାଣ କରାଉଥିଲେ । ଏଥିରେ ଦ୍ୱିଧା ଜନ୍ମ ହେବାରୁ ତାମ୍ରପଟରୁ ଉଦ୍ଧାର କରି ଏହି ଶ୍ଳୋକଟି ଏଥିରେ ଲିପିବଦ୍ଧ କଲି ।

—ଶ୍ଳୋକ—

ଶକାବ୍ଦେ ଚନ୍ଦ୍ର ସୁଖର ଶୁଭଂ ରୂପନକ୍ଷତ୍ର ଜାସ୍ୱକେ
କାଉ ତୋ ରହୁରାଜ୍ୟ ମେନ ପ୍ରାସାଦଃ ପୀତବାସଃ
ଗଦା ସ୍ୱାସ୍ଥ୍ୟ ମିତେ ଜାତେ ଶକାବ୍ଦେ କୃତ୍ତିବାସଃ
ପ୍ରାସାଦଂ କୃତବାନ୍ ଧୀମାନ୍ ଲକ୍ଷ୍ମୀଚନ୍ଦ୍ର କେଶରୀ

ପ୍ରାୟ ୬୦ ମାଇଲ । ସେତେବେଳେ ଏହି କେନ୍ଦୁଝର ଜଙ୍ଗଲରେ ଭରପୂର ଥିଲା । ତଥାପି 'ରୁଣ୍ଡ ବାଇଦ ସହସ୍ର କୋଶ' ଅନୁଯାୟୀ ଶ୍ରୀ ବଳଦେବ ଜୀଉଙ୍କ ସେ ଗ୍ରାମରେ ଅବସ୍ଥିତ ରାଜା ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ଭଞ୍ଜଙ୍କ ଜାଣକୁ ଗଲା । ଭଞ୍ଜ ମହୋଦୟ ସେତେବେଳେ ସେହି ଅଦୃଶ୍ୟଙ୍କ ଇଙ୍ଗିତରେ ବଶବର୍ତ୍ତୀ ହୋଇ ଦେଉଳ ତୋଳାଇ ସାରିଥାଲେ । ସ୍ୱପ୍ନାଦେଶ ହେଉ ବା ଲୋକଙ୍କ ପ୍ରସ୍ତାବରେ ପ୍ରଚାର ଲାଭକରୁ—ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଠାକୁରଙ୍କୁ ବଡ଼ୋଡ଼ୁ ମହା ସମାରୋହରେ ଆଣି କେନ୍ଦୁଝର ମନ୍ଦିରରେ ଅବସ୍ଥାପିତ କରାଇଥିଲେ । ସ୍ୱର୍ଗୀୟ ରାଜା କେନ୍ଦୁଝରରେ ୧୬୮୮ରୁ ୧୭୦୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେହି ରୁଣ୍ଡ ବାଇଦରେ ରାଜ୍ୟପାଟ ସମସ୍ତେ ଜାଣିଲେ ଶ୍ରୀ ଶ୍ରୀ ବଳଦେବଜୀଉ କେନ୍ଦୁଝର ସହରେ ମହାଭୂମା ମଣ୍ଡନ କରିଥିଲେ; କିନ୍ତୁ ସାନ ଭାଇ ଭଉଣୀଙ୍କୁ ନ ପାଇ ସେଙ୍କ ସ୍ୱପ୍ନରେ ପ୍ରବର୍ତ୍ତାଇଲେ । କମ୍ପନୀ ହେଲା କେନ୍ଦୁଝର ହସିଉଠିଲା । ସେଠାରେ ପୁରୀମନ୍ଦିରୁ ଜଗନ୍ନାଥ ସୁଭଦ୍ରାଙ୍କୁ ମହା ସମାରୋହରେ ଅଣାଯାଇ ପ୍ରତିଷ୍ଠା କରାଯାଇଥିଲା । ସେହି ବଳଦେବଜୀଉଙ୍କର ମନ୍ଦିର ଆମର ଉତ୍କଳ ମାଟିର ୨ୟ ଉଚ୍ଚତମ ମନ୍ଦିର । ଏହା ଚାରି ଧାମ ମଧ୍ୟରେ ଅନ୍ତର୍ଗତ ନ ହେଲେ ମଧ୍ୟ କେବଳ ଜଗନ୍ନାଥ ଓ ବଳଦେବ ତଥା ଘଟଗାଁ ତାରିଣୀଙ୍କ ପାଇଁ କେନ୍ଦୁଝର ଉତ୍କଳ ଦେଶରେ ଏକ ଶାନ୍ତିପୀଠ । କେନ୍ଦୁଝର ରାଜାଙ୍କ ବଂଶାବଳୀରୁ ଜଣାପଡ଼େ ଭକ୍ତକବି ଗୋବିନ୍ଦ ଭଞ୍ଜ ଅମ୍ଳୀ ଅନୁଯାୟୀ ୧୦୧୧ରୁ ୧୦୪୧ ଇଂରେଜ ଏବଂ ଅନୁଯାୟୀ ୧୬୦୩ରୁ ୧୬୩୪ ଓ କେନ୍ଦୁଝର ଗଡ଼ଜାତ ଗେଜେଟିଅର ଅନୁଯାୟୀ ୧୬୮୦ରୁ ୧୭୧୪ ମଧ୍ୟରେ ରାଜୁତି କରୁଥିଲେ । ୧୬୮୦ ଖ୍ରୀଷ୍ଟାବ୍ଦ ଅନୁସାରେ ଶ୍ରୀ ପୁରୁଷୋତ୍ତମ ଦୁର୍ଗ ଗଜପତି ରାଜାରେ ପୁରୀ ଧାମରେ ରାଜୁତି କରୁଥିଲେ । ସେହି ପରିପ୍ରେକ୍ଷୀରେ ଲକ୍ଷ୍ମୀନାରାୟଣ ଭଞ୍ଜ ୧୬୮୮ରୁ ୧୭୧୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ; କିନ୍ତୁ ତାମ୍ରଫଳକରୁ ଜଣାପଡ଼େ ୧୬୭୫ରେ ଶ୍ରୀ ବଳଦେବଜୀଉଙ୍କ ମନ୍ଦିର ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜ ନିର୍ମାଣ କରାଇଥିଲେ । ଏଥିରେ ଦ୍ୱିଧା ଜନ୍ମ ହେବାରୁ ତାମ୍ରପତ୍ରରୁ ଉଦ୍ଧାର କରି ଏହି ଶ୍ଳୋକଟି ଏଥିରେ ଲିପିବଦ୍ଧ କଲି ।

—ଶ୍ଳୋକ—

ଶକାବ୍ଦେ ଚନ୍ଦ୍ର ସୁଖାର ଶୁଭଂ ରୂପନକ୍ଷତ୍ର ଜାୟକେ
କାଉ ତେ। ରତ୍ନଗର୍ଭ୍ୟା ମେନ ପ୍ରାସାଦଃ ପୀତବାସଃ
ଗଦା ଷ୍ଟାଷ୍ଟ ମିତେ ଜାତେ ଶକାବ୍ଦେ ଭୂର୍ଣ୍ଣବାସଃ
ପ୍ରାସାଦଂ କୃତବାନ୍ ଧୀମାନ୍ ଲକ୍ଷ୍ମେନ୍ଦୁ ଷ୍ଟ କେଶରୀ

ଓ’ ସ ସ୍ୱସ୍ତି ନର—ସିଂହେଂନ ପ୍ରାସାଦଃ ସ୍ୱମାନନଂ
କାଚଚେସ୍ମଂ ଶକାବ୍ଦ ଶଶ ଚେଦାବ୍ଦ ଦଶ ବର୍ଷିକେ
ରମୋନ୍ଦ୍ର ଶର—ଶସ୍ତୀ—ଶକାବ୍ଦେ ନୀଳବାସ ସେତ
ଭକ୍ତେ ନ ଲକ୍ଷ୍ମୀ କାନ୍ତେନ (ପ୍ରାସାଦଃ ଜଗମୋହନ କାଚଭସୋତମ୍)
୫୪୦୪

ମଧୂକୃଷ୍ଣ ତ୍ରୟୋଦଶାଂ ସେ କୈ ଶତ ଉସାପୁରେ
ମନ୍ଦା ମହେଶ୍ୱରୁ ବାରୁଣ୍ୟା ମଞ୍ଚ ତୋହର ବ୍ରାହ୍ମ ବା
୦୭୬୭୭ ଶ୍ରୀ ରମଶରଣ ।

କିନ୍ତୁ ଜନମତ କହେ ଭକ୍ତକବି ଗୋବିନ୍ଦ ଭଞ୍ଜ ଶ୍ରୀକ୍ଷେତ୍ରରୁ ଗଜପତିଙ୍କଠାରୁ ବିଦାୟ ହୋଇ ଆସିବାବେଳେ ଶ୍ରୀ ରାମଚନ୍ଦ୍ର (ରଘୁନାଥ)ଙ୍କ ସହ ଜଗନ୍ନାଥ ଓ ସୁଭଦ୍ରାଙ୍କୁ ଉପହାର ସ୍ୱରୂପ ପାଇ ତାରିଣୀଙ୍କ ଗହଣରେ କେନ୍ଦୁଝରକୁ ଆଣିବାକୁ ସକ୍ଷମ ହୋଇଥିଲେ । ଭକ୍ତକବି ଗୋବିନ୍ଦ ଭଞ୍ଜ ସାର ଗୋବିନ୍ଦପୁରରେ ରଘୁନାଥଙ୍କୁ ଓ ଘଟଗାଁରେ ମା’ ତାରିଣୀଙ୍କୁ ପ୍ରତିଷ୍ଠା କରାଇ ଶ୍ରୀ ଜଗନ୍ନାଥ ଓ ସୁଭଦ୍ରାଙ୍କୁ କେନ୍ଦୁଝର ଉପକଣ୍ଠରେ ପ୍ରତିଷ୍ଠା କରାଇଥିଲେ । ଗୋବିନ୍ଦ ଭଞ୍ଜଙ୍କର ଅନନ୍ତର ଲକ୍ଷ୍ମୀନାରାୟଣ ଭଞ୍ଜ ଏହି ପୀଠରେ ମନ୍ଦିର ନିର୍ମାଣ କରାଇ ଶ୍ରୀ ଜଗନ୍ନାଥ ଓ ସୁଭଦ୍ରାଙ୍କୁ ପୂଜା କରୁଥିଲେ । ବଞ୍ଚୋ ଗ୍ରାମରେ ବଳଦେବଙ୍କ ଆବିର୍ଭାବ କଥା ଶୁଣି ଶ୍ରୀ ବଳଦେବଙ୍କୁ ଗହଣରେ ଆଣି ଏହି ବିଷ୍ଣୁ ମନ୍ଦିରରେ ବଳଦେବ ତଥା ବଳଭଦ୍ରଙ୍କୁ ବସନ୍ତ ଋତୁରେ କୃଷ୍ଣ ତ୍ରୟୋଦଶୀ ୧୬୭୫ ଖ୍ରୀ: ଅ:ରେ ପ୍ରତିଷ୍ଠା କରାଇଥିଲେ । ରାଜାଙ୍କର ପ୍ରାଚୀନ ଉଆସ ପଛପାଖରେ ଆଉ ଏକ ଜଗନ୍ନାଥ ମୂର୍ତ୍ତି ଏଯାଏ ଅପୂଜା ହୋଇ ପଡ଼ି ରହିଛନ୍ତି । ତାଙ୍କର ପୂଜା ବା ନୀତି ଏ ଯୁଗରେ ଶିଥିଳ ହୋଇଗଲାଣି । ପୂଜା ବା ନୀତିର ଶିଥିଳତା ବିଷୟ ତାଙ୍କୁ ହିଁ ଜଣା । ତେଣୁ କେଉଁ ଜଗନ୍ନାଥ ମୂର୍ତ୍ତିଙ୍କୁ ଗୋବିନ୍ଦ ଭଞ୍ଜ ଓ କେଉଁ ମୂର୍ତ୍ତିଙ୍କୁ ଲକ୍ଷ୍ମୀନାରାୟଣ ଭଞ୍ଜ ଆଣିଛନ୍ତି ତା’ର କୌଣସି ସଠିକ୍ ପ୍ରମାଣ ଏଯାଏ ମିଳୁନାହିଁ । ସିଦ୍ଧମଠର ଐତିହାସିକ ତଥ୍ୟ ଭଲ ଭାବରେ ପ୍ରକାଶ ପାଇ ନ ଥିଲେ ମଧ୍ୟ ସେଠାରେ ପ୍ରତିଷ୍ଠିତ ଜଗନ୍ନାଥଙ୍କ ନିକଟରେ ସିଦ୍ଧକାଳୀଙ୍କର ମୂର୍ତ୍ତି କୋଟିମନ ହରଣ କରେ । ସେ ପୀଠର ମହାତ୍ମ୍ୟ ତାଙ୍କର ଇଙ୍ଗିତ କମ୍ପିତ କିମ୍ବଦନ୍ତୀ ବହୁଳ। କେନ୍ଦୁଝରରେ ସିଦ୍ଧମଠ ଶୀର୍ଷକରେ ଯଥେଷ୍ଟ ଆଲୋକ ଦେଇସାରିଛି ।

ଏହି ବଳଦେବ ମନ୍ଦିରରେ ନୀଳାଦ୍ରି ମହୋଦୟ ବର୍ଣ୍ଣିତ ବିଧିରେ ସେବା ପୂଜା ନୀତି ପ୍ରଚଳିତ ହୋଇ ଆସୁଅଛି । ଶ୍ରୀକ୍ଷେତ୍ର ଭଳି ଏଠି ବାର ମାସରେ ତେର

ଚଳ ପାଳିତ ହେଉଅଛି । ଏହି ମନ୍ଦିରରେ କେନ୍ଦୁଝର ରାଜାମାନେ ପ୍ରଧାନ ସେବକ ହିସାବରେ ଗଣ୍ୟ । ରାଜାଙ୍କ ସଂଯୋଗରେ ଶ୍ରୀ ବଳଦେବଜୀଉଙ୍କର ଶୟନ ପଲଙ୍କ ବ୍ୟବହାର କରାଯାଏ । ନୂଆ ରାଜା ଗାଦିଆରୀନ ସମୟରେ ମନ୍ଦିରରୁ ଶୁକ୍ଳଛତ୍ର ଓ ଅଙ୍ଗଲାଗି ପଟନେତ ମଧ୍ୟ ବ୍ୟବହୃତ ହୁଏ । ଶ୍ରୀ ଠାକୁରଙ୍କ ମଠ ଭିତରେ ଦଳା ଖେଚୁଡ଼ି, କନ୍ଦ ଜାଉର କପୂରକେଳୀ ଅତ୍ୟନ୍ତ ଉପାଦେୟ । କେନ୍ଦୁଝରରେ ରଥ ଯାତ୍ରାରେ ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପହଣ୍ଡି ବିଜେକରି ଗୋଟିଏ ରଥରେ ମାଉସୀ ଘରକୁ ଯାଆନ୍ତି । ଏ ରଥର ଉଚ୍ଚତା ୪୦ ହାତ । ଏ ମନ୍ଦିରରେ ମାଦଳା ତାଳ ପତ୍ରରେ ଲେଖାଯାଇ ରହୁଥିଲା; କିନ୍ତୁ ଦୁଃଖର ବିଷୟ ମନ୍ଦିରରେ କେବଳ ଠାକୁରଙ୍କ ମଠ ବ୍ୟତିରେକ ଅନ୍ୟ କୌଣସି ମାଦଳା ପାଞ୍ଜି କୌଣସି ବଦାନ୍ୟ ବ୍ୟକ୍ତିଙ୍କ ଦ୍ୱାରା ହରଣଚାଳ ହୋଇ ଯାଇଛି ।

ସୁଖର ବିଷୟ ସ୍ଥାନୀୟ ଶ୍ରେଣିମାଳିକ ଶ୍ରୀ ବଂଶୀଧର ପଟ୍ଟନାୟକ, ପୂର୍ବତନ ଅଞ୍ଚଳର ଅଧିକାରୀ ଶ୍ରୀ ବଦ୍ରିନାଥ ପାଣିଗ୍ରାହୀ ଓ ଜ୍ଞାନମଣ୍ଡଳର ସଦସ୍ୟମାନଙ୍କ ସାହାଯ୍ୟରେ ମନ୍ଦିର ମରାମତି ୧୯୮୨-୮୩ରେ ହୋଇ ମନ୍ଦିରର ସୌନ୍ଦର୍ଯ୍ୟ ବର୍ଦ୍ଧନ କରି ପାରିଛନ୍ତି । ଶ୍ରୀ ଠାକୁରଙ୍କ ଅଶେଷ କୃପାରେ ମଧୁ ସାହୁ କେନ୍ଦୁଝରରେ ଜଣେ ବଡ଼ ଭକ୍ତରୂପେ ପରିଚିତ। ଜ୍ଞାନମଣ୍ଡଳର ସଦସ୍ୟମାନଙ୍କ ଉଦ୍ୟମରେ ଏବେ ଶ୍ରୀ ଠାକୁରଙ୍କ ନିକଟରେ ପ୍ରତିବର୍ଷ ଯଜ୍ଞ କରାଯାଉଛି । ଜ୍ଞାନମଣ୍ଡଳରେ ପ୍ରତିଦିନ ଶ୍ରୀହରି କୀର୍ତ୍ତନ ବନ୍ଦ ହେଉନାହିଁ । ସଦସ୍ୟମାନଙ୍କ ଉଦ୍ୟମରେ ଗୋଟିଏ ପାଠାଗାର ମଧ୍ୟ ଖୋଲାଯାଇ ପାରିଛି । ପ୍ରତିଦିନ ସନ୍ଧ୍ୟାରେ ଜ୍ଞାନମଣ୍ଡଳରେ ଅନେକ ସଦସ୍ୟଙ୍କ ମିଳନରେ ପ୍ରଭୁଙ୍କର ନାମ ସଂକୀର୍ତ୍ତନ ଲାଗି ରହିଛି । ଏଥିରେ ମୁରଲୀଧର ସାହୁ ଆଡ଼ଭୋକେଟ ବିଶେଷ ରୂପେ ଅଂଶ ଗ୍ରହଣ କରୁଛନ୍ତି ।

## ଶ୍ରୀ ନୀଳକଣ୍ଠେଶ୍ୱର—

ଶ୍ରୀ ନୀଳକଣ୍ଠେଶ୍ୱର ସଦର ଅଞ୍ଚଳବାସୀଙ୍କ ବାର୍‌ହାଟିପିରି ପାହାଡ଼ ଉପରେ ବିଦ୍ୟମାନ । ଏହାଙ୍କର ଶରୀର ମାଟିଆଳୁ ଖୋଳିବା ଅବସ୍ଥାରେ ଆବିର୍ଭାବ ହୋଇଥିଲେ । ଏହି ଲିଙ୍ଗ ଗୋଟିଏ ପାହାଡ଼ର ଶୀର୍ଷସ୍ଥାନ ମଣ୍ଡନ କରୁଥିଲେ । ଜନମୁଖରୁ ପ୍ରକାଶ ହୁଏ ଯେ ଶଙ୍କର ଚକ୍ରବର୍ତ୍ତୀ ଏ ମନ୍ଦିରର ଶିଖର ଦେଖିବାକୁ ଯିବା ପାଇଁ ୧୧ଟି ପାବଚ୍ଛ ତିଆରି କରାଇ ଏ ମାଟିରେ ମିଶି ଯାଇଛନ୍ତି ।

ଏହି ଶିବଲିଙ୍ଗ ନିକଟରେ ପ୍ରତିବର୍ଷ ଏକ ମେଳା ମକର ସଂକ୍ରମଣରେ ବସେ ଓ ଏହା ସାତ ଦିନ ପର୍ଯ୍ୟନ୍ତ ଲାଗିରହେ । ଏହି ଲିଙ୍ଗ ଦର୍ଶନ କରିବା ଲାଗି ବହୁଆଡ଼ୁ ଭକ୍ତମାନେ ଆସି ଭକ୍ତିପ୍ରଣତି ଜଣାଇ ଫେରିଯାନ୍ତି ।

## ଶୂନ୍ୟମନ୍ଦିର—

ସହର ମହକୁମାର ଛୀରେଇଝାଙ୍ଗିଶର ଝାଙ୍ଗର ଉପରେ ଗୋଟିଏ ମନ୍ଦିର ଗଢ଼ାଯାଇ କୋଟି ଜନତାର ଦୃଷ୍ଟି ଆକର୍ଷଣ କରେ । ଏହା ଏକ ଶୂନ୍ୟ ମନ୍ଦିର । କୌଣସି ଠାକୁରଙ୍କର ବିଗ୍ରହ ଏ ମନ୍ଦିର ଭିତରେ ନାହାନ୍ତି । ଏହି ମନ୍ଦିର ସାଧାରଣତଃ ଅଲେଖଧର୍ମୀ ସନ୍ଥମାନଙ୍କର ପୀଠସ୍ଥଳୀ । ଏ ମନ୍ଦିରର ନିର୍ମାଣକର୍ତ୍ତା ଏ ଯାବତ୍ ଦୃଷ୍ଟି ଗୋଚରକୁ ଆସି ନାହାନ୍ତି ।

## ଶ୍ରୀ ଦଧିବାମନଜୀଉ—

ଶ୍ରୀ ଦଧିବାମନଜୀଉ ଆନନ୍ଦପୁର ମୁକାମରେ ଅଧିଷ୍ଠିତ ଦେବତା । ମନ୍ଦିର ଭିତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହ ନାହାନ୍ତିମାନ । କମୃଦନ୍ତୀ କହେ ଏହି ମନ୍ଦା ବିଗ୍ରହଙ୍କୁ ସ୍ୱର୍ଗୀୟ ଗଦାଧର ଭଞ୍ଜ ପ୍ରତିଷ୍ଠା କରାଇଥିଲେ । ଏଠାରେ କେନ୍ଦୁଝର ଭଳି ରଥଯାତ୍ରା—ଶ୍ରୀଗୁଣ୍ଡିଚା ଓ ବାହୁଡ଼ାଯାତ୍ରା ସମାରୋହରେ ପାଳନ କରାଯାଏ । ବାର ମାସରେ ତେର ପର୍ବ ବି ପାଳିତ ହୁଏ । ଏ ମନ୍ଦିରର ପ୍ରାଧାନ୍ୟ ଏଠାରେ ଦୋଳପର୍ବ ମହାସମାରୋହରେ ପାଳିତ ହୁଏ ।

ଆର ଗୋବିନ୍ଦପୁରରୁ ଶ୍ରୀ ରଘୁନାଥଜୀଉ ଓ କୋଡ଼ପଡ଼ାରୁ ଠାକୁରଙ୍କର ପ୍ରତିମୂର୍ତ୍ତି ଦୋଳଯାତ୍ରାରେ ଦଧିବାମନଜୀଉଙ୍କ ନିକଟକୁ ମହାସମାରୋହରେ ଓଳଭଙ୍ଗା ପର୍ବରେ ଅନ୍ୟ ଦେବତାଙ୍କ ଷଷ୍ଠ ପୂଜା ପାଇ ପୂର୍ଣ୍ଣିମୀ ଦିନ ଲେଉଟି ଯାଆନ୍ତି ।



# କେନ୍ଦୁଝରର ସାହିତ୍ୟିକ ଇତିହାସ

ଭକ୍ତକବି ରାଜା ସ୍ୱର୍ଗୀୟ ଗୋବିନ୍ଦ ଭଞ୍ଜ ଓ ରାଜା ସ୍ୱର୍ଗୀୟ ପ୍ରତାପ ବଳଭଦ୍ର ଭଞ୍ଜ ସାହିତ୍ୟ ଓ ସଂସ୍କୃତର ପୁରୋଧା ଥିଲେ । ତାହାର ପରିଚୟ ଆମମାନଙ୍କୁ ଅମ୍ବିକା ବିଳାସ, ରଘୁରାଜ ଚମ୍ପୂ, ପ୍ରେମମୁକ୍ତାବଳୀ ପୁଣ୍ୟଶ୍ଳୋକ, ସଂସ୍କୃତନାଟ୍ୟଂ, ଚରଣ ସୁଧାନିଧି ଓ ଆହୁ କେତେଗୁଡ଼ିଏ ପୁସ୍ତକ ଦେଇ ପାରୁଛି । ଏ ରାଜ୍ୟ ଏହି ଯୁଗ ଭଳି ପୁରାତନ ଯୁଗରେ ମଧ୍ୟ ବହୁ ଲେଖକ ଓ କବିମାନଙ୍କ ଦ୍ୱାରା ଭୂଷିତ ହୋଇଥିଲା । ଏ ରାଜ୍ୟରେ ପୁରାତନ ଯୁଗରେ ସଂସ୍କୃତରେ ବହୁ ଲେଖକଙ୍କ କେତେକ ଲେଖା ଲେଖିଯାଇ କାଳ ଗର୍ଭରେ ଲୁପ୍ତ ଯାଇଛନ୍ତି, ତାହାର ପ୍ରମାଣ ଏ ଯୁଗରେ ଦେଇପାରୁଛି ପୁରୁଣା କାଳର ଛାପା ପଣ୍ଡିତ ନରସିଂହ ମିଶ୍ରଙ୍କ 'ସଂସ୍କୃତନାଟକ' 'ରସୋ ମହୋଦୟମ' । ବ୍ୟାସକବି ଫକୀର ମୋହନ ସେନାପତି ବାଲେଶ୍ୱରର ଅଧିବାସୀ ହେଲେ ମଧ୍ୟ ଏହିଠାରେ ମହାରାଜା ଧନୁର୍ଜୟ ଭଞ୍ଜଙ୍କର ରାଜତ୍ୱ କାଳରେ ଜଣେ କବି ବା ଲେଖକ ହିସାବରେ ପରିଚିତ ହେବା ସଙ୍ଗେ ସଙ୍ଗେ ଆନନ୍ଦପୁରରେ ଗୋଟିଏ ଛାପାଖାନା କରି ସେହିଠାରେ ତାଙ୍କର କେତେଖଣ୍ଡ ପୁସ୍ତକ ଛପାଇବାରେ ସେ ଅଗ୍ରଣୀ ହୋଇ ପାରିଥିଲେ । ଭୂତପୂର୍ବ ରାଜା ମହାରାଜା ମାନଙ୍କର ଉପର ଲିଖିତ ଲେଖା ବ୍ୟତୀତ ଅନେକ ହସ୍ତଲିପି ରାଜକୋଷରେ ରକ୍ଷିତ ହୋଇ ରହିଅଛି । ସ୍ଥାନୀୟ ରାଜବଂଶୀୟ ଶ୍ରେଷ୍ଠରାୟ ତଥା ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଏହି ହସ୍ତଲିପିଗୁଡ଼ିକ ଉଦ୍ଧାର କରି, ଭଞ୍ଜ ପ୍ରକାଶିନୀ କମିଟି ଜରିଆରେ ଏଗୁଡ଼ିକୁ ଲୋକ ଲୋଚନର ଗୋଚରକୁ ଆଣିବାକୁ ଏକ ସାଧୁ ଉଦ୍ୟମ ଚଳାଇ ଅଛନ୍ତି । କିନ୍ତୁ ପରିତାପର ବିଷୟ ଶ୍ରେଷ୍ଠରାୟ ସାହେବ, କେନ୍ଦୁଝର ପ୍ରଜାମାନଙ୍କୁ ଦୁଃଖ ବା ଶୋକ ସାଗରରେ ଭସାଇ ୧୯୮୭ରେ ଇହଲୀଳା ସାଙ୍ଗ କରିଛନ୍ତି ।

ତାଙ୍କ ଭଳି ଜଣେ ଉଚ୍ଚଶିକ୍ଷିତ, ସାହିତ୍ୟିକ, ପୁସ୍ତକ ସଂଗ୍ରାହକ ତଥା ପ୍ରଜାନୁରଞ୍ଜନ ବ୍ୟକ୍ତି କେନ୍ଦୁଝର କୋଳ ଆଉ କେହି ମଣ୍ଡନ କରିବେ କି ନା ସନ୍ଦେହ ।

ରାଜା ମହାରାଜାଙ୍କ ଲେଖା ଛଡ଼ା ଗ୍ରାମ୍ୟ ଅଞ୍ଚଳରେ ଅନେକ ଶ୍ରେଷ୍ଠ ବଡ଼ କବି କେନ୍ଦୁଝର ଭଳି ପଞ୍ଚବନାମାଦେଗ ଉର୍ବର ଭୂଇଁରେ ବଣଜଙ୍ଗଲରେ ଫୁଟି ଏ ମାଟିରେ ମିଳେଇ ଯାଇଛନ୍ତି ତା'ର ହିସାବ କେହି ରଖିଛି କି ନା ସନ୍ଦେହ । ତଥାପି ସେମାନଙ୍କ ମଧ୍ୟରେ ରଘୁନନ୍ଦନ ମହାନ୍ତି ଅଗ୍ରଣୀ । ସେ ଖୁବ୍ କମ୍ ବୟସରେ କେନ୍ଦୁଝରକୁ ଏକ ରସାଳ ସାହିତ୍ୟ ଯୋଗାଇ ଦେଇ ଇହଲୀଳା ସାଙ୍ଗ କରିଛନ୍ତି । କେନ୍ଦୁଝରର ସ୍ୱର୍ଗୀୟ ଜଗବନ୍ଧୁ ତ୍ରିପାଠୀ, ସୁଦର୍ଶନ ମିଶ୍ର, କୃଷ୍ଣଚନ୍ଦ୍ର ମିଶ୍ର, ଆନନ୍ଦପୁରର ସେପର୍ ଖାଁଙ୍କର ନରୋତ୍ତମ ପଟ୍ଟନାୟକ, ପ୍ରାଣବଲ୍ଲଭ ପଟ୍ଟନାୟକ, ପଣ୍ଡିତ ସଦାଶିବ ମିଶ୍ର, ବଳଭଦ୍ରପୁର କୃଷ୍ଣଚନ୍ଦ୍ର ତ୍ରିପାଠୀ, କ୍ଷେତ୍ରମୋହନ ମିଶ୍ର କବିମାନେ ବଳଭଦ୍ର ସାହିତ୍ୟ ସଂସଦରୁ 'ବନବାଣୀ'କୁ ସାହିତ୍ୟ ରସରେ ବୁଡ଼ାଇ ଏହି ମାଟିରେ ମିଶି ଯାଇଛନ୍ତି; କିନ୍ତୁ ତା'ର ହିସାବ କେହି ରଖିନାହାନ୍ତି । ସ୍ୱର୍ଗୀୟ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଓ ଭବଗ୍ରାହୀ ମହାନ୍ତି ଏହି କେନ୍ଦୁଝର ମାଟିରେ ସାହିତ୍ୟରେ ରସ ସଞ୍ଚାର କରି ଏହି ବନବାଣୀ ପତ୍ରିକାକୁ ୧୯୪୬-୪୭ ମସିହା ପର୍ଯ୍ୟନ୍ତ ସଞ୍ଜୀବିତ କରି ପାରୁଥିଲେ । କହିବାକୁ ଦୁଃଖ ଲାଗେ ଅମ୍ବିକା ବିଳାସ କାବ୍ୟ କେନ୍ଦୁଝରର ରାଜା ପ୍ରତାପ ବଳଭଦ୍ର ଭଞ୍ଜ ଲେଖିଥିଲେ ମଧ୍ୟ ଢେଙ୍କାନାଳର ସ୍ୱର୍ଗୀୟ ବ୍ରଜନାଥ ବଡ଼ଜେନା ଏହା ତାଙ୍କର ନିଜସ୍ୱ ବୋଲି ସାହିତ୍ୟ ଏକାଡେମୀରେ ଦାବୀ କରିଥିଲେ । ସ୍ୱର୍ଗୀୟ ବଡ଼ଜେନାଙ୍କ ସାହିତ୍ୟ କୃତି ଓ ଆମର କେନ୍ଦୁଝର ରାଜାଙ୍କର ସାହିତ୍ୟକୃତି ତୁଳନା କରି ଦେଖିବାକୁ ଗଲେ ଏହା କେବେହେଲେ ବଡ଼ଜେନାଙ୍କ କୃତି ବୋଲି କେହି ବିଶ୍ୱାସ କରି ପାରିବେ ନାହିଁ । ଏଣୁ ସାହିତ୍ୟ ଏକାଡେମୀ ଏହାକୁ ପୁଙ୍ଖାନୁପୁଙ୍ଖ ତଦନ୍ତ କରି ଅମ୍ବିକା ବିଳାସ କାବ୍ୟର ଉପଯୁକ୍ତ ଲେଖକଙ୍କୁ ସମ୍ମାନ ଦେବାଲାଗି ମୁଁ ମିଳମି ସାହିତ୍ୟ ସଂସଦ ତରଫରୁ ତଥା କେନ୍ଦୁଝରର ଜଣେ ନାଗରିକ ହିସାବରେ ଅନୁରୋଧ କରୁଛି ।

ସ୍ୱାଧୀନତାର ପୂର୍ବପାଦରେ ଏହି ରାଜ୍ୟର ଶେଷରାଜା ସ୍ୱର୍ଗୀୟ ବଳଭଦ୍ର ନାରାୟଣ ଭଞ୍ଜ ଥିଲେ । ଏହାଙ୍କ ସମୟରେ ଏହି କେନ୍ଦୁଝର ଗୋଟିଏ ସାହିତ୍ୟର ପୀଠସ୍ଥଳୀ ଥିଲା ବୋଲି କେହି ଅସ୍ୱୀକାର କରିବେ ନାହିଁ । ଏ ସମୟରେ ସ୍ୱର୍ଗୀୟ ବାନାମ୍ବର ଆଚାର୍ଯ୍ୟ, ପ୍ରାଣବଲ୍ଲଭ ପଟ୍ଟନାୟକ, କୃଷ୍ଣ ତ୍ରିପାଠୀ ଓ ଭବଗ୍ରାହୀ ମହାନ୍ତି, ବଂଶୀଧର ମହାନ୍ତି, ଭଗିରଥୀ ମିଶ୍ର, ବେଣୁଧର ରାଉତ, ଗଙ୍ଗାଧର ଦଳ ପ୍ରମୁଖ

ନିଜ ନିଜର ମୁଦ୍ରକ ଛପିଛଡ଼ା 'ବନବାଣୀ' ପତ୍ରିକା ପ୍ରକାଶ କରୁଥିଲେ । ଏହା ୧୯୩୦ ମସିହାଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଉତ୍କଳର ଶ୍ରେଷ୍ଠ ପତ୍ରିକା ସାଙ୍ଗରେ ସମକକ୍ଷ ହୋଇ ପାରିଥିଲା ।

ଦୁର୍ଭାଗ୍ୟର ବିଷୟ ଏ ରାଜ୍ୟର କଳା ଓ ସଂସ୍କୃତି ଜରାଜୀର୍ଣ୍ଣ ଅବସ୍ଥାରେ ସଢ଼ି ପଚିଲା ଭଳି ଏହି ରାଜ୍ୟର ଅଧିବାସୀମାନେ ଏ ଯାବତ୍ ପରିଶ୍ରମ କରି ମଧ୍ୟ ସଢ଼ି ମରୁଛନ୍ତି ।

ପ୍ରବାଦ ଅଛି—ଢୋଲ ଖାଏ ମାଡ଼, ପାଣ ଖାଏ କଉଡ଼ି ।

ଏଇ ଉକ୍ତିଟି ଏଠାକାର ଆଦିବାସୀମାନେ ହିଁ ନମୁନା । ଏମାନେ ପରିଶ୍ରମ କରନ୍ତି ସତ; କିନ୍ତୁ ଧନୀ ଲୋକମାନେ ଫାଇଦା ଉଠାନ୍ତି । ଏମାନଙ୍କ ପାଇଁ କେହି କେବେ ଶାସନକଳରେ ଥାଇ ଭାବନ୍ତିକି ନା ସନ୍ଦେହ ? ଏ ରାଜ୍ୟର ଉନ୍ନତ ଜାତିର ଲୋକମାନେ ବିଶେଷ ଗରିବ ନ ହେଲେ ମଧ୍ୟ ଖଣ୍ଡେ ବହି କିଣି ପାରିବା ଏମାନଙ୍କ ପକ୍ଷେ କଷ୍ଟସାଧ୍ୟ । ଅନେକ ଉଲ୍ଲେଖଯୋଗ୍ୟ କବି ଏ ଅନୁଷ୍ଠାନକୁ ବଞ୍ଚାଇ ଥିଲେ ମଧ୍ୟ ଏ ରାଜ୍ୟଠୁ ଦୂରରେ ଅଛନ୍ତି । ସେମାନଙ୍କ ମଧ୍ୟରେ ଭାଗବତୀ ସି ମହାନ୍ତି, ଅନ୍ନଦା ଶଙ୍କର ପାଣ୍ଡିତ, ଦୁର୍ଗାପ୍ରସାଦ ପଟ୍ଟନାୟକ ଅନ୍ୟତମ । ସୌଭାଗ୍ୟର ବିଷୟ ମିଳନୀ ସାହିତ୍ୟ ସଂସଦ ଯେହି ବନବାଣୀକୁ ୧୯୭୪ ମସିହାରେ 'ମିଳନୀ ବନବାଣୀ' ମୁଖପତ୍ର ହିସାବରେ ପୁନରୁଦ୍ଧାର କରିବାକୁ ସକ୍ଷମ ହୋଇ ପାରିଛି । ଆମ ଜିଲା ବହୁ କବି ଓ ଲେଖକମାନଙ୍କର ଗର୍ଭାଧର ହେଲେ ମଧ୍ୟ ଅନେକ ଗ୍ରାମୀଣ କବି ଏଯାଏ ଲୋକଲୋଚନର ଗୋଚରକୁ ଆସି ପାରି ନ ଥିଲେ । ସେହିମାନଙ୍କର ମନ ଓ ହୃଦୟ ଆକର୍ଷଣ କରି ମିଳନୀ ସାହିତ୍ୟ ସଂସଦ ଗତ ୯ ଓ ୧୦-୬-୮୦ ରେ ଗୋଟିଏ ଜିଲାସ୍ତରୀୟ କବି ସମ୍ମିଳନୀ ଆହ୍ୱାନ କରିଥିଲେ । ସେଥିରେ ଶତାଧିକ କବି ବା ଲେଖକ ଯୋଗ ଦେଇ କେନ୍ଦୁଝର ସାହିତ୍ୟକୁ ସମୃଦ୍ଧି କରିଛନ୍ତି । ସେମାନଙ୍କର ତାଲିକା ମିଳନୀ ବନବାଣୀରେ ପ୍ରକାଶ ପାଇଛି । ଏ ଯୁଗର ଏହି ମିଳନୀ ସାହିତ୍ୟ ସଂସଦର ସଭାପତି ପଣ୍ଡିତ ମଦନମୋହନ ମିଶ୍ର ୧୯୬୨ ଠାରୁ ଏଯାଏ ସଭାପତିତ୍ୱ କାର୍ଯ୍ୟ ସମ୍ପାଦନ କରି ଆସୁଛନ୍ତି । ଶ୍ରୀ ଦିବାକର ସାହୁ ଯୁବକ ହେଲେ ମଧ୍ୟ ସେହି ୧୯୬୨ ଠାରୁ ଏଯାଏ ସମ୍ପାଦକରୂପେ ମିଳନୀ ସାହିତ୍ୟ ସଂସଦର କାର୍ଯ୍ୟକ୍ରମ ହୃଷ୍ଟରୂପେ ସମ୍ପାଦନା କରି କୋଟି ଜନତାର ହୃଦୟ ଆକର୍ଷଣ କରି ପାରୁଛନ୍ତି । ୧୯୭୫ ମସିହାରେ ସ୍ଥାନୀୟ ଜିଲ୍ଲାପାଳ ଶ୍ରୀଯୁକ୍ତ ଅକ୍ଷୟ ବିଶ୍ୱାଳ, ଆଇ.ଏ.ଏସ୍, ଓ ନିରଞ୍ଜନ ପଟ୍ଟନାୟକଙ୍କ ପୁରୋଧାରେ ଡିସେମ୍ବର ମାସରେ ଏଠାରେ ଏକ ରାଜ୍ୟସ୍ତରୀୟ ଯୁବଲେଖକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହାଛଡ଼ା ମିଳନୀ ସାହିତ୍ୟ

ସସତ ଗତ ୪ ବର୍ଷ ଧରି ଜିଲ୍ଲାସ୍ତରୀୟ କବି ସମ୍ମିଳନୀ କରାଇବାକୁ ସକ୍ଷମ ହୋଇ ପାରିଛି । ଲେଖକ ସାମ୍ମୁଖ୍ୟ ତରଫରୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଓ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଷଷ୍ଠ ସମ୍ମିଳନୀ ଡିସେମ୍ବର ୧୯୮୭ରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ବହୁ ସୁନାମଧନ୍ୟ କବିମାନେ ଏଥିରେ ଯୋଗ ଦେଇଥିଲେ । ମୁଖ୍ୟମନ୍ତ୍ରୀ ୫ ଜଣ ବୟୋବୃଦ୍ଧ କବିଙ୍କୁ ମାନପତ୍ର ପ୍ରଦାନ କରିଥିଲେ । (ବିଦ୍ୟାଧର ରାଉତରାୟ, କବିକୁଞ୍ଜ ନବକିଶୋର ମହାନ୍ତି, ଯୋଗୀନାରାୟଣ ମିଶ୍ର, ରାମଚନ୍ଦ୍ର ମହାକୁଡ଼ ଓ ରଙ୍ଗାଧର କର) ।

କେନ୍ଦୁଝରର ଐତିହ୍ୟ ଏହି କବି ବା ଲେଖକମାନଙ୍କର ଜୀବନୀ ଉତ୍କଳ ଇତିହାସରେ ସ୍ଥାନ ପାଇଲେ କେନ୍ଦୁଝରବାସୀ ଗୌରବ ମନେ କରନ୍ତେ ।

ଏ ମାଟିରେ କେବଳ କବି ବା ଲେଖକଙ୍କର ସମାବେଶ ନାହିଁ । ଏ ମାଟିରେ ଅନେକ କୃତୀ କଳାକାର, ଚିତ୍ରକାର, କୃତୀ ଶିକ୍ଷକ ହୋଇ ଯାଇଥିଲେ ମଧ୍ୟ ଏ ଯୁଗରେ ଅନେକ କଳାକାର, ଚିତ୍ରକାର ବହିରଦ୍ୱ ମଲ ସଦୃଶ ପଡ଼ି ରହିଛନ୍ତି । ତଦାରଖ କରି ଓଡ଼ିଶା ସରକାର ଏହି ଦୁଃସ୍ଥ କଳାକାର ତଥା ଚିତ୍ରକାର ଓ କୃତୀ ଶିକ୍ଷକମାନଙ୍କୁ ଯଦି କିଛି ବୃତ୍ତି ଖଞ୍ଜି ଦିଅନ୍ତେ ତେବେ ସେମାନେ ନିଜକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ ଆର୍ଥିକ ସାହାଯ୍ୟ ପାଇ କଳା ଓ ସଂସ୍କୃତିର ପ୍ରସାର କରି ପାରନ୍ତେ ।



# ସିଦ୍ଧମଠ

ସିଦ୍ଧମଠ ନାଆଁ ଶୁଣିବାକୁ ଭାରି ଖଣ୍ଟା । ଶୁଣିବା ମାତ୍ରେ ଦେଖିବା ତ ଦୂରର କଥା ଆଉ ଥରେ ଶୁଣିବାକୁ ମନ ହୁଏନା । ସାଧାରଣତଃ ମନ ଭିତରେ ଗୋଟିଏ ମାତ୍ର କଥା ଖେଳିବୁଲେ ଏହା ନିଶ୍ଚୟ ଜଣେ କୌଣସି ବାବାଜୀ ବା ସନ୍ନ୍ୟାସୀଙ୍କର ବାସସ୍ଥଳୀ ହୋଇଥିବ । କେହି ଆଗନ୍ତୁକ ଦେଖିଲେ ମଧ୍ୟ ଏହାର ନାମର ଲଘୁତା ସଙ୍ଗେ ମନ ଭିତରେ ଯେପରି କିଛି ରୋମାନ୍ସ ଅଣିପାରିବନି । କାହିଁକି ନା ସେଠାରେ ଦେଖିବା ଭଳି ଜିନିଷ ସେମିତି କିଛି ନାହିଁ । ମଠ ବି ତ ନୁହେଁ—ଏହା ଚୂଳିଆ ପାହାଡ଼ର ପାଦଦେଶରେ ଝଙ୍କାଳିଆ ଆମ୍ବ ବଗିଚା ଭିତରେ ଅବସ୍ଥିତ । ଯାତାୟତ ବାଟ ବି ନୁହେଁ । ଗୋନାସିକା ଅବା ସେହି ପାଖ ଗାଁ ମାନଙ୍କୁ କେଉଁଝର ହାଟବାହୁଡ଼ା ଭୁୟାଁ ଜୁଆଙ୍ଗଙ୍କ ଛଡ଼ା କେହି ଧୋବ ଧାଉଳିଆ ବାବୁମାନେ ବୋଧହୁଏ ସେ ଜାଗା ଦେଖିବାକୁ ଇଚ୍ଛା କରୁ ନ ଥିଲେ ।

କିନ୍ତୁ ଆଜି ଅନେକ ଦିନର ନୀରବତା ଭଙ୍ଗକରି ସେହି ଜାଗାଟି ହସି ଉଠିଛି । ତା'ର ଐତିହାସିକ ବା ଭୌଗୋଳିକ ତଥ୍ୟ ସଂଗ୍ରହ କରିବାକୁ ଜ୍ଞାନୀ, ବିଜ୍ଞାନୀ, ଲେଖକ, ଲେଖିକା ଭାରି ତତ୍ପର । ଆଶ୍ଚର୍ଯ୍ୟର ବିଷୟ ଏହି ସିଦ୍ଧମଠର ପଶ୍ଚି ଆମ୍ବଗଛଦେର ସ୍ଥାନଟି ମଣ୍ଡନ କରୁଛନ୍ତି ସିଦ୍ଧକାଳୀ ଓ ସିଦ୍ଧ ଜଗନ୍ନାଥ । ଯାହାଙ୍କୁ ଭକ୍ତ ସ୍ୱର୍ଗୀୟ ଗୋବିନ୍ଦ ଭଞ୍ଜ ସ୍ଥାପନା କରିଥିଲେ । ତାଙ୍କର ପାଖରେ ମଧ୍ୟ ଜଗନ୍ନାଥଙ୍କର ମୂର୍ତ୍ତି ଜାଜ୍ୱଲ୍ୟମାନ । ଆହୁରି ଆଶ୍ଚର୍ଯ୍ୟର କଥା ଏହି ପୀଠରେ ବହୁ ଯୁଗରୁ ଶ୍ରୀ ରାମଚନ୍ଦ୍ରଙ୍କର ବଡ଼ଭକ୍ତ ସିଦ୍ଧ ହନୁମାନ ମଧ୍ୟ ଏ ସ୍ଥାନ ମଣ୍ଡନ କରୁଛନ୍ତି । ସାଧାରଣତଃ ମନ ଭିତରେ ଉଙ୍କିମାରେ କାଳୀଙ୍କ ପୀଠରେ ହନୁମାନଙ୍କର

ଅବସ୍ଥିତ ଏକ ବ୍ୟତିକ୍ରମ । ଏହାରି ଉପରେ ବହୁ ଗବେଷଣା କରି କିଞ୍ଚିତ୍ ମାତ୍ର ସୂଚନା ପାଇଲି ଯାହା ନିମ୍ନରେ ଲୋକଲୋଚନର ଗୋଚରକୁ ଆଣିଛୁ ।

କେହି କେହି କହନ୍ତି ଏହି ଗୋବିନ୍ଦ ଭଞ୍ଜଙ୍କ ରାଜତ୍ୱ କାଳରେ ଜଣେ ସିଦ୍ଧ ପୁରୁଷ ହନୁମାନଙ୍କର ମୂର୍ତ୍ତି ସ୍ଥାପନା କରିଥିଲେ । ଅବଶ୍ୟ ଏ ବିଷୟରେ କେନ୍ଦୁଝରର ତାମ୍ରଫଳକ ବା ମାଦଳାପାଞ୍ଜି ମୂକ । ପୌରାଣିକ ମତରେ ହନୁମାନ ରାମଚନ୍ଦ୍ରଙ୍କର ଭକ୍ତ ହେଲେ ମଧ୍ୟ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କର ସାନିଧ୍ୟ ଲାଭ କରିଥିଲେ ଏବଂ ଭାରତ ଯୁଦ୍ଧରେ ନନ୍ଦିଘୋଷ ରଥରେ କେବଳ ହନୁମାନ ହିଁ ଜଣେ ବୀର—ଯିଏ କି ତକ୍ଷକ ସର୍ପ ଦାଉରୁ ଶ୍ରୀକୃଷ୍ଣ ତଥା ଅର୍ଜୁନଙ୍କୁ ଉଦ୍ଧାର କରିଥିଲେ । ତେଣୁ ହନୁମାନଙ୍କର ଦ୍ୱାପର ଯୁଗରେ ଆବିର୍ଭାବ ହେବାର ପ୍ରମାଣ ମହାଭାରତରେ ଲିଖିତ । ଅର୍ଜୁନ ସତ୍ୟଭାମାଙ୍କର ଅନୁରୋଧକ୍ରମେ ସୁଗନ୍ଧିକା ପୁଷ୍ପ ଆଣିବାକୁ ଯାଇଥିଲେ—ଯେଉଁ ପୁଷ୍କରିଣୀ କୂଳରେ ସେହି ପୁଷ୍ପର ରକ୍ଷକ ହିଁ ହନୁମାନ ଅର୍ଜୁନଙ୍କର ବଳ ପରୀକ୍ଷା କରିଥିଲେ । ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ହନୁମାନ ବିଶେଷ ପାର୍ଥକ୍ୟ ଉପଲବ୍ଧି କରି ନ ଥିଲେ । ଫଳରେ ହନୁମାନ ତାଙ୍କର ବିଶ୍ୱରୂପ ଅର୍ଜୁନଙ୍କୁ ଦେଖାଇଥିଲେ ଓ ଆନନ୍ଦରେ ସୁଗନ୍ଧିକା ପୁଷ୍ପ ଗୁଚ୍ଛ ଦେଇଥିଲେ । ଭାରତଯୁଦ୍ଧର ଅବ୍ୟବହିତ ପୂର୍ବରୁ ଭୀମ ତଥା ବୃକୋଦର ହନୁମାନଙ୍କୁ ନିମନ୍ତ୍ରଣ କରିବାକୁ ଯାଇଥିଲେ; କିନ୍ତୁ ଦୁଃଖର ବିଷୟ ବା ସୁଖର ବିଷୟ ହେଉ ସେହି ସପ୍ତଶୃଙ୍ଗ ବଳଧାରୀ ଭୀମସେନ ହନୁମାନଙ୍କର ଲାଙ୍ଗୁଡ଼ଟି ସମସ୍ତ ବଳ ପ୍ରୟୋଗ କରି ମଧ୍ୟ ଉଠାଇ ପାରି ନ ଥିଲେ । ଫଳରେ ସେ ତାଙ୍କର କାଛଟା ଚିର ନନ୍ଦିଘୋଷ ରଥରେ ପତାକା କରିବାକୁ ଦେଇଥିଲେ । ପୁରାଣ କଥିତ ଏଇ ବିସମ୍ବାଦ ଯେଉଁପରି ସତ୍ୟତାର ପ୍ରମାଣ ଦିଏ ସେହିପରି ଲୋକମାନଙ୍କ ଧାରଣା ହନୁମାନ ଶ୍ୟାମ ଓ ଶ୍ୟାମାଙ୍କଠାରେ ଶ୍ରୀରାମଙ୍କର ରୂପଦର୍ଶନ କରି ଏ ପୀଠ ବହୁ ଯୁଗରୁ ମଣ୍ଡନ କରି ଆସୁଛନ୍ତି । ମାଲ୍ୟଗିରି ଏହି ସ୍ଥାନଠାରୁ ବିଶେଷ ଦୂର ନ ହେଲେ ହେଁ ପବନ ନନ୍ଦନ ହନୁମାନ ପକ୍ଷେ ଅତି ନିକଟତର । ସେହି ବିଶ୍ୱରୂପୀ ହନୁମାନ ଶ୍ୟାମ ବା ଶ୍ୟାମାଙ୍କ ଭିତରେ ତଥା ଜଗନ୍ନାଥ ବା କାଳୀଙ୍କ ମଧ୍ୟରେ ଶ୍ରୀରାମ-ଚନ୍ଦ୍ରଙ୍କର ରୂପ ଦର୍ଶନ କରିବା ଉଦ୍ଦେଶ୍ୟରେ ତାଙ୍କର ଅତି ପ୍ରିୟ ନିକଟତମ ତଦାନୀନ୍ତନ ମାଲ୍ୟବନ୍ତ (ଆଜିକାଲିକା ମାଲ୍ୟଗିରି)ରୁ ଆସି ପ୍ରତିଦିନ ଦର୍ଶନ ଲାଭ କରୁଥିଲେ । ଏଇ ଉକ୍ତି କୌଣସି ପୁରାଣରେ ଲିଖିତ ଆକାରରେ ନ ଥିଲେ ମଧ୍ୟ କୌଣସି ଭକ୍ତ ନିଜ ହୃଦୟ ମଧ୍ୟରେ ଗବେଷଣା କରି ଦେଖିବାକୁ ଇଚ୍ଛା କଲେ ଶ୍ୟାମ ଶ୍ୟାମାଙ୍କର ପାଦତଳରେ ହନୁମାନଙ୍କର ଦର୍ଶନ ପାଇ ପାରିବେ । ଏଣୁ ଏ ପୀଠରେ ହନୁମାନଙ୍କର ଅବସ୍ଥିତି ଅବାଞ୍ଛନୀୟ ନୁହେଁ ।

ଚେଣ୍ଟ କବିଙ୍କ ଭାଷାରେ—ଭକ୍ତ ଦେହ୍ନେ ବାନ୍ଧେ ଭଜନ ଡୋରରେ
ଭଗବାନ ଚେହ୍ନେ ବନ୍ଧା ଭକ୍ତ ଡୋରେ ।

ଏଇ ଉକ୍ତିର ପ୍ରମାଣ ଏ ପୀଠରେ ହନୁମାନଙ୍କର ଅବସ୍ଥିତ ଦ୍ୱାରା ହିଁ ସମ୍ଭବ । ଏହି ସିଦ୍ଧମଠର ନିକଟ ଆଗକୁ ଅଗେଇ ଗଲେ କେହି ଦର୍ଶକ ମଧ୍ୟ ପ୍ରଲମ୍ବଝଙ୍ଗ ଖୋଲା ମହେଶଙ୍କର ଏକ ଭଗ୍ନାବଶେଷ ରୂପ ପାଇ ପାରିବ । ଯେଉଁ ସ୍ଥାନ ଆଜିକାଲି ଚଉବଛା ନାମରେ ବିଦିତ ସେହି ସ୍ଥାନରୁ ଗୋଟିଏ କ୍ଷୁଦ୍ର ଝରଣା କୁଳୁକୁଳୁ ଶବ୍ଦ କରି ଶଙ୍କରଙ୍କର ପଦ ଧୌତ କରୁଅଛି । ଏହି ସ୍ଥାନ ଅନେକ ଦିନ ତଳରୁ ତଥା ରାଜବଂଶ ଲୋପପାଇବା ପୂର୍ବରୁ ଅକର୍ମଣିଲା ପଥର ସଦୃଶ ପଡ଼ି ରହିଥିଲା । କେତେକଙ୍କ ମତରେ ଏହି ସ୍ଥାନରେ ସିଦ୍ଧକାଳୀ କେବଳ ପାର୍ବଣ ସମୟରେ ଷୋଡ଼ଶ ଉପଚାରରେ ପୂଜା ପାଉଥିଲେ । କେନ୍ଦୁଝରଗଡ଼ ସହରର ଶ୍ରୀ ମୁରଲୀଧର ଶର୍ମା, ରାମଚନ୍ଦ୍ର ବାରିକ, ଲକ୍ଷ୍ମୀଧର ମିଶ୍ର, ଦମ୍ଭଧର ମିଶ୍ର ପ୍ରଫୁଲ୍ଲ କର, ଭବଗ୍ରାହୀ ପ୍ରମୁଖ ଉତ୍ସାହୀ ଭକ୍ତମାନଙ୍କ ଉଦ୍ୟମରେ ପ୍ରତିବର୍ଷ ଶ୍ରୀରାମନବମୀରେ ବିଶ୍ୱଶାନ୍ତି ଯଜ୍ଞରେ ବହୁଲୋକଙ୍କର ସମାଗମ, ମା' ଓ ବାପାଙ୍କ ଦର୍ଶନ ହେଉଥିଲେ ମଧ୍ୟ କେହି କେବେ ଏ ସ୍ଥାନର ମହାତ୍ମ୍ୟ ଜାଣିବାକୁ ଇଚ୍ଛୁକ ନୁହନ୍ତି । ମୋର ମନ ଭିତରେ ଦୀର୍ଘଦିନ ଧରି ଗୋଟିଏ କନ୍ଦଳ କରୁଛି ଏହା କପରି ଓ କାହିଁକି ସିଦ୍ଧମଠ ନାମରେ ନାମିତ ହେଲା । ଅନେକ ଦିନ ଖୋଜା ଖୋଜି ପରେ ଗୋଟିଏ ଛୋଟିଆ ଇତିହାସ ପାଇ ମୁଁ ପାଠକ ପାଠିକାମାନଙ୍କ ଆଗରେ ବାଢ଼ିବାକୁ ମନସ୍ଥ କରିଛି । ବହୁଯୁଗ ପୂର୍ବରୁ ବିଶ୍ୱରୂପୀ ରାମଭକ୍ତ ହନୁମାନ ଏହି ପୀଠରେ ବାସ କରୁଥିଲେ । ସେ ଏହି ପୀଠରେ ମହାକାଳୀ ଓ ସତ୍ୟଯୁଗ ବର୍ଣ୍ଣିତ ଶ୍ରୀ ଜଗନ୍ନାଥଙ୍କର ଏକରୂପ ମଧ୍ୟରେ ଶ୍ରୀରାମଚନ୍ଦ୍ରଙ୍କର ଦର୍ଶନ ଲାଭକରି ସିଦ୍ଧ ହୋଇଥିଲେ । ଏହି ତଥ୍ୟ ଖୋଜିଲେ କେବଳ ମାତ୍ର ଦ୍ୱାପର ଯୁଗର ପୌରାଣିକ ମତରେ ଶ୍ୟାମ-ଶ୍ୟାମା ମଧ୍ୟରେ ପାର୍ଥକ୍ୟ କମ୍ । ପୌରାଣିକ ତଥ୍ୟ ଦେଇ ଶ୍ୟାମ ଓ ଶ୍ୟାମାଙ୍କ ବିଷୟରେ ବର୍ଣ୍ଣନା କଲେ ଏହା ଏକ ପୁସ୍ତକରେ ପରିଣତ ହେବ ।

ଐତିହାସିକ ପରିବ୍ରାଜକ ହୁଏନ୍ ସାଂ ଦିନେ କଳିଙ୍ଗ ବିଜୟରୁ ଫେରି ସିଦ୍ଧମଠର ଶ୍ୟାମ-ଶ୍ୟାମାଙ୍କ ଦର୍ଶନ କରିଥିବାର ପ୍ରମାଣ ମଧ୍ୟ ମିଳେ । ବାସ୍ତବ ଜଗତର ଅନେକ ମୁନି ଋଷି ଏହି ମନ୍ଦିର ଭିତରେ ଓ ନିକଟରେ ଥିବା ଚଉବଛା ପୀଠରେ ସିଦ୍ଧିଲାଭ କରି ଯୋଡ଼ିଆ ମାଟିରେ ମିଶି ଗଲେଣି । ବହୁ ପୂର୍ବକାଳର ଏହି ମନ୍ଦିରକୁ ଦିନେ କେନ୍ଦୁଝର ମହାରାଜା ସ୍ୱର୍ଗତ ରୁଦ୍ରପ୍ରତାପ ଭଞ୍ଜଦେଓ ରୂପ ଦେଇଥିଲେ ।

ଆଉ ଏକ ପ୍ରମାଣ—ମାଲ୍ୟବନ୍ତ ଅର୍ଥାତ୍ ମାଲ୍ୟଗିରି କେନ୍ଦୁଝରରୁ ପ୍ରାୟ ୬୦ ମାଇଲ ଦୂର ପର୍ବତ କନ୍ଦର ଥରେ ସେହି ସିଦ୍ଧପୁରୁଷ ହନୁମାନଙ୍କର ତାପସ୍ଥଳୀ ଥିଲା । ସେହି ବିପ୍ରରୂପୀ ହନୁମାନ ନିତ୍ୟପ୍ରତି ସିଦ୍ଧକାଳୀଙ୍କର ସନ୍ଧ୍ୟାଦର୍ଶନ ପରେ ଫେରିଯାଇ ମାଲ୍ୟଗିରିରେ ରାମଚରିତମାନସ ଶ୍ରବଣ କରୁଥିଲେ । ଦୀର୍ଘଦିନ ଧରି ଏହି ସିଦ୍ଧ ଶ୍ୟାମାଙ୍କର ବିଶେଷତ୍ୱ କେହି ଉପଲବ୍ଧ କରିପାରୁ ନ ଥିଲେ । ଉକ୍ତ ବର୍ଷର ଶେଷପାଦରେ ଥରେ ବାପ୍ପାବାବା ମଧ୍ୟ ଯୋଗ ସାଧନରେ ବ୍ରତୀ ହୋଇ ହନୁମାନଙ୍କର ସିଦ୍ଧମଠର ସ୍ଥିତି ବିଷୟରେ ଦର୍ଶାଇ ଯାଇଛନ୍ତି ।

ଏବେ କଳ୍ପ ବନ୍ଧୁଜନର ନୀରବତା ଭଙ୍ଗ କରି ସ୍ଥାନୀୟ ଶ୍ରୀ ମୁରଲୀଧର ଶର୍ମା, ଶ୍ରୀ ରାମଚନ୍ଦ୍ର ଦାଶକ ଓ ଶ୍ରୀ ଲକ୍ଷ୍ମୀଧର ମିଶ୍ର ଙ୍କ ତତ୍ତ୍ୱାବଧାନରେ ବିଗତ ୫ ବର୍ଷ ଧରି ବିଂଶାନ୍ତ ମହାଯଜ୍ଞ ସମାପନ କରାଯାଉଛି । ବର୍ଷକରେ ୩ଟି ଦିନ ବନ୍ଧୁ-ଲୋକଙ୍କର ସମାଗମ ହେଉଛି । କେନ୍ଦୁଝରର ସ୍ଥାୟୀ ବାସିନ୍ଦା ବ୍ୟତୀତ ଆଖପାଖ ଗ୍ରାମର ଲୋକମାନେ ଠାକୁର ଠାକୁରାଣୀଙ୍କର ଦର୍ଶନାଭିଳାଷୀ ହେଉଛନ୍ତି । ଏହି ମହାଯଜ୍ଞ ଗତ ୩ ବର୍ଷ ହେଲା ସାଧୁ ବୈରାଗୀ ବାବାଙ୍କ ଦ୍ୱାରା ସମ୍ପାଦନ କରାଯାଉଛି । ଏ ସ୍ଥାନର ବିଶେଷତ୍ୱ ଏହି ଯେ ସନ୍ଧ୍ୟାହେବା ମାତ୍ରେ ଜଙ୍ଗଲ ଭିତରୁ ମୁରଲୀର ସ୍ୱନ ଭାସିଆସେ । ପରେ ପରେ ସିଦ୍ଧଜନନୀଙ୍କର ଆବିର୍ଭାବ ହୁଏ । ମୃଦୁମନ୍ଦ ପବନରେ ଜଙ୍ଗଲର ଗଛଲତା ଗୁଳ୍ମ ପଲ୍ଲବିତ ହୁଏ—ରାମଭକ୍ତ ହନୁମାନଙ୍କର ଆବିର୍ଭାବ ହୁଏ ଶୂନ୍ୟ ମାର୍ଗରେ । ଅଧରାତି ବେଳକୁ ସବୁ ଶୂନ୍‌ଶାନ ହୋଇଯାଏ । ଶ୍ରୀଯୁକ୍ତ ରାମବାବା ଓ ଆଉ କେତେଜଣ ସନ୍ନ୍ୟାସୀ ଏହା ନିଜ କାନରେ ଶୁଣି ବର୍ଣ୍ଣନା କରିଛନ୍ତି । ଏବେ ମଧ୍ୟ ପାର୍ବଣରେ ଶ୍ୟାମାଙ୍କ ମନ୍ଦିରରେ ଗ୍ରୁରବଳି ପରେ ନାଗସାପ ଶକ୍ତ ନିକଟରୁ ବାହାରି ଦୁଗ୍ଧପାନ ସଦୃଶ ଗ୍ରୁରରକ୍ତ ପାନକରି ନିଜ ସ୍ଥାନକୁ ଫେରି-ଯାଏ । ପୂଜକମାନେ ଏହା ମଧ୍ୟ ସ୍ୱ ଚକ୍ଷୁରେ ଦେଖିଛନ୍ତି । ସୌଭାଗ୍ୟର ବିଷୟ ଅନେକ ଦିନ ପରେ ସିଦ୍ଧମଠର ମହାତ୍ମ୍ୟ ଲୋକଲୋଚନର ଗୋଚରକୁ ଆସି ପାରିଛି । ଶ୍ରୀଯୁକ୍ତ ଶର୍ମା, ଶ୍ରୀ ରାମ ଦାଶକ ଓ ଆଉ କେତେଜଣ ବଦାନ୍ୟ ଓ ଭକ୍ତିରସାତ୍ମକ ଭଦ୍ରବ୍ୟକ୍ତିଙ୍କର ସାଧୁ ଉଦ୍ୟମରେ ଏହି ମଠ ଚିରନ୍ତନ ହୋଇରହୁ ଏହା ହିଁ ମୋର କାମନା ।



# କୁଶଳେଶ୍ୱର

କିମ୍ବଦନ୍ତୀ ଅଛି ଯେ ବ୍ରହ୍ମା ବୈତରଣୀ ନଦୀ କୂଳେ କୂଳେ କୋଟିଲିଙ୍ଗ ସ୍ଥାପନା କରି ସବୁ ଯୁଗରେ ପରିଚିତ; କିନ୍ତୁ କଟକ ଜିଲ୍ଲା ନିକଟବର୍ତ୍ତୀ କେନ୍ଦୁଝର ଜିଲ୍ଲାର ଶେଷ ସୀମାରେ ଆଉ ଗୋଟିଏ ଶିବଲିଙ୍ଗ ଅନେକଦିନ ଆଗରୁ କୁଶଭଦ୍ରା (କୁଶେଇ) ନଦୀର ଗର୍ଭ ଭିତରେ ପ୍ରତିଷ୍ଠିତ । ନଦୀର ଧାର ପରିବର୍ତ୍ତନ ଫଳରେ ମନ୍ଦିର ପଥରବନ୍ଧର ଏ ପାଖରେ ଅବସ୍ଥିତ । ପ୍ରମାଣ କିନ୍ତୁ ଏହି ବିଷୟରେ କିଛି ନ ଥିଲା ପରି ମନେହୁଏ । ଏ ଶିବଲିଙ୍ଗ—ଲିଙ୍ଗ ସଦୃଶ ନ ହେଲେ ମଧ୍ୟ ସେହି ନୂତନ ପଥରରେ ଭୁବନେଶ୍ୱରର ଲିଙ୍ଗରାଜ ସଦୃଶ ଖୁବ୍ ସ୍ଥୂଳକାୟ । ସ୍ଥାନୀୟ ବୟସ୍କ ଲୋକମାନଙ୍କଠାରୁ ଜଣାପଡ଼େ କେଶରୀ ବଂଶୀୟ ଯଯାତିକେଶରୀ ଏ ମୂର୍ତ୍ତି ଦ୍ୱାଦଶ ଶତାବ୍ଦୀରେ ଏଠାରେ ସ୍ଥାପନା କରି, ମନ୍ଦିର ନିର୍ମାଣ କରି ମହାଦେବଙ୍କୁ ପ୍ରତିଷ୍ଠା କରାଇଥିଲେ ଏବଂ ଗୋଟିଏ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରାଇଥିଲେ । ମନ୍ଦିରର ନିର୍ମାଣ କାର୍ଯ୍ୟରୁ ଅନୁମିତ ହୁଏ ଯେ ଏହା ଏ ଯୁଗର ନିର୍ମାଣ କାର୍ଯ୍ୟ ନୁହେଁ । ଏହା ଭଞ୍ଜବଂଶୀ ରାଜାଙ୍କ ଦ୍ୱାରା ନିର୍ମିତ ହୋଇଛି । କେନ୍ଦୁଝର ଇତିହାସରୁ ଜଣାପଡ଼େ ଏହାର ମୁଖଶାଳା ଓ ପାର୍ଶ୍ୱ ମନ୍ଦିର ସ୍ୱର୍ଗୀୟ ଧନୁର୍ଜ୍ଜୟ ଭଞ୍ଜ ମହାରାଜା ନିର୍ମାଣ କରିଥିଲେ । ସେ ମହୋଦୟ ମଧ୍ୟ ଏହି କୁଶଭଦ୍ରା ନଦୀ ଗର୍ଭରେ ଗୋଟିଏ ପ୍ରସ୍ତରବନ୍ଧ ନିର୍ମାଣ କରି ମହାଦେବ ମନ୍ଦିର ତଥା ଏହି ଜନବହୁଳ ଗ୍ରାମଟିକୁ ନଦୀ ଗର୍ଭରୁ ରକ୍ଷା କରିଥିଲେ । ଏହି ଗ୍ରାମଟି ପ୍ରତିଷ୍ଠିତ କୁଶଳେଶ୍ୱରଙ୍କ ନାମରେ ନାମିତ ନ ହୋଇଥିଲେ ମଧ୍ୟ ଦେଓଗାଁ ନାମରେ ପରିଚିତ । ଏଠାରେ ଏହି କୁଶଳେଶ୍ୱରଙ୍କ ଖ୍ୟାତି କୋଟି ମୁଖରେ ମୁଖରିତ । ଏହି ଦେବଦେବ ମହେଶ୍ୱରଙ୍କଠାରୁ ବହୁଲୋକ ବରପ୍ରାପ୍ତ ହୋଇ ରୋଗମୁକ୍ତ ହୋଇ ପାରିଛନ୍ତି ।

ଏହି ମନ୍ଦିରର ବିଶେଷତ୍ୱ ନିର୍ଭର କରେ ମନ୍ଦିର ଦୁଆରର ବାସୁଆ ବଳଦର ଦର୍ଶନରେ । ଏଠିକାର ବାସୁଆ ବଳଦ ଏକ ଦର୍ଶନୀୟ ସୂକ୍ଷ୍ମପ୍ରସ୍ତର କାରୁକାର୍ଯ୍ୟ ଗଢ଼ା ଏକ ବିରାଟ ପ୍ରସ୍ତର ମୂର୍ତ୍ତି । କେନ୍ଦୁଝର ଜିଲ୍ଲାରେ ଏହାଂକପରି (ବାସୁଆବଳଦର ମୂର୍ତ୍ତି) କେଉଁଠି ନାହିଁ । ମନ୍ଦିର ସାମ୍ନାର ମୁଖଶାଳାରେ ପ୍ରାଚୀନ ଯୁଗର ଏକ ବଡ଼ ନାଗରା (ବଡ଼ଢୋଲ) ଏବେ ବି ମଧ୍ୟ ମଣ୍ଡନ କରୁଛି । ବିପରୀତ ପାର୍ଶ୍ବରେ ଗୋଟିଏ ପାଣିବାମ୍ଫି ଅର୍ଥାତ୍ ଅର୍ଦ୍ଧ ନିର୍ମିତ କୂପ ଖଣ୍ଡିକ ଆନନ୍ଦ ମନରେ ଜନ ଗହଳିକୁ ସ୍ୱାଗତ ଜଣାଇ ଆସୁଅଛି ।

ମୁଖ୍ୟ ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ କାର୍ତ୍ତିକେୟ ଓ ଗଣେଶଙ୍କ ମୂର୍ତ୍ତି ମଣ୍ଡନ କରୁଛି । ଏମାନଙ୍କର ଗଢ଼ିବାର କାରୁକାର୍ଯ୍ୟତା ଦର୍ଶନୀୟ—କାର୍ତ୍ତିକେୟ ଗୋଟିଏ ମୟୂର ପାଖରେ ଦଣ୍ଡାୟମାନ; କିନ୍ତୁ କୁକ୍କୁଟ ସଦୃଶ ଏକ ପକ୍ଷୀ ହାତରେ ଧରି ଛିଡ଼ା ହୋଇଛନ୍ତି । ଗଣେଶ ଏଠି ଅଷ୍ଟଭୁଜା । ଆଉ ଏକ ଭୈରବ ମୂର୍ତ୍ତି ଏକ ପାଦରେ ଛିଡ଼ାହୋଇ ଆଗନ୍ତୁକଙ୍କର ମନହରଣ କରୁଛନ୍ତି । ବୁଦ୍ଧ ଯୁଗର ଗୋଟିଏ ମୂର୍ତ୍ତି ମଧ୍ୟ ଏଠାରେ ପ୍ରତିଷ୍ଠିତ । ପୂଜାପଣ୍ଡାମାନଙ୍କ ଭାଷାରେ ଏହା ପଦ୍ମକେଶରୀ । ଏହି ମୂର୍ତ୍ତିଗୁଡ଼ିକ ଉପରେ ଗବେଷଣା କରିବାକୁ ଚେଷ୍ଟା କରୁଅଛି ।

ମୁଖଶାଳା ନିକଟରେ ଆଉ ଏକ ଅଦ୍ଭୁତ ଜିନିଷ ଯାହାକି ମୁକ୍ତିମଣ୍ଡପ ହିସାବରେ ପରିଚିତ । ଶିବ ମନ୍ଦିର ନିକଟରେ ମୁକ୍ତିମଣ୍ଡପର ଅର୍ଥ କ'ଣ ହୋଇ-ପାରେ ଜାଣିବାକୁ ଇଚ୍ଛା ଥିଲେ ମଧ୍ୟ କୌଣସି ସନନ୍ଦ ବା ତାମ୍ରପତ୍ର ଅଭାବରେ ଏହାକୁ ଅପୂର୍ଣ୍ଣାଙ୍ଗ କରି ରଖିଦେଲି ।

ଶ୍ରୀ କୁଶଳେଶ୍ୱର ମହାଦେବଙ୍କ ସମ୍ମୁଖରେ ଗୋଟିଏ ବଉଳ ଗଛ ଯେତିକି ସୌନ୍ଦର୍ଯ୍ୟ ବଢ଼ାଇ ଦେଉଛି, ତା'ଠାରୁ ଅପର ପାଖରେ ଗୋକର୍ଣ୍ଣିକା ବଟ ବୃକ୍ଷଟି ବହୁ ଦିନରୁ ରହି ମନ୍ଦିରର ଶ୍ରୀ ବର୍ଦ୍ଧନ କରୁଛି । କିମ୍ବଦନ୍ତୀରୁ ଜଣାପଡ଼େ ଏହି ବୃକ୍ଷଟିର ଶ୍ରେଷ୍ଠ ଅବସ୍ଥାରେ କେହି ମହାନ ବ୍ୟକ୍ତି ଜଣେ ଏହାକୁ କାଶୀର ପବିତ୍ର ପୀଠରୁ ଆଣି ଏହି ଶଂକରଙ୍କ ମନମୁଗ୍ଧ କରିବାକୁ ଲଗାଇ ଯାଇଛନ୍ତି । ଏହାର ବିଚିତ୍ରତା ଏହି ଯେ ଏହାର ପତ୍ରଗୁଡ଼ିକ ଠିକ୍ ଗାଈର କାନ ସଦୃଶ ମନେହୁଏ ଏବଂ ଜନମୁଖରେ ଏହି ବୃକ୍ଷ ତିନିଶହ ବର୍ଷରୁ ଅଧିକ ହେଲାଣି । ଏହା କୁଶଳେଶ୍ୱରଙ୍କ ପାଖରେ ରହି ତାଙ୍କର ଆଶୀର୍ବାଦ ଲଭ କରି ଅଦ୍ୟାବଧି ଯୁବକ । ସେହି ପରମାତ୍ମା ଶଂକର ତାଙ୍କୁ ଆଶୀର୍ବାଦ ଦେଇ ଆଥାନ୍ତି ।

କୁଶଭଦ୍ରା ନଦୀ ଶ୍ରୀ କୁଶଳେଶ୍ୱରଙ୍କ ପାଦ ଧୌତ କରି ପୁଣ୍ୟତୋୟା ବୈତରଣୀରେ ମିଶି ଯାଇଛି । ~~କୁଶଭଦ୍ରାର~~ ପ୍ରକୋପରୁ ରକ୍ଷା କରିବାପାଇଁ

କେନ୍ଦୁଝରର ରାଜା (ଧନୁର୍ଜୟ ଭଞ୍ଜଦେଓ) ଏହି ପଥର ବନ୍ଧଟି ତିଆରି କରି ଯାଇଥିଲେ । ଏହାର ସାମୟିକ ମରାମତି ବନ୍ଦହେବାରେ ଏହି ପଥର ବନ୍ଧର ଅବସ୍ଥା ଖରାପ ଅଡ଼କୁ ଗତି କରୁଅଛି । ଜନସାଧାରଣଂକର ଓ ଠାକୁରଂକ ରକ୍ଷଣାବେକ୍ଷଣ ନିମିତ୍ତ ସରକାର ବାହାଦୂର ଏହାର ମରାମତି ଭାରନେବା ଏକାନ୍ତ ଆବଶ୍ୟକ ।

## ବ୍ରହ୍ମେଶ୍ୱର

ବଡ଼ତ ଲୀଳା ସେହି ତ୍ରିଲୋଚନଙ୍କର । ସ୍ୱର୍ଗଗଙ୍ଗା ଅର୍ଥାତ୍ ଜାହ୍ନବୀଙ୍କୁ ଭଗୀରଥ ଆଣିଥିଲେ । ସେ କି ବିଷ୍ଣୁଙ୍କ ପାଣିପଦ୍ମଙ୍କଠାରୁ ଶ୍ରୁତ । ପୃଥିବୀ ପୃଷ୍ଠରେ କୌଣସି ପର୍ବତ ବା ସ୍ଥାନ ନାହିଁ ସେ କି ଗଙ୍ଗାଙ୍କର ସ୍ରୋତକୁ ମୁଣ୍ଡେଇ ନେଇ ପାରିବ ବା ଝିଲେଇ ନେଇ ପାରିବ । ଫଳରେ ଭଗୀରଥ ଶିବଙ୍କୁ ଆରାଧନା କରି ସନ୍ତୁଷ୍ଟ କରିଥିଲେ । କୈଳାଶପତି ଶଙ୍କର ଗଙ୍ଗାଙ୍କର ସେହି ଅତଡ଼ାଯ୍ୟ ସ୍ରୋତକୁ ନିଜ ମସ୍ତକରେ ଧାରଣ କରି ରଖିଥିଲେ । ସେହିମତି ଗୁପ୍ତଗଙ୍ଗା-ବୈତରଣୀ ଗୋବୃମୁଣ୍ଡ ସ୍ପର୍ଶ କରି ଅପବିତ୍ର ହୋଇ ଗୁପ୍ତ ହୋଇଗଲେ । ପଞ୍ଚମୁଖୀ ବ୍ରହ୍ମାଙ୍କ ଆରାଧନାରେ ଶଙ୍କର ପ୍ରୀତ ହୋଇ ବୈତରଣୀକୁ ତାଙ୍କ ପାଦତଳେ ଶ୍ରୁତ କରାଇ-ଥିଲେ । କେତେକଙ୍କ ମତରେ ପୌରାଣିକ ଯୁଗ ପୂର୍ବରୁ ବ୍ରହ୍ମେଶ୍ୱର ଗୋନାସିକା ପର୍ବତର ପାଦଦେଶରେ ବିରାଜମାନ କରିଥିଲେ । ବ୍ରହ୍ମେଶ୍ୱରଙ୍କୁ ସନ୍ତୁଷ୍ଟ କରି ବ୍ରହ୍ମା ତାଙ୍କୁ ସେଠାରେ ପ୍ରତିଷ୍ଠା କରିଥିଲେ । ତାଙ୍କ ପାଦତଳୁ ବୈତରଣୀ ବାହାରି ବ୍ରହ୍ମେଶ୍ୱର କୁଣ୍ଡରୁ ଜଳର ଧାର ନେଇ ନିମ୍ନଗାମୀ ହୋଇଥିଲେ ।

## ଚନ୍ଦ୍ରଶେଖର

ଅଣୁ ବେଗୀସ୍ତୁ ସଦର ମହକୁମାରେ ବୈତରଣୀ କୂଳରେ ଏହାଙ୍କୁ ବ୍ରହ୍ମା ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ବୈତରଣୀ କୂଳରେ ଷୋଳଲିଙ୍ଗ ସ୍ଥାପନ କରିଥିଲେ ।

## ଝାଡ଼େଶ୍ୱର

ଅନ୍ୟ ଷୋଳଲିଙ୍ଗଙ୍କ ମଧ୍ୟରେ ଏ ଏ ଶୀର୍ଷ ସ୍ଥାନ ଲଭ କରିଛନ୍ତି । ଏହାଙ୍କର ଆବିର୍ଭାବ ଅଲୌକିକ । କିମ୍ବଦନ୍ତୀ କହେ ଜଣେ କାଠୁରିଆ ଗଛ କାଟୁ କାଟୁ ଏହାଙ୍କ ମସ୍ତକରେ କୁରାଢ଼ୀ ଚୋଟ ବସିଥିଲା । ଫଳରେ ଏହାଙ୍କ ମସ୍ତକ ଦେଶରେ କୁରାଢ଼ୀ (ଟାଙ୍ଗିଆ)ର ଚୋଟ ଦାଗ ଅଦ୍ୟାବଧି ବିଦ୍ୟତ । ଜନମତ କହେ ଝାଡ଼େ-

ଶ୍ୱର ଏକ ପ୍ରତ୍ୟକ୍ଷ ମହାଦେବ । ଅନ୍ୟ ସ୍ଥାନର ଶଙ୍କରଙ୍କଠାରୁ ଭିନ୍ନ ଧର୍ମୀ । ଭକ୍ତର ଆର୍ତ୍ତ ଡାକ ସେ ଚନ୍ଦନ ମଧ୍ୟରେ ଶୁଣିପାରି ଆନନ୍ଦ ଚିତ୍ତରେ ବରଦାନ କରନ୍ତି । ଦୁମାମ ଦମାମ ଭଳି ଦୁଇଟି ନାଗସାପ ଏହାଙ୍କର ଶକ୍ତି ମଣ୍ଡନ କରିବାରେ ବହୁ ବ୍ୟକ୍ତି ବା ଭକ୍ତ ଦେଖିବାର ସୁଯୋଗ ପାଇଅଛନ୍ତି ।

## ବାଲୁଙ୍କେଶ୍ୱର

କେନ୍ଦୁଝର ସଦର ମହକୁମାରେ ପ୍ରଳୟଙ୍କରୀ ଶଙ୍କର ବଡ଼ଶାସନ ଗ୍ରାମ ଅରମ୍ଭରେ ରହି ପୂଜା ପାଉଛନ୍ତି । ଏ ଶକ୍ତି ମଧ୍ୟ ଆନନ୍ଦପୁରର ଝାଡ଼େଶ୍ୱରଙ୍କ ସଦୃଶ । ଏ ମଧ୍ୟ ପ୍ରତ୍ୟକ୍ଷ ଦେବତା । ଏହାଙ୍କର ଅନେକ ଭୂସମ୍ପତ୍ତି ରହିଅଛି ।

ଏଇ କେନ୍ଦୁଝର ବୌଦ୍ଧ ଯୁଗର ପୂର୍ବରୁ ଓ ପରେ ମଧ୍ୟ ଶୈବପୀଠ ରୂପେ ପରିଚିତ । ଏ ମାଟିର ଅଧିକାଂଶ ଲୋକ ଶକ୍ତି ବା ଶିବ ଉପାସକ । ପ୍ରମାଣ ସ୍ୱରୂପ ଅଧିକାଂଶ ଗ୍ରାମରେ ଶିବଙ୍କର ମନ୍ଦିର କାଳ କାଳ ଧରି ଶୋଭା ପାଉଅଛି ।



# ଜୁଆଙ୍ଗ ସଂସ୍କୃତି

ଭାରତ ଭୂଖଣ୍ଡର ପାର୍ବତ୍ୟ ଅଞ୍ଚଳରେ ଆମର ଆଦିବାସୀ ସଂଖ୍ୟା ୧୯୭୧ ଜନସୁମାରି ଅନୁଯାୟୀ ୩୮ ଅଯୁତ। ଏହା ସମସ୍ତ ସମ୍ପ୍ରଦାୟର ୬.୯୪ ପରସେଣ୍ଟ ! ଗବେଷଣା କରି ଦେଖାଯାଇଛି ପୃଥିବୀ ପୃଷ୍ଠରେ ଆଫ୍ରିକା ଅଞ୍ଚଳରେ ଏମାନେ ସଂଖ୍ୟାଗରିଷ୍ଠତା ଲାଭ କରିଛନ୍ତି । ଆମ ଦେଶର ଆଦିବାସୀମାନେ ସ୍ୱଳ୍ପ ଜାତି ଚରଣରେ ବହୁମୁଖୀ । କୋରାପୁଟ, ଫୁଲବାଣୀ ଅଞ୍ଚଳରେ ଆଦିବାସୀଙ୍କ ସଂଖ୍ୟା କେନ୍ଦୁଝର, ମୟୂରଭଞ୍ଜ ଓ ଅନ୍ୟ କେତେକ ବନ ପାହାଡ଼ଘେରା ଜିଲ୍ଲାମାନଙ୍କ ଅପେକ୍ଷା ଅଧିକ । ଏମାନଙ୍କ ଭିତରେ ମଧ୍ୟ କେତେକ ଜଙ୍ଗଲ ଜାତ ଫଳମୂଳ ଭୋଗୀ ଶିକାର ପ୍ରିୟ । ଅନେକ ଆଦିବାସୀ ବସତି ସହରାଞ୍ଚଳର ଦୂରରେ । ଆମର ଓଡ଼ିଶାରେ ଥିବା ଆଦିବାସୀମାନଙ୍କ ଅପେକ୍ଷା ବିହାରର କେତେକ ପ୍ରଗଣାରେ ବାସ କରୁଥିବା ଆଦିବାସୀମାନେ ଅଧିକ ଉନ୍ନତ । ଏମାନଙ୍କର ଚାଲିଚଳନ ଓ ଶିକ୍ଷା ଦୀକ୍ଷା ଆମ ରାଜ୍ୟର ଆଦିବାସୀମାନଙ୍କଠାରୁ ଉଚ୍ଚକୋଟୀର । ଆମ ଓଡ଼ିଶା ପ୍ରଦେଶରେ ସବୁଠାରୁ ବେଶୀ ଅନୁନ୍ନତ ଜୁଆଙ୍ଗ, ସାନ୍ତାଳ, ଖନ୍ଦ, ହୋ ଓ କୁଇ । ସେମାନଙ୍କ ମଧ୍ୟରେ ଆମର କେନ୍ଦୁଝର ଜିଲ୍ଲାରେ ବାସ କରନ୍ତି ଜୁଆଙ୍ଗମାନେ । ଏମାନଙ୍କର ଚଳଣୀ ଏତେ ସରଳ ଯେ ଏମାନଙ୍କ ପାଇଁ ଫିରିଙ୍ଗି ତଥା ବିଦେଶୀ ଶାସନ ଦିନେ ଥିଲା ସୁପ୍ତ । ଇଂରେଜ ଶାସନ କାଳରେ ଶାସକମାନେ ସେମାନଙ୍କୁ ଏକୁଟିଆ ରହିବାକୁ ଛାଡ଼ି ଦେଉଥିଲେ । ଆମର ଏହି କେନ୍ଦୁଝରର ଭୂତପୂର୍ବ ରାଜା ମହାରାଜାମାନେ ମଧ୍ୟ ଏମାନଙ୍କ ଉପରେ କୌଣସି ରକମ ନିର୍ଯ୍ୟାତନା ବା ସେମାନଙ୍କ

ଠାରୁ କୌଣସି କର ଦେଉ ନ ଥିଲେ କି ଖୁପ ପକାଉ ନ ଥିଲେ । ଆମର ଏହି କେନ୍ଦୁଝର ଜିଲାର ପ୍ରଥମ ଆଦିବାସୀ ଜୁଆଙ୍ଗମାନେ Austro Assiatic ହେବାରି କେତେକ ଗବେଷକ ମତ ଦେଇଛନ୍ତି । ଏମାନଙ୍କ ପୋଷାକ ପରିଚ୍ଛଦ ଉପରେ ଅନେକ ଲେଖକ ଲେଖିଯିବା ପରେ ମୋର ଲେଖିବାର ବିଶେଷ କିଛି ପ୍ରୟୋଜନ ନାହିଁ ।

କେନ୍ଦୁଝର ଜିଲାରେ ଏମାନଙ୍କର ବାସସ୍ଥଳୀ ଗୋନାସିକା ଓ ଗନ୍ଧମାଦନ ପର୍ବତର ପାଦଦେଶରେ । ଯାହା ଜିଲାରେ ବାଂଶପାଳ, ହରିଚନ୍ଦନପୁର, ଘଟଗାଁ ଓ ତେଲକୋଇ ବ୍ଲକ୍ ଅଞ୍ଚଳରେ ମାତ୍ର ୧୬୪ଟି ଗ୍ରାମରେ ତଥା ପର୍ବତର ପାଦଦେଶରେ ୧୨୭୨୪ ଜୁଆଙ୍ଗ ୬୭୨୦ଟି ପରିବାର ମଧ୍ୟରେ ବସବାସ କରୁଛନ୍ତି । ଜୁଆଙ୍ଗ ସ୍ତ୍ରୀମାନଙ୍କର ଉଚ୍ଚତା ବେଶୀ ନୁହଁ; କିନ୍ତୁ ସ୍ୱାସ୍ଥ୍ୟବନ୍ତ । ଗୋଡ଼ରେ ସିଲଭରବାଙ୍କିଆ (ପାଉଞ୍ଜି) ହାତରେ ଖଡ଼ୁ ସଙ୍ଗରେ ସିଲଭର କାଚକୁ ଏମାନେ ବେଶୀ ପସନ୍ଦ କରନ୍ତି । ଏମାନଙ୍କ ସ୍ତ୍ରୀମାନଙ୍କର ଧାରଣା (Superstition) ପୋହଳା ମାଳ ବା ଗୁଞ୍ଜ ମାଳ ବେକରେ ଥିଲେ ଏମାନଙ୍କୁ ବାଘ ଖାଇବ ନାହିଁ ବା ଶତ୍ରୁ ଆକ୍ରମଣ କରିବ ନାହିଁ । ସେଥିପାଇଁ ଜୁଆଙ୍ଗ ସ୍ତ୍ରୀମାନେ ପୋହଳା ମାଳ ବେକରେ ଭୂଷଣ କରି ପିନ୍ଧନ୍ତି । ମୋଟା ଲୁଗା ଏମାନଙ୍କର ପରିଧାନ । ଏମାନଙ୍କ ପିନ୍ଧିଲା ଲୁଗା ଏମାନେ ସଫା ନ କରିବାର କାରଣ ମଧ୍ୟ ଠିକ୍ ସେହିପରି । ଏମାନେ ପାହାଡ଼ର ନିମ୍ନଦେଶରେ କୁଡ଼ିଆ କରି ରହିବାକୁ ଭଲ ପାଆନ୍ତି । ନାକରେ ସିଲଭର୍ ବସଣି ବା ଫାଶିଆ ଓ କାନରେ ସିଲଭର ଫୁଲ ପିନ୍ଧିବାକୁ ଭଲ ପାଆନ୍ତି । ମୁଣ୍ଡରେ କିନ୍ତୁ ଗୋଜକାଠି ସାଙ୍ଗରେ କାଦୁଅ ମଞ୍ଜୀ (ଜଙ୍ଗଲ ଜାତୀୟ ଫୁଲ) ଏମାନଙ୍କର ଅତି ଆଦରର ଜିନିଷ । ଏମାନଙ୍କର ନାକ ଚେପେଟା ହେଲେ ମଧ୍ୟ ଏମାନଙ୍କର ମୁହଁର ଗଠନ ସୁନ୍ଦର । କାଦୁଅ ବୋଳା ଲୁଗା ପିନ୍ଧିଲେ ମଧ୍ୟ ଦେଖିବାକୁ ଅସୁନ୍ଦର ନୁହଁନ୍ତି; କିନ୍ତୁ ଏମାନେ ପରିଶ୍ରମ କାତର । ଆଜିକାଲି ଜୁଆଙ୍ଗ ସ୍ତ୍ରୀମାନେ ବଣରୁ କାଠ ଆଣି ବଜାର ସହରରେ ବିକ୍ରୀ କରି ଜୀବିକା ନିର୍ବାହ କରୁଛନ୍ତି । ବନ ସମ୍ପଦ ଅର୍ଥାତ୍ ଦାମୀ କାଠ ଜୁଆଙ୍ଗମାନେ ମଧ୍ୟ ବିକ୍ରିସ୍ତ କରି ଚଳିବାର ସୁଯୋଗ ଆବହମାନ କାଳରୁ ପାଇ ଆସିଛନ୍ତି ।

ଏମାନେ ପାହାଡ଼ ଦେଶରେ ବସବାସ କରନ୍ତି । ଏମାନଙ୍କ କୁଡ଼ିଆ ଘରଦ୍ୱାର । ୨୪ଟା ପଣସ ଓ ଆମ୍ବଗଛ ନିଶ୍ଚୟ ରଖିଥାନ୍ତି । ଘର ପାଖରେ ବାଜରା, ମକା ଉତ୍ପନ୍ନ କରିବାକୁ ଖଣ୍ଡେ ବାଡ଼ି ତିଆରି କରନ୍ତି । କାରଣ ଏମାନେ

ସବୁ ସମୟରେ ଭାତ ଖାଇବାକୁ ଭଲ ପାଆନ୍ତି । ପୋଡ଼ୁ ଚାଷରୁ ଧାନ ଅମଳ କରି ଚୂଡ଼ିଆ ବାନ୍ଧ ବର୍ଷା ଦିନରେ ଖାଇବାପାଇଁ ସଞ୍ଚୟ କରି ରଖିଦିଅନ୍ତି । ପ୍ରକୃତି ସାଙ୍ଗରେ ଏମାନେ ଜଡ଼ିଯାଇ ପ୍ରାକୃତିକ ଫଳ ଭୋଗ କରିବାକୁ ଚାହାଁନ୍ତି । ଜୁଆଙ୍ଗମାନେ ନିରଳସ ଜୀବନ ଭିତରେ ମଣ୍ଡଘରେ ଧୂନି ପାଖରେ ବହୁ ସମୟ କଟାଇଥାନ୍ତି । ଧୂନି ପାଖରେ ବୁଢ଼ା, ଟୋକା, ଛୁଆମାନେ ପ୍ରାୟ ଲଙ୍ଗଳା ବା ଅର୍ଦ୍ଧ ଲଙ୍ଗଳା ବେଶରେ ଥାନ୍ତି । ଏମାନେ ଗୃହପାଳିତ ଜନ୍ତୁ ଭିତରେ ଛେଳି, କୁକୁଡ଼ା, ଘୁଷୁରି ରଖିବାକୁ ଭଲ ପାଆନ୍ତି । ଏ ଜାତିର ଅବିବାହିତା ଯୁବତୀ ଝିଅମାନେ କୁଡ଼ିଆ ଘରେ ଶୁଅନ୍ତି ଓ ଯୁବକମାନେ ବୁଢ଼ାମାନଙ୍କ ସାଙ୍ଗରେ ମଣ୍ଡଘରେ ରାତି କଟାନ୍ତି । ପର୍ବପର୍ବାଣୀରେ ଏମାନେ ଚାଙ୍ଗୁ ନାଚରେ ବୁଡ଼ି ରହନ୍ତି । ଏମାନଙ୍କ ଭିତରେ Yaws ନାମକ ରୋଗ ସଂକ୍ରମିତ ହୋଇ ରହେ । ଏହି Yaws ରୋଗରେ ଏମାନେ ଶେଷରେ ମୃତ୍ୟୁବରଣ କରନ୍ତି । ଏମାନେ ଶାନ୍ତିର ନିରଳସ ଜୀବନଯାପନ କରିବାକୁ ଭଲ ପାଆନ୍ତି । ସାରା ଉତ୍କଳରେ କେନ୍ଦୁଝର ଜିଲ୍ଲା ଓ ଢେଙ୍କାନାଳ ଜିଲ୍ଲା ଛାଡ଼ିଦେଲେ ଅନ୍ୟ କୌଣସି ଜିଲ୍ଲା ଭିତରେ ଏମାନେ ବସତି ସ୍ଥାପନ କରି ନାହାନ୍ତି । ବାଉଁଶ ନଳି ଭିତରେ, ମାଟି ଠେକି ଭିତରେ ଟଙ୍କା ପଇସା ରଖୁଥିଲେ । ଆଜିକାଲି ଦୁନିଆରେ ଟ୍ରଙ୍କ, ବାକ୍ସ ବ୍ୟବହାର କରି ଶିଖିଲେଣି ।

କେନ୍ଦୁଝର ଖଣିଜ ସମ୍ପଦଭରା ହେଲେ ମଧ୍ୟ ଏମାନେ ଖଣିରେ ପରିଶ୍ରମ କରିବାକୁ ଅନିଚ୍ଛୁକ । ପୂର୍ବକାଳରେ ଚାଷ କରିବାକୁ ଏମାନେ ଭଲ ପାଉ ନ ଥିଲେ । ଜଙ୍ଗଲର ଫଳ ମୂଳ ସଂଗ୍ରହ କରି ଖାଇବାର ସ୍ପୃହା ଏମାନଙ୍କର ଅତ୍ୟଧିକ ଥିଲା । ଗ୍ରାମ ବା ସାହି ଭିତରେ ଗୋଟିଏ ମଣ୍ଡଘର ତିଆରି କରି ଜୁଆଙ୍ଗମାନେ ଆମୋଦ ପ୍ରମୋଦ କରିବାକୁ ଭଲ ପାଆନ୍ତି । ଏହି ମଣ୍ଡଘରଟି ଏମାନଙ୍କ ଦ୍ୱାରା ସବୁବେଳେ ପରିଷ୍କାର ପରିଚ୍ଛନ୍ନ ଥାଏ । ଅବିବାହିତ ଯୁବକ ଯୁବତୀମାନେ ଏଠାରେ ବାସ କରିବାକୁ ଭଲ ପାଆନ୍ତି । ଏମାନଙ୍କର ଆମୋଦ ପ୍ରମୋଦର ସହାୟ ଚାଙ୍ଗୁ । ଏମାନଙ୍କର ଅବିବାହିତ ପୁଅମାନେ (କେରଙ୍ଗା) ଚାଙ୍ଗୁ ବଜାଇବା ମାତ୍ରେ ଝିଅମାନେ (ସେଲାନ୍) କୁଡ଼ିଆରୁ ବାହାରି ଆସି ନାଚରେ ଯୋଗ ଦିଅନ୍ତି । ଏମାନଙ୍କ ସଂସ୍ପର୍ଶରେ ଆସିଲେ ଓ ଏମାନଙ୍କ ଭାଷାରୁ ଅନୁମାନ କରାଯାଏ ଯେ ଏମାନେ ଆଦିମ ଯୁଗରୁ ବୌଦ୍ଧ ଧର୍ମାବଲମ୍ବୀ । ଏ ଯୁଗରେ ସୂର୍ଯ୍ୟ ଦେବତାଙ୍କ ପ୍ରତି ଏମାନେ ଅନୁରକ୍ତ ଓ ଜଙ୍ଗଲ ଠାକୁରାଣୀଙ୍କର ଅର୍ଥାତ୍ ପତର ସବରୀ ଏମାନଙ୍କ ଆଦି ଠାକୁରାଣୀ । ଏମାନେ ବସୁମତୀଙ୍କୁ ମଧ୍ୟ ପୂଜା କରନ୍ତି ।

ସାଧାରଣତଃ ଏଇ ବଂଶଜ ପୁରୁଷ ସ୍ତ୍ରୀମାନଙ୍କର ବଞ୍ଚିବା ସୀମାରେଖା ଖୁବ୍ କମ୍ । କାରଣ ଏମାନେ ଅନେକ ଆଶ୍ଚର୍ଯ୍ୟଜନକ ରୋଗରେ ପ୍ରପୀଡ଼ିତ ହୋଇ ଖୁବ୍ ଶୀଘ୍ର ମୃତ୍ୟୁବରଣ କରନ୍ତି । ପୁରାଣକଥିତ ଗୋନାସିକାରୁ ପୁଣ୍ୟତୋୟା ବୈତରଣୀ ବାହାରିବାବେଳେ ଏ ଆଦିମଜାତିର ଲୋକ ଗୋରୁ ମାଂସ ଖାଇ ମୁଣ୍ଡ ପାଣି ଧାରରେ ଫିଙ୍ଗିଦେଇ ଆସିଥିବାର ପ୍ରବାଦ ଏଯାଏ ଜାହାର ମନରୁ ପୋଛି ହୋଇ ଯାଇନାହିଁ । ଫଳରେ ବୈତରଣୀ ଗୁପ୍ତ ହୋଇଗଲା । ବ୍ରହ୍ମାଙ୍କର ତପସ୍ୟାରେ ବ୍ରହ୍ମେଶ୍ୱର କୁଣ୍ଡଠାରେ ବୈତରଣୀ ବାହାରି ଜଳଦାନ କରିଥିବାରୁ ଏହାର ନାମ ଗୁପ୍ତଗଙ୍ଗା ହୋଇଅଛି । ଯେଉଁ ଗୁପ୍ତଗଙ୍ଗା ବା ବୈତରଣୀ, ଭାଗୀରଥୀ ବା ଗଙ୍ଗାଙ୍କଠାରୁ ୧୬ ବର୍ଷ ବଡ଼ ବୋଲି ପୁରାଣରେ ବର୍ଣ୍ଣନା କରାଯାଇଛି । ଏହାର ପାଣି ପବିତ୍ର କରିବା ଲାଗି ଚତୁର୍ମୁଖ ବ୍ରହ୍ମା ବୈତରଣୀ କୂଳେ କୂଳେ ପ୍ରତି କୋଶ (ଅନ୍ତରରେ) ଶିବଲିଙ୍ଗ ସ୍ଥାପନା କରିଥିବାର ଏହା ବ୍ରହ୍ମ ବୈବର୍ତ୍ତ ପୁରାଣରେ ବର୍ଣ୍ଣନା କରାଯାଇଛି ।

× × ×

ଜୁଆଙ୍ଗମାନଙ୍କର ଭାଷା ଅନ୍ୟ ଅନୁନ୍ନତ ଭାଷାମାନଙ୍କ ସହିତ ସାମଞ୍ଜସ୍ୟ ନ ହେଲେ ମଧ୍ୟ ଓଡ଼ିଆ ଭାଷା ସଙ୍ଗେ ମିଶାଇ ଏ ଜୁଆଙ୍ଗମାନେ କଥାବାର୍ତ୍ତା କରନ୍ତି । ଏମାନଙ୍କର ପୂର୍ବପୁରୁଷ ଭୂମିପୁତ୍ର ଥିବାରୁ ଏମାନେ ରାଜାଙ୍କର ମଧ୍ୟ ପ୍ରିୟପାତ୍ର ଥିଲେ । ରାଜାଙ୍କୁ ଏମାନେ କୌଣସି କର ଦେଉ ନ ଥିଲେ ବା ବେଠି ଖଟୁ ନ ଥିଲେ । ସ୍ୱର୍ଗୀୟ ପଣ୍ଡିତ ଜବାହରଲାଲ ନେହେରୁ ସ୍ୱାଧୀନତା ପରେ ଏ ଜାତିର ଉନ୍ନତିକଳ୍ପେ ସରକାର ତରଫରୁ ସାହାଯ୍ୟ ମିଳିବାକୁ ଦେଇଥିବା ସ୍ୱୀକୃତି ଅନୁଯାୟୀ ତାଙ୍କୁ ସାହାଯ୍ୟ କରିବା ବାଞ୍ଛନୀୟ । (Constitution) ସମ୍ବିଧାନର ୪୬ ଧାରା ଅନୁଯାୟୀ ଏହି ଅନୁନ୍ନତ ଆଦିବାସୀମାନଙ୍କୁ ଜାତୀୟତା ମନୋଭାବରୁ ବଞ୍ଚିତ କରିବା ଉଚିତ ନୁହେଁ ।

"Article 46 of the constitution says down that the state shall promote with special care the weaker sections of the people and in particular of the S.C. & S.T. shall protect them from social injustice and all forms of exploitation." ଫଳରେ କେନ୍ଦୁଝର ସମେତ ଅନ୍ୟ ଜିଲ୍ଲାର ଆଦିବାସୀ ଅଞ୍ଚଳରେ ଆଦିବାସୀ ଉନ୍ନୟନ ପାଇଁ ଅନେକ ଯୋଜନା କାର୍ଯ୍ୟକାରୀ ହୋଇ ଆସିଛି । ଆଦିବାସୀ ତଥା

ଜୁଆଙ୍ଗମାନଙ୍କ ଉନ୍ନତିକଳ୍ପେ ସରକାର ତରଫରୁ ଆଦିବାସୀ ଉନ୍ନୟନ ସମ୍ପ୍ରସାରଣ ଅଫିସ ଜରିଆରେ ସେମାନଙ୍କୁ ସାହାଯ୍ୟ ଦିଆ ଯାଉଥିଲା । କେନ୍ଦୁଝର ଜିଲ୍ଲା ସଦର ସବ୍‌ଡିଭିଜନ୍‌ରେ ଆଦିବାସୀ ବାଂଶପାଳ, ହରିଚନ୍ଦନପୁର ଓ ତେଲକୋଇ ବ୍ଲକ ଅଞ୍ଚଳରେ ଜୁଆଙ୍ଗ ଓ ଅନ୍ୟ ଆଦିବାସୀମାନଙ୍କୁ ଚାଷଜମି ଯୋଗାଇଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ବଳଦ, ହଳ, ବିହନ ଓ ସାର ଯୋଗାଇ ଦିଆଯାଉଛି । ସେମାନଙ୍କ ନିତ୍ୟନୈମିତ୍ତିକ ଚଳଣି ପାଇଁ ଛେଳି ଓ କୁକୁଡ଼ା ମଧ୍ୟ ସାହାଯ୍ୟ କରାଯାଉଥିଲା । ଏବେ ମଧ୍ୟ ସମନ୍ୱିତ ଆଦିବାସୀ ସଂସ୍ଥା ଜରିଆରେ ସେମାନେ ସାର, ବିହନ ସାଙ୍ଗରେ ମଧ୍ୟ ଛେଳି, କୁକୁଡ଼ା ଓ ଘୁଷୁରି ପାଇ ପାରୁଛନ୍ତି ।

କେବଳ ଜୁଆଙ୍ଗମାନଙ୍କ ଉନ୍ନତିକଳ୍ପେ ଓଡ଼ିଶା ସରକାର ଗୋନାସିକାରେ ଗୋଟିଏ ଜୁଆଙ୍ଗ ଉନ୍ନତି ସଂସ୍ଥା ଦ୍ୱାରା ଜୁଆଙ୍ଗମାନଙ୍କୁ ଉପକୃତ କରିବାକୁ ୧୯ଟି ଗ୍ରାମ ମଧ୍ୟରେ ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରିବାପାଇଁ ଅଟକଳ କରି ଜଣେ ସ୍ପେଶାଲ ଅଫିସର ନିଯୁକ୍ତ କରିଛନ୍ତି । ଆଦିବାସୀ ଉନ୍ନୟନ ସଂସ୍ଥାର ସାହାଯ୍ୟରେ ଅନେକ ଜାଗାରେ ସରକାରଙ୍କଠାରୁ ଜମି ପାଇ ଚାଷ କରିବାକୁ ଅଭ୍ୟାସ କଲେଣି । ଶୀତ ଦିନରେ ପରିବା ଫସଲ କରିବାର ସୁଯୋଗ ହୋଇ ନାହାନ୍ତି । ପୋଡ଼ୁଚାଷ ଧୀରେ ଧୀରେ ଛାଡିବାକୁ ଆରମ୍ଭ କଲେଣି । ଜୁଆଙ୍ଗର ଉନ୍ନତି ଲାଗି ପ୍ରୌଢ଼ ପାଠଶାଳୀ ଖୋଲି ଏମାନଙ୍କୁ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ସେମାନଙ୍କର ଚାଷର ଉନ୍ନତି ପାଇଁ ହଳ, ବଳଦ, ଲଙ୍ଗଳ ମଧ୍ୟ ଦିଆଯାଉଅଛି ଏବଂ ଦିଆଯିବାର ଯୋଜନା ମଧ୍ୟ ହୋଇଅଛି । ଜୁଆଙ୍ଗ ଯୁବକମାନଙ୍କୁ ଫଳରସ ତିଆରି କରିବା ଯୋଜନା ଛଡ଼ା ସେମାନଙ୍କୁ ଖାନାବାଡିରେ ଅମୃତଭଣ୍ଡା, କଦଳୀ, ଆମ୍ବ, ସପନା ଚାଷ କରିବାକୁ ଚାରା ମଧ୍ୟ ସମନ୍ୱିତ ଆଦିବାସୀ ସଂସ୍ଥାରୁ ଯୋଗାଇ ଦିଆଯାଉଛି । ଜୁଆଙ୍ଗମାନଙ୍କ ମଧ୍ୟରେ ଶତକଡ଼ା ୬.୧୩ ଶିକ୍ଷାଲାଭ କରି ପାରିଲେଣି ।

ଜୁଆଙ୍ଗମାନେ ପରମୁଖାପେକ୍ଷୀ ନ ହେବାକୁ ସରକାରଙ୍କଠାରୁ ଶିକ୍ଷା ନେଲେ ବୋଧହୁଏ ସରକାର ତାଙ୍କର ଆଦର୍ଶ ଓ ସରଳ ଜୀବନ ନିର୍ବାହରେ ସାହାଯ୍ୟ କରିପାରନ୍ତେ; କିନ୍ତୁ ଦୁଃଖର ବିଷୟ ବେଶୀ ସଂଖ୍ୟାରେ ଏମାନେ ବା ଏମାନଙ୍କର ପିଲାମାନେ ଶିକ୍ଷା କରିବାକୁ ଇଚ୍ଛୁକ ନୁହଁନ୍ତି । ଫଳମୂଳ ଖାଇ, ଜଙ୍ଗଲର କମନୀୟ ଦୃଶ୍ୟ ଉପଭୋଗ କରି ନିରାଡ଼ମ୍ବର ଜୀବନ ଯାପନ କରିବା ଏମାନଙ୍କର ଏକାନ୍ତ ଇଚ୍ଛା । ତା'ର ପ୍ରମାଣ ସ୍ୱରୂପ ତାଙ୍କ ଭାଷାରେ ଗୋଟିଏ

ଗୀତ ନମ୍ନରେ ଦେଲି । ଯେଉଁଥିରେ ଯୁବକ ଯୁବତୀଙ୍କ ଜଙ୍ଗଲର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଅନୁରୋଧ କରୁଛୁ ।

## ଗୁଙ୍ଗୁ ଗୀତ

ପୁ— କୁକୁଲ ସେମେଲନ୍ ସେଙ୍ଗାତାରକୁ
ତଡ଼ା ଗଡ଼ଥା ଗ୍ରିଂ ତେତେବା'ନାରକୁ

ସ୍ତ୍ରୀ— କୁକୁଲ କମଙ୍ଗେର ସେଙ୍ଗାତାରକୁ
କାଉତଥା ପାପ ମଣ୍ଡତେ କୁଂଗ ସଲରେକୁ

ପୁ— ତାଏ ତାଏର ସେମେଲନ୍ ସେଙ୍ଗାତାର ତାଏ
କାକାପକ ବାରଗ୍ଗ ମିନବାର ନୁଣୀ ଯିଙ୍ଗା ତାରତାଏ

ସ୍ତ୍ରୀ— କୁକୁଲେ କେମେଙ୍ଗେରେ ଯିଙ୍ଗାନତାରକୁ
ତଡ଼ୁ ଗୁଡ଼ଥା ବାଲସିଂ ତେତେବା'ନାରକୁ

ପୁ— ତେତେଲ ସେମେଲନ ତରଗରେର
ପବେ ତାରତେ ଅଡ୍ରଣ୍ଡେ ନାକତେ ପୁନତେ
ତେଲ ସେମେଲନ ଗ୍ରିଂ ତେକାକାଏ ତାରତେ
ଲୁତରନମା ବକମ ମାତେ ତଙ୍ଗଙ୍ଗାତା ରତେ

ସ୍ତ୍ରୀ— ଉଆଲେ କେମେଙ୍ଗେର ଅଲେନାର ଉଆ
ଇବଲଙ୍ଗୁ ଗ୍ରିଂତେ ଇଆନାରେ ଉଆ

ପୁ— ଉଡ଼ର୍ ସେମେଗ୍ନ୍ ତଲାଙ୍ଗି ତାରତେ
ଅମନଣ୍ଡେ ମାନୁଁ ତେରଲେବେରେକରତେ

ସ୍ତ୍ରୀ— ତେତେଲେ କମେଙ୍ଗେର :
ଲେବେ ରେରେତେ
ନାରୁ-ରୁ-ଗ-ରୁ-ରେଲେ
କମଙ୍ଗେରେ ନାରୁ-ରୁ-ରୁ-ରୁ-ରୁ
ହରହେ ଦଇବ ବଧାତା କରମ ବଙ୍ଗେରୁ ତା' ଜୀବନର ବଜନ୍ତୁତଅନକୁ

ଏହାର ଅର୍ଥ—

ପୁ— ଆଇ ଗୋ ଧାଙ୍ଗିଡ଼ି ଦେଖିବୁ
କି ସୁନ୍ଦର ଫୁଲ ଫୁଟିଛୁ

ସ୍ତ୍ରୀ— ସ୍କୁଲରେ ଧାଙ୍ଗଡ଼ା ତୋ ସଙ୍ଗେ ଯିବାକୁ
ମୋ ମନ ବଳୁଛି

ପୁ— ସୁନ୍ଦର ଫୁଲରୁ ତୋଳି ମୁଁ ଆଣିବି
ମଥାରେ ଦେବି ମଖାଇ

ସ୍ତ୍ରୀ— ତୋ ସଙ୍ଗେ ମୁଁ ଗଲେ ଜଙ୍ଗଲକୁ
ଏକା ଗାଳି ଦେବେ ବାପ-ଭାଇ

ପୁ— ତା'ଲେ ଧାଙ୍ଗିଡ଼ି ତୁହି ତୁ ଆସିବୁ
ଘରେ ତୋର ବାପ-ଭାଇ
କୋଳେଇ ନେବି ମୁଁ ବନସ୍ତ ଭିତରେ
ପୀରତ କରିବା ପାଇଁ ।

ସ୍ତ୍ରୀ— ସ୍କୁଲରେ ଧାଙ୍ଗଡ଼ା ଯିବା ଦୁହେଁ ଆମେ
ସୁଖେ ରହିବା ଜଙ୍ଗଲେ

ପୁ— ବାପ ଭାଇ ତୋର ମନା କରିଲେ ମୁଁ
ମରିବି ମୁଁ ବଳେ ବଳେ

ସ୍ତ୍ରୀ— ହରି ବା ବଇବ ସୁବସ୍ଥା କରିଲେ
କରମରେ ଥିବ ଯେବେ
ତୋ ପରି ନାଗର ସାଙ୍ଗେ ଧରି ମୁହିଁ
ମଜିବି ତୋହରି ଭାବେ ।

ପ୍ରମାଣ ସ୍ୱରୂପ ଏହି ଗୋନାସିକା ତଥା ଅନ୍ୟାନ୍ୟ ଆଦିବାସୀ ସମ୍ପ୍ରଦାୟମାନଙ୍କରେ ଆଦିବାସୀ ଗ୍ରାମମଙ୍ଗଳ ସଂସ୍ଥା ତରଫରୁ ହାଇସ୍କୁଲ, ମାଇନର ସ୍କୁଲ, ଉ: ପ୍ରା: ସ୍କୁଲ ଅନେକ ଦିନରୁ କାର୍ଯ୍ୟକାରି କରି ଆସୁଥିଲେ ମଧ୍ୟ ଜୁଆଙ୍ଗମାନେ ତାଙ୍କ ପିଲାମାନଙ୍କୁ ଉକ୍ତ ଶିକ୍ଷାକେନ୍ଦ୍ରମାନଙ୍କରେ ପଢ଼ାଇବାକୁ ଇଚ୍ଛୁକ ନୁହନ୍ତି । ଏମାନଙ୍କୁ ସରକାର ଗୃହଜମି, ହଳ, ବଳଦ, ଗୃହ ଉପକରଣ କିଣିବା, ବିହନ, ସାର ଯୋଗାଇବା ସଙ୍ଗେ ସଙ୍ଗେ ଏମାନଙ୍କର ବାଧ୍ୟତାମୂଳକ ଶିକ୍ଷାର ପ୍ରସାର କରିପାରିଲେ ଏମାନଙ୍କୁ ସତ୍‌ପଥକୁ ଟାଣି ଆଣି ହୁଅନ୍ତା । ଏହି ଦଶ ବର୍ଷ ମଧ୍ୟରେ ଏମାନଙ୍କ ମଧ୍ୟରେ ଅନେକ ପରିବର୍ତ୍ତନ ଦେଖା ଦେଲାଣି । ଉଚ୍ଚଶିକ୍ଷା ନ ପାଇଲେ ବି ଆଶ୍ରମ ଓ ସେବାଶ୍ରମ ସ୍କୁଲରେ ଶିକ୍ଷାଲାଭ କରି ଯୁବକମାନେ ଅନ୍ୟ ଲୋକମାନଙ୍କ ସଙ୍ଗରେ ମିଳାମିଶା କରି ପାରିଲେଣି । ଲୁଗା ପିନ୍ଧିବା ଶିଖିଲେଣି । ସଫା ଲୁଗା ପିନ୍ଧିବା ମଧ୍ୟ ଅଭ୍ୟାସ କଲେଣି । ଏମାନଙ୍କ

ପାଇଁ ଜମି, ହଳ, ବଳଦ ପ୍ରଦାନ କରିପାରିଲେ ଏମାନଙ୍କର ସ୍ୱର୍ଣ୍ଣ ଭବିଷ୍ୟତର ଆଲୋକ ଜଳାଇ ପାରି ହୁଅନ୍ତା । ସେଥିପାଇଁ ସରକାର ମଣ୍ଡଳରୁ ସ୍ୱଚ୍ଛ, କର୍ମଠ, ସଚ୍ଚ କର୍ମକର୍ତ୍ତାମାନେ ଏମାନଙ୍କ ଗହଣରେ ରହି ଗ୍ରାମବାସ, ମଦ୍ୟ ତ୍ୟାଗ ଇତ୍ୟାଦିରେ ସାହାଯ୍ୟ କରି ଏମାନଙ୍କର ମତିଗତି ବଦଳାଇ ପାରିଲେ ଏମାନଙ୍କର ଭବିଷ୍ୟତ ବଦଳି ପାରନ୍ତା । ଆଉ ମଧ୍ୟ ଏମାନଙ୍କୁ ଶୋଷକ (Exploitor) ହାତରୁ ରକ୍ଷା କରି ପାରନ୍ତେ ।

ସୁଖର ବିଷୟ କେନ୍ଦୁଝରରେ ପ୍ରତିଷ୍ଠିତ ମନୋଜମଞ୍ଜରୀ ଶିଶୁଭବନ ତରଫରୁ ଏହି ଅନୁନ୍ନତ ଜାତି ପାଇଁ ମାଗଣା ଔଷଧ ଦିଆଯାଉ ଅଛି । ସେ ସଂସ୍ଥାର ଡାକ୍ତର ଜୁଆଙ୍ଗ ଗ୍ରାମ ପରିଦର୍ଶନ କରି ପୀଡ଼ିତ ଆଦିବାସୀ ତଥା ଜୁଆଙ୍ଗମାନଙ୍କ ସେବା କରୁଥିବା ପ୍ରଶଂସନୀୟ । ଆହୁରି ସୁଖର କଥା, ନବ ଅନୁଷ୍ଠିତ କେନ୍ଦୁଝର ଠିକାଦାର ସଂସ୍ଥାର ଉଦୀୟମାନ ଯୁବକଗୋଷ୍ଠୀ ମଧ୍ୟ ଏମାନଙ୍କର [illegible] ଚଳଣି ପାଇଁ ପୋଷାକ, ଲୁଗା, ଲଣ୍ଠନ ମଧ୍ୟ ଏମାନଙ୍କୁ ଦାନ କରୁଛନ୍ତି ।



# କେନ୍ଦୁଝରର ଭୂୟାଁ ଓ ଭୂୟାଁ ସଂସ୍କୃତି

## ପୂର୍ବ ଭାରତୀୟ ପୃଷ୍ଠଭୂମି

ଉତ୍କଳର ବହୁ ପ୍ରାଚୀନ କାଳର ନାମ କଳିଙ୍ଗ ଥିଲା । ଏକ ପୌରାଣିକ ବିବରଣୀ ଅନୁସାରେ ଅସୁରରାଜା ବଳୀଙ୍କର ସ୍ତ୍ରୀ ସୁଦେଷ୍ଣାଙ୍କ ଗର୍ଭରୁ ଆର୍ଯ୍ୟ ଋଷି ଦୀର୍ଘତମାଙ୍କ ଔରସରେ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସମ୍ଭୂହ ନାମରେ ପାଞ୍ଚ ପୁତ୍ର ଜନ୍ମଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ କଳିଙ୍ଗଙ୍କ ନାମାନୁସାରେ କଳିଙ୍ଗ ଭୂମିର ନାମକରଣ ହୋଇଥିଲା । ଭାରତ ଇତିହାସର ଆରମ୍ଭ କାଳରୁ କଳିଙ୍ଗ ଏକ ବହୁ ବିଦିତ ସାଂସ୍କୃତିକ କେନ୍ଦ୍ର ରୂପେ ପରିଚିତ ଥିଲା । ଆର୍ଯ୍ୟେତର କଳିଂଗ ଭୂମିର କକ୍ଷୀବନ୍ତ ଆର୍ଯ୍ୟ ବୈଦିକ ସମାଜରେ ପ୍ରତିଷ୍ଠା ଲାଭ କରିଥିଲେ । ଏଣୁ କକ୍ଷୀବାନ ମାତବଂଶ ସମ୍ଭୂତ । ଏ ବିଷୟରେ ବାୟୁ ପୁରାଣ, ମତ୍ସ୍ୟ ପୁରାଣ ତଥା ମହାଭାରତରେ ସୂଚିତ । ବୌଦ୍ଧ ଯୁଗରେ କଳିଂଗର ପ୍ରସିଦ୍ଧି ବହୁ ବିଦିତ । ଦନ୍ତପୁର ସେ ଯୁଗରେ କଳିଂଗର ରାଜଧାନୀ ଥିଲା । ପ୍ଲିନିଙ୍କ ଭାରତ ଆଗମନ କାଳରେ କଳିଂଗ ତିନି ବର୍ଗରେ ବିଭକ୍ତ ଥିଲା । ଯଥା—କଳିଂଗ, ମୁଦ୍ଗ କଳିଂଗ ବା ମଧ୍ୟ କଳିଂଗ ଓ ମଗଧ କଳିଂଗ । ପରକାଳରେ ଏହି କଳିଂଗ ତିନି ଭାଗରେ ଯେପରି ଉତ୍କଳ ବା ଓଡ୍ର (ଗଂଗାଠାରୁ ବୈତରଣୀ), କଂଗୋଦ (ବୈତରଣୀରୁ ଦକ୍ଷିଣ ଚିଲିକା ମୁହାଣ) ପର୍ଯ୍ୟନ୍ତ କଳିଂଗ ଭୂମି ନାମରେ ବିଦିତ ଥିଲା । ଓଡିଶାରେ ତଥାକଥିତ ସୂର୍ଯ୍ୟବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । ସେହି ସମୟରେ ଏ ଅଞ୍ଚଳଗୁଡ଼ିକ ଉଡ୍ର ରାଷ୍ଟ୍ର ମଣ୍ଡଳ ରୂପେ ପରିଚିତ ଥିଲା ଏବଂ ଏହି କେନ୍ଦୁଝର ସେତେବେଳେ କୋହାର (କହର) ରାଜ୍ୟର ଖିଜିଙ୍ଗ ମଣ୍ଡଳ ଓ ପରେ ଯମ ଗରଭ କ୍ଷେଣ ମଣ୍ଡଳ ରୂପେ ବିଦିତ ଥିଲା ।

ହୁଏନ୍‌ସାଂ (୬୨୯ ଖ୍ରୀ: ଅ:) ଙ୍କ ବିବରଣୀରେ ଏହି ଉନ୍ନୋଟି ବିଷୟ କଥା ବର୍ଣ୍ଣନା କରାଯାଇଥିଲା । ଏହାର ଆୟତନ ସେତେବେଳେ ୬୦୦୦ ଲି. । ଏହାର ଜଳବାୟୁ ଉତ୍ତପ୍ତ । ଏହି ଅମାର୍ଜିତ ଲୋକମାନେ ଏ ଅଞ୍ଚଳରେ ବସବାସ କରୁଥିଲେ । ସେମାନଙ୍କର ଆକାର ଉଚ୍ଚ ଓ ଦେହର ରଙ୍ଗ କଳା ହଳଦିଆ ମିଶା । ଏହି ଭୂମିର ଦକ୍ଷିଣ ପଶ୍ଚିମ ଦିଗରେ ପୁଷ୍ପଗିରି ନାମରେ ଗୋଟିଏ ସଂଘାରାମ ଥିଲା । ଏହାର ସ୍ତୂପମାନଙ୍କରୁ ଉଜ୍ଜ୍ୱଳ ଜ୍ୟୋତି ନିର୍ଗତ ହେଉଥିଲା । ଏହି ପୁଷ୍ପଗିରି ବିହାରକୁ ବୋଧହୁଏ ସେତେବେଳେ ଲଳିତଗିରି ଓ ଉଦୟ-ଗିରିର ବିଶ୍ୱବିଦ୍ୟାଳୟ କୁହାଯାଉଥିଲା । ୭୦୦ ରୁ ୯୦୦ ଖ୍ରୀଷ୍ଟାବ୍ଦ ମଧ୍ୟର କଥା । ଭୌମକରମାନଙ୍କ ରାଜତ୍ୱ କାଳରେ ଏହା ଏକ ପ୍ରସିଦ୍ଧ ଶିକ୍ଷା ପୀଠରେ ପରିଣତ ହୋଇଥିଲା ।

ଏହି ଭୌମକର ବଂଶରୁ ଭୂୟାଁମାନଙ୍କର ଜନ୍ମ । ଗଜପତି କପିଳେନ୍ଦ୍ର ଦେବ (ବିନାୟକ ମିଶ୍ରଙ୍କ ମତରେ) ଏହି ଭୌମ ବଂଶରୁ ସମ୍ଭୂତ ହୋଇ ସୂର୍ଯ୍ୟ-ବଂଶୀ ରାଜତ୍ୱର ପଥ ପ୍ରଦର୍ଶକ । ଏମାନଙ୍କର ଭାଷା ଓ ଉଚ୍ଚାରଣ ପଦ୍ଧତି ମଧ୍ୟ ଭାରତ ବା ଆର୍ଯ୍ୟାବର୍ତ୍ତରେ ପ୍ରଚଳିତ ଭାଷା ଓ ଉଚ୍ଚାରଣ ପଦ୍ଧତିଠାରୁ ସ୍ୱତନ୍ତ୍ର । ଏମାନେ ବିଦ୍ୟାପ୍ରେମୀ । Dr. N. K. Pattanayak ଓ ଅନ୍ୟମାନଙ୍କ ମତରେ ଏମାନେ ମଗଧରୁ ଆସି ଆଦିମ ଅଧିବାସୀ ଜୁଆଙ୍ଗମାନଙ୍କୁ ତଡ଼ି କେନ୍ଦୁଝର ବା ତଥାକଥିତ ଯମଗରଭ କ୍ଷେତ୍ରମଣ୍ଡଳ (ଖିଜିଙ୍ଗ ମଣ୍ଡଳ) ମାନଙ୍କରେ ବସବାସ କରୁଥିଲେ ।

ଏମାନଙ୍କର ଆଦିରାଜା ପ୍ରଥମ ରାଜା ସେହି ଭୌମବଂଶରୁ ଉତ୍ପନ୍ନ ହୋଇ ମାନସିଂହଙ୍କ ପୁଅ ଜୟସିଂହ ପୁରୀ ଗଜପତି (କପିଳେନ୍ଦ୍ର ଦେବ)ଙ୍କ କନ୍ୟା ବିଭାକରି ଜହର ବା ଜୋହାର ରାଜ୍ୟର (ଖିଜିଙ୍ଗ ମଙ୍ଗଳ ଓ ଖିଜିଙ୍ଗ ମଣ୍ଡଳର) ହରିପୁର ଉପଢୌକନ ହିସାବରେ ପାଇ ରାଜତ୍ୱ ଆରମ୍ଭ କରିଥିଲେ । ସେଇ ଭୂୟାଁମାନେ ଗବେଷକମାନଙ୍କ ମତରେ ୯ମ ଖ୍ରୀଷ୍ଟାବ୍ଦ ବେଳକୁ କେନ୍ଦୁଝରରେ ବାସ କରୁଥିବା ଜୁଆଙ୍ଗମାନଙ୍କୁ ପର୍ବତ ପାଦ ଦେଶରୁ ତଡ଼ିଦେଇ ଜଙ୍ଗଲ ନିଷ୍କାସନ କରି ବସବାସ ଆରମ୍ଭ କରିଥିଲେ । ସେଇ ଭୂୟାଁମାନେ ନିଜର ସୁବିଧାକଲେ । ଜୟସିଂହ ୨ୟ ପୁତ୍ର ଜ୍ୟୋତି ଭଞ୍ଜ ୧୧୨୮ ଖ୍ରୀଷ୍ଟାବ୍ଦରେ ରାଜଗାଦିରେ ବସିବା ପୂର୍ବରୁ ୨୯ଜଣ ରାଜା ରାଜତ୍ୱ କରିଥିବାର ଗବେଷକ ତଥା ଐତିହାସିକଙ୍କର ମତ ।

## ଭୂୟାଁ ସଂସ୍କୃତି—

ଭୂୟାଁମାନେ ଭୂମିରୁ ଜନ୍ମଲଭ କରି ଭୂୟାଁ ହୋଇଛନ୍ତି ବୋଲି ଗର୍ବ ଅନୁଭବ କରନ୍ତି ।

ଏଇ ଭୂୟାଁମାନେ ସେତେବେଳେ ଦୁଇ ଭାଗରେ ବିଭକ୍ତ ହୋଇଥିଲେ ।

୧—ରାଜକୁଳି, ତାପସୀ ।

୨—ପାହାଡ଼ି—ଭିଲାଇ (ସାଲାଇ)

ରାଜକୁଳି ଭୂୟାଁମାନେ ରାଜାଙ୍କ ପାଖେ ପାଖେ ରହି ରାଜାଙ୍କ ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରି ରାଜକୁଳି ଭୂୟାଁ ଶ୍ରେଣୀଭୁକ୍ତ ହେଲେ ।

ପାଉଡ଼ି ବା ପାହାଡ଼ି ଭୂୟାଁମାନେ ୨ ଭାଗରେ ବିଭକ୍ତ ହୋଇଛନ୍ତି । ସେମାନଙ୍କ ଭିତରେ ମାଳବା ଦେଶ ଜାତିର ଭୂୟାଁମାନେ ନିଜକୁ ବଡ଼ ଜାତିର ଭୂୟାଁ ବୋଲି ମନେ କରନ୍ତି । ସଉତାଳି ବା ପର୍ବତ ଅଂଶର ଭୂୟାଁମାନେ ସାଧାରଣତଃ ହିନ୍ଦୁମାନଙ୍କୁ ଅନୁକରଣ କରନ୍ତି । ଏମାନେ ପର୍ବତର ପାଦ-ଦେଶ ଓ ନଦୀ ବା ଝରଣା କୂଳରେ ବସବାସ କରି ପାର୍ବତ୍ୟ ଅଞ୍ଚଳର ଜମି ଉର୍ବର କରି ଚାଷକରି ଖାଇ ରହିବାକୁ ଭଲ ପାଆନ୍ତି । ସେମାନେ ସ୍ୱାବଲମ୍ବୀ ।

ଏମାନେ ଜଙ୍ଗଲ ସଫା କରି ପାହାଡ଼ ଭୂଇଁରେ ଘର କରି ଚାଷ କରି ସ୍ୱବୃତ୍ତିରେ ଚଳାଚଳ କରି ନିଜକୁ ପାହାଡ଼ି ଭୂୟାଁରେ ପରିଚିତ କରାଇଲେ । ଏମାନେ ଶିକାର ପ୍ରିୟ, ଯୋଦ୍ଧା, କୌଶଳୀ, ସ୍ୱାବଲମ୍ବୀ । ଏମାନଙ୍କର ବଡ଼ ଅସ୍ତ୍ର ଧନୁ ଓ ଧନୁଶର । ଏହି ଶରରେ ଏମାନେ ବିଷ ପ୍ରୟୋଗ କରି ଶତ୍ରୁକ୍ଷୟ କରନ୍ତି । ଏମାନଙ୍କ ଘର ଅଣଲେଉଟା ।

ଏମାନେ ଆଦିବାସୀ ହେଲେ ମଧ୍ୟ ହିନ୍ଦୁମାନଙ୍କର ପର୍ବପର୍ବାଣୀରେ ନିଜକୁ ହଜାଇ ଦିଅନ୍ତି । ଏମାନଙ୍କର ଭାଷା ସ୍ୱତନ୍ତ୍ର ନୁହେଁ । ସେ ଯୁଗରେ ଏମାନେ ପ୍ରଥମେ ବୌଦ୍ଧାବଲମ୍ବୀ ଥିଲେ ଓ ପରେ ଶକ୍ତି ଉପାସକ ହୋଇ ଏଇ ମାଟିରେ ସ୍ୱାବଲମ୍ବୀ ହୋଇ ଚଳିଲେ । ତିବ୍ବତୀୟସ୍ଥାନ ଦଲେଇଲାମା ତାଙ୍କର କିମାଇଜିମ ପୁସ୍ତକରେ ଏମାନଙ୍କର ଧର୍ମ ଦେବତାଙ୍କ ବିଷୟରେ ଆଲୋଚନା କରି ଏମାନଙ୍କୁ ବୌଦ୍ଧ ଧର୍ମାବଲମ୍ବୀ ବୋଲି ସୂଚାଇଛନ୍ତି । କେନ୍ଦୁଝରର ଅଷ୍ଟମ ରାଜା ସନ୍ଥ ଭଞ୍ଜଙ୍କ ସମୟରେ ବୁଦ୍ଧ ଧର୍ମଯାଜକ ପଦ୍ମସମ୍ଭବ ୧୨୩୭-୧୨୪୭ ଖ୍ରୀ:ଅ: ମଧ୍ୟରେ ଅପି ସନ୍ଥେଇଦୁଲି ଓ ସୀତାବିଞ୍ଜରେ ଅବସ୍ଥାନ କରିଥିଲେ ବୋଲି ଦଲେଇଲାମା ତାଙ୍କର ପୁସ୍ତକରେ ଦର୍ଶାଇ ଅଛନ୍ତି । ସନ୍ଥଭୂମି ବୌଦ୍ଧ ଧର୍ମରେ

ଦୀକ୍ଷିତ ହୋଇ ଜଣେ ହରିଜନ ବାଳିକା ବିବାହ କରିଥିଲେ ଏବଂ ପଦ୍ମ ସମ୍ଭବଙ୍କର ସେ ପଞ୍ଚଶିଷ୍ୟ ଥିଲେ ଏକଥା ମଧ୍ୟ ସେ ଲେଖି ଯାଇଛନ୍ତି ।

ଏମାନେ ବିଶେଷ ଶିକ୍ଷିତ ନ ହେଲେ ମଧ୍ୟ ଚତୁର, ମିତବ୍ୟୟୀ, କର୍ମଠ, ବିଶ୍ୱାସୀ, ବହୁଦର୍ଶୀ । ଚାଙ୍ଗୁ ନାଚ, ଝୁଲୁକୁଣୀ ନାଚ, ରଜପର୍ବରେ ଲୋକଗୀତ ରଚନା କରି ଗାଇବା, ଏମାନଙ୍କ ଝିଅ ଓ ପୁଅ (ଧାଙ୍ଗିଡ଼ି ଓ ଧାଙ୍ଗଡ଼ା) ମଜ୍ଜାଗତ । ରଜପର୍ବ ଶେଷରେ ଠାକୁରାଣୀ ଗାଧୁଆ ବା ବସୁମତୀ ପୂଜା ଏମାନେ ସମାରୋହରେ ପାଳନ କରନ୍ତି । ରଜଦୋଳିରେ ଏମାନଙ୍କର ସଙ୍ଗୀତକୁ ଏମାନଙ୍କର ଲୋକଗୀତ ହିସାବରେ ଧରି ନିଆଯାଇଛି । ଦୋଳିରେ ଝୁଲିଲେ ଏମାନେ କବୟିତ୍ରୀ ଭାବରେ ଗୀତ ରଚନା କରି ବୋଲିବାରେ ସିଦ୍ଧ । ଜୁଆଙ୍ଗମାନଙ୍କ ଭଳି ଏମାନେ ନିଜ ଗାଁ ମଝିରେ ବା ଶେଷରେ ମଣ୍ଡଘର ସ୍ଥାପନା କରି ଆଗନ୍ତୁକ ତଥା ଅଶୁବସ୍ତର ଓ ଜିଲ୍ଲା ଅଧିକାରୀମାନଙ୍କୁ ସ୍ୱାଗତ କରାଇ ସେମାନଙ୍କୁ ଅତିଥି ହିସାବରେ ଗ୍ରହଣ କରନ୍ତି । ଏମାନଙ୍କର ମୁଖିଆ ବା ଗାଁର ସର୍ବୋଚ୍ଚ କର୍ତ୍ତା ହିସାବରେ ଜଣକୁ ମାନନ୍ତି । ତାହାଙ୍କୁ ସର୍ଦ୍ଦାର ପ୍ରଧାନ କହନ୍ତି । ରାଜସ୍ୱ ଆଦାୟ କରିବାର କ୍ଷମତା ସେମାନଙ୍କୁ ରାଜା ତଥା ସରକାରଙ୍କ ତରଫରୁ ଦିଆଯାଉଥିଲା । ସେଥିପାଇଁ ସେମାନେ ଜାଗିର ଜମି ଉପଭୋଗ କରିବାର ସୁଯୋଗ ପାଇପାରୁ ଥିଲେ ।

ସ୍ୱର୍ଗୀୟ ରାଜା ଜନାର୍ଦ୍ଦନ ଭଞ୍ଜଙ୍କ ରାଜତ୍ୱ କାଳରେ ଏମାନେ ନାଗରା ବାଦ୍ୟ ଆବିଷ୍କାର କରିଥିଲେ ବୋଲି ଗର୍ବ କରନ୍ତି । ଏହି ବାଦ୍ୟ ଗୋଟିଏ ଗ୍ରାମରୁ ଅନ୍ୟ ଗ୍ରାମର ଖବର ବା ସମ୍ବାଦ ସରବରାହ କରିବାରେ ସାହାଯ୍ୟ କରି ପାରୁଥିଲା । ତା' ପୂର୍ବରୁ ସେମାନେ ମନ୍ଦ ସାହାଯ୍ୟରେ ସିଆଡ଼ି ନଇରେ ଚଣ୍ଡି ପକାଇ ନିଜ ଗ୍ରାମରୁ ଅନ୍ୟ ଗ୍ରାମକୁ ଖବର ପଠାଉଥିଲେ । ଏମାନେ ନାଚ ସମୟରେ ଚାଙ୍ଗୁ ସାଙ୍ଗରେ ମାଦଳ ଓ ନାଗରା ବ୍ୟବହାର କରନ୍ତି । ଏମାନଙ୍କର ନାଚ ଭିନ୍ନଧର୍ମୀ । ପୁରାଣରୁ ଜଣାପଡ଼େ କେନ୍ଦୁଝରର ଭୂୟାଁମାନେ ମହାଭାରତ ଯୁଦ୍ଧରେ କୌରବମାନଙ୍କୁ ସାହାଯ୍ୟ କରିଥିଲେ । ରାଜା ଲକ୍ଷ୍ମୀନାରାୟଣ ଭଞ୍ଜଙ୍କ ସମୟରେ ମରହଟ୍ଟା ତଥା ମୋଗଲ ସେନାପତିଙ୍କୁ ମୁକାବିଲା କରି ସେମାନଙ୍କୁ ଏ ରାଜ୍ୟରୁ ତଡ଼ିଦେଇ ପାରିଥିଲେ । ଡ଼ାଃ ପ୍ରସନ୍ନ ମିଶ୍ର ଓ ପଣ୍ଡିତ ବିନାୟକ ମିଶ୍ର ଓ History of Orissa in Fuedatory States ପୁସ୍ତକରେ ଏହାର ବିଷଦ ଆଲୋଚନା ହୋଇଛି । ଏମାନଙ୍କର ବୀରତ୍ୱର ପରିଚୟ ସବୁ

କାଳରେ ପ୍ରଶଂସନୀୟ । ଏମାନଙ୍କର ଧାରଣା ସମସ୍ତ ସମୟରେ ଗଣଆନ୍ଦୋଳନ ବା ଜନଜାଗରଣ ନ ହେଲେ ରାଜ୍ୟରେ ଶାନ୍ତି ପ୍ରତିଷ୍ଠା ହୋଇ ପାରିବ ନାହିଁ ।

ଫଳରେ ୧୮୬୮ ଖ୍ରୀଷ୍ଟାବ୍ଦରେ ପ୍ରଥମରେ ଗଣ ଆନ୍ଦୋଳନ କରି ହରିପୁର ରାଜ୍ୟର ରାଜା ଜୟସିଂହଙ୍କ ପାଖରେ ଜଣାଇଲେ—"ପ୍ରଜାମାନେ ଏତେ ଦୂରରୁ ଆସି ଖିଚିଙ୍ଗ କୋଠା ତଥା ହରିପୁର ରାଜାଙ୍କଠାରୁ ସୁଶାସନ ମିଳୁନାହିଁ ।" ଅନୁରୋଧ କଲେ ତାଙ୍କର ଗୋଟିଏ ପୁଅକୁ ଉମଗରଭକ୍ଷେତ୍ର ମଣ୍ଡଳରେ ରାଜା କରାଇବେ; କିନ୍ତୁ ରାଜାଙ୍କ ପ୍ରତ୍ୟାଖ୍ୟାନରେ ସେ ରାଜାଙ୍କର ଦୁଇ ପୁଅଙ୍କୁ ରାତିରେ ଚୋରିକରି ନେଇଯାଇ କଂଚକେଶ୍ୱରୀଙ୍କ ନିକଟରେ ବୈତରଣୀ କୂଳରେ ଆଦିଭଞ୍ଜ ଓ ଜ୍ୟୋତିଭଞ୍ଜଙ୍କୁ ୨ଟି ପଥର ଉପରେ ବସାଇ ରାଜା କରାଇଲେ । ଏହି ଦୁଇଟି ଗ୍ରାମ ଏଯାବତ ଆଦିପୁର ଓ ଜ୍ୟୋତିପୁର ନାମରେ ଖ୍ୟାତ । ଏହି ପଥର ଦୁଇଟି ବୈତରଣୀ ନଦୀ ଦୁଇ ପାଖରେ ଏବେ ବି ମଧ୍ୟ ଜୀର୍ଣ୍ଣ ଅବସ୍ଥାରେ ଦର୍ଶକ ହିସାବରେ ବସି ରହିଛନ୍ତି ।

## ୨ୟ ଆନ୍ଦୋଳନ—

୧୮୬୧ ମସିହାରେ ଚନ୍ଦ୍ରଧରଭଞ୍ଜଙ୍କ ବିୟୋଗରେ ମୟୂରଭଞ୍ଜ ରାଜପୁତ୍ର ବୃନ୍ଦାବନ (ପୋଷ୍ୟପୁତ୍ର) ରାଜା ନ ହୋଇ ଧନୁର୍ଜୟ ରାଜା ହେବାରୁ ଭୂୟାଁମାନଙ୍କ ମନରେ ବିଦ୍ରୋହ ଜନ୍ମିଥିଲା । ଫଳରେ ରତନା ନାୟକ ଅନ୍ୟମାନଙ୍କ ଗହଣରେ ଆନ୍ଦୋଳନ ସୃଷ୍ଟି କରିଥିଲେ । ଶେଷରେ ଧରାହୋଇ ଫାଶୀ ଓ ଜେଲ୍ ବରଣ କଲେ । ଯେଉଁମାନେ ବଞ୍ଚି ରହିଥିଲେ ବା ଲୁଚି ଯାଇଥିଲେ ସେମାନେ ତୃତୀୟ ଆନ୍ଦୋଳନରେ ଭାଗ ନେଇଥିଲେ ।

## ୩ୟ ଆନ୍ଦୋଳନ—

୧୮୯୧ରେ ମାଛକାନ୍ଦଣା ଜୋର ବେଠିରେ ଖୋଳାଇ ପ୍ରଜାମାନଙ୍କୁ ଅତ୍ୟାଚାରର ଶୀକାର ହେବାକୁ ପଡ଼ିଥିଲା । ଫଳରେ ଧରଣୀଧର ନାୟକ (ଭୂୟାଁ) ଗଣ ଆନ୍ଦୋଳନ ଲୁଚି ଯାଇଥିବା ଆନ୍ଦୋଳକାରୀଙ୍କ ସାଥୀ ସାହାଯ୍ୟରେ ଆରମ୍ଭ କରିଥିଲେ ।

## ବାଧୁଡ଼ି—

ଏମାନେ ସାଧାରଣତଃ ସମତଳ ସ୍ଥାନମାନଙ୍କରେ ସବର୍ଣ୍ଣ ହିନ୍ଦୁମାନଙ୍କ ସାଙ୍ଗରେ ମିଳମିଶି ରହିବାକୁ ଭଲ ପାଆନ୍ତି । ବ୍ରାହ୍ମଣ ପୁରୋହିତ

ଏମାନଙ୍କର ପୂଜାପାଠ କରନ୍ତି ଓ କର୍ମକମୀଣୀ ଚଳାନ୍ତି । ଏମାନଙ୍କର ବୈଷ୍ଣବ ଗୁରୁ ମନ୍ତ୍ର ନ ଦେଲେ ବିବାହ ହୋଇ ପାରେନା । ଏମାନେ ସୁବେନ୍ଦ୍ରତଙ୍କଠାରୁ ଭିନ୍ନ । ଏମାନେ ହିନ୍ଦୁମାନଙ୍କର ଦେବାଦେବୀ ପୂଜା କରିବାରେ ଅଭ୍ୟସ୍ତ । ଏମାନେ ଆଦିବାସୀ ହେଲେ ମଧ୍ୟ ଏମାନଙ୍କ ଭାଷା ସ୍ୱତନ୍ତ୍ର ନୁହେଁ । ଠାକୁରାଣୀ ବଣଦେବୀ ପୂଜାପାଇଁ ଏମାନଙ୍କର ଦେହୁରୀ ପୂଜା କରନ୍ତି । ଏମାନେ ରଜସଂକ୍ରାନ୍ତି, ଗହ୍ମା ଓ ମକର ସଂକ୍ରାନ୍ତି ପର୍ବମାନଙ୍କରେ ଆବାଳ-ବୃଦ୍ଧ-ବନିତା ନିଜକୁ ହଜାଇ ଦିଅନ୍ତି । ଏମାନଙ୍କର ପୋଷାକ ପରିଚ୍ଛଦ ହିନ୍ଦୁମାନଙ୍କ ସଦୃଶ । ଏମାନେ ଭୂୟାଁମାନଙ୍କ ପରି ଜଳସ୍ପର୍ଶୀ ।

## ସାନ୍ତାଳ—

ସାନ୍ତାଳ ଜାତିର ଲୋକମାନେ ସାଧାରଣତଃ କେନ୍ଦୁଝର, ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାର କେତେକାଞ୍ଚଳରେ ବାସ କରନ୍ତି । ଏମାନଙ୍କର ଭାଷାକୁ ସାନ୍ତାଳୀ କହନ୍ତି । ଗବେଷକଙ୍କ ମତରେ ଏମାନେ ମୁଣ୍ଡାମାନଙ୍କଠାରୁ ଗୋଟିଏ ଦଳ ବାହାରି ଆସି କେନ୍ଦୁଝର ଜିଲ୍ଲାରେ ବସବାସ କରିଛନ୍ତି । ବଂଶାନୁକ୍ରମିକ ଏମାନେ ସାତୋଟି ଉପଜାତି—ହଂସଦା, ମୁରମୁ, କିସ୍କୁ, ହେମ୍ବ୍ରମ, ମାରାଣ୍ଡି, ସୋରେନ୍, ଟୁଡ଼ୁ । ଏମାନଙ୍କର ମୁଖିଆଙ୍କୁ ପଧାନ ବା ମାଝୀ କହନ୍ତି । ଏମାନେ ପ୍ରଶସ୍ତ ଘରେ ରହିବାକୁ ଭଲପାନ୍ତି । ଏମାନେ ରାହାଲି ମଦ ବା ହାଣ୍ଡିଆକୁ ବେଶୀ ଭଲ ପାଆନ୍ତି । ଏମାନଙ୍କ ଆଦି ଠାକୁରଙ୍କୁ ଠାକୁରଜୀଉ ବା ସିଙ୍ଗବୋଙ୍ଗା ବା ସୂର୍ଯ୍ୟ କହନ୍ତି । ଏମାନେ ବାସୁକୀ ବା ବସୁମାତା ଠାକୁରାଣୀଙ୍କୁ ବେଶୀ ମାନନ୍ତି । ଏମାନଙ୍କର ପ୍ରେତାତ୍ମା ପ୍ରତି ବେଶୀ ବିଶ୍ୱାସ । ମନ୍ତ୍ର, ତନ୍ତ୍ରରେ ମଧ୍ୟ ଏମାନେ ସିଦ୍ଧ । ଭୂୟାଁମାନଙ୍କ ପରି ଏମାନେ ପିଲାବେଳରୁ ଧନୁର୍ବିଦ୍ୟା ଧୁରନ୍ଧର । ଏମାନେ କରମା (ଗହ୍ମା) ଓ ମକର ପର୍ବକୁ ବେଶୀ ମାନନ୍ତି । ଭୂୟାଁ, କୋହ୍ଲମାନଙ୍କ ଭଳି ଏମାନେ ବାହାଘର, ପିଲାଜନ୍ମ କିମ୍ବା କାହାର ମୃତ୍ୟୁ ପରେ ନିସ୍ତାପାରି ହାଣ୍ଡିଆ, ରାହାଲି ଓ ମହୁଲି ଖାଇ ମାଦଳ ଓ ଅନ୍ୟ ବାଜା ସହ ବଡ଼ବାଜାର ବ୍ୟବହାର କରନ୍ତି । ଏମାନେ କୃଷିକର୍ମ ନିପୁଣ । ଏମାନଙ୍କର ସ୍ତ୍ରୀମାନେ ଚତୁର । ଏମାନେ ଜଳସ୍ପର୍ଶୀ ।

## ସାଉଁନ୍ତି—

ତୃତୀୟ ଶତାବ୍ଦୀ ବେଳକୁ ଗବେଷକଙ୍କ ମତରେ ଏ ଜାତିର ଆବିର୍ଭାବ ଆମ୍ଭମାନଙ୍କର ତଥାକଥିତ କଳିଙ୍ଗ ରାଜ୍ୟରେ । ଏମାନଙ୍କର ପ୍ରଥମ ପ୍ରଦର୍ଶକ ରୂପେ

ପୁରୀର ଜୟଗୋବିନ୍ଦ ଦାସ ବୋଲି ଏମାନଙ୍କର ମତ । ଖଣ୍ଡାୟତ ଜାତିର ଅପଭ୍ରଂଶ ବୋଲି ଏମାନଙ୍କର ଦାବୀ । ଏମାନଙ୍କର ବଂଶଧର ପ୍ରଥମେ ମୂଷା-ଗୋଷ୍ଠୀର ମଣଜା କେନ୍ଦୁଝର ଗ୍ରାମର ଅଧିବାସୀ ବୋଲି ଗବେଷକଙ୍କର ମତ । ଗବେଷକଙ୍କ ମତରେ ୧୭୦୩ ଖ୍ରୀଷ୍ଟାବ୍ଦରେ ଏମାନଙ୍କର କେନ୍ଦୁଝରକୁ ଆଗମନ । ଏମାନେ ବହୁ ସଂଖ୍ୟାରେ ଏବେ ବି ମୟୂରଭଞ୍ଜ ଜିଲ୍ଲାରେ ଜଙ୍ଗଲମାନଙ୍କରେ ବାସ କରନ୍ତି । ଏମାନଙ୍କର ସଂଖ୍ୟା ମଧ୍ୟ କେନ୍ଦୁଝର ଜିଲ୍ଲାରେ ଗୁଣା ଅଧିକ କମ୍ ନୁହେଁ । (କେନ୍ଦୁଝର ଗେଜେଟିଅର) ।

ଏମାନଙ୍କର ପୋଷାକ ପରିଚ୍ଛଦ ସବର୍ଣ୍ଣ ହିନ୍ଦୁମାନଙ୍କ ପୋଷାକ ପରିଚ୍ଛଦ ସଙ୍ଗେ ପ୍ରାୟ ସମାନ । ଏମାନେ ହିନ୍ଦୁ ଦେବାଦେବୀ ପୂଜା କରନ୍ତି । ଏମାନଙ୍କର ସ୍ୱତନ୍ତ୍ର ଭାଷା କିଛି ନାହିଁ । ଏମାନଙ୍କର ସ୍ତ୍ରୀମାନେ ପିଲଭର ଅଳଙ୍କାରକୁ ବେଶି ପସନ୍ଦ କରନ୍ତି । ସ୍ତ୍ରୀମାନେ ସାଧାରଣତଃ କର୍ମଠ ଓ ଖଜୁରୀ ମସିଣା ବୁଣିବାରେ ସିଦ୍ଧ । କବଚେନ ସ୍ୱମସେଙ୍କ ମତରେ ଏମାନେ ଏମାନଙ୍କ ଗ୍ରାମର ମୁଖିଆଙ୍କୁ ବେଡ଼ାଜାଲ ମାହାପାତ୍ର ଆଖ୍ୟାରେ ମାନି ଆସୁଥିଲେ । ବଂଶାନୁକ୍ରମିକ ବେଡାଜାଲ ମାହାପାତ୍ରଙ୍କର ପିଲମାନେ ମଧ୍ୟ ସେ ଉପାଧିରେ ଭୂଷିତ । ଏମାନେ ଆଦମାତା, ବସୁମାତା ଓ ସୂର୍ଯ୍ୟ (ଧର୍ମ ଦେବତା)ଙ୍କୁ ପୂଜା କରିବା ସଙ୍ଗେ ସଙ୍ଗେ ଗ୍ରାମଦେବତୀ, ଠାକୁରାଣୀ, ପରଶୁରାମ ଚଣ୍ଡୀବାବୁ, ଦୁଆରସୁଣୀ ଓ କମଳାଙ୍କୁ ମଧ୍ୟ ପୂଜା କରନ୍ତି । ସେମାନେ ହିନ୍ଦୁ ପର୍ବପର୍ବାଣୀ ମଧ୍ୟ ମାନନ୍ତି । ବ୍ରାହ୍ମଣମାନେ ଏମାନଙ୍କର ବିବାହ ସମ୍ପନ୍ନ କରନ୍ତି ।

## ଗଣ୍ଡ—

ଗଣ୍ଡମାନେ ମଧ୍ୟପ୍ରଦେଶ ଆଡ଼ୁ ଆସି କେନ୍ଦୁଝର ଜିଲ୍ଲାରେ ୧୫୦୦ ଖ୍ରୀଷ୍ଟାବ୍ଦ ବେଳକୁ ଗ୍ରାମ ନିକଟବର୍ତ୍ତୀ ସ୍ଥାନଗୁଡ଼ିକରୁ 'ଜଙ୍ଗଲ ପରିଷ୍କାର କରି ଘର ତିଆରି କରି ରହିବାକୁ ଆରମ୍ଭ କରିଥିଲେ । ଏମାନେ ବ୍ରାହ୍ମଣଙ୍କ ଭଳି ପଇତା (ଯଜ୍ଞୋପବୀତ) ଗ୍ରହଣ କରି ନିଜକୁ ମହାପାତ୍ର ନାମରେ ପରିଚିତ କରନ୍ତି । ଏମାନଙ୍କର ମୁଖିଆଙ୍କୁ ସାଧାରଣତଃ ମହାପାତ୍ର ଅଖ୍ୟାରେ ନାମିତ କରିଛନ୍ତି । ଏହି ଗଣ୍ଡମାନେ ଅନେକ ସ୍ତରରେ ବିଭକ୍ତ । କେନ୍ଦୁଝର ଜିଲ୍ଲାର ଚମ୍ପୁଆ ଅଣ୍ଡୁ ଅଞ୍ଚଳରେ ସେମାନେ ଅଧିକ ପରିମାଣରେ ବସବାସ କରିଅଛନ୍ତି । ପୂର୍ବ କାଳରେ ଏମାନେ ଦ୍ରାବିଡ଼ ଭାଷା (ଗୋଣ୍ଡି) ବ୍ୟବହାର କରୁଥିଲେ । ଏ ଯୁଗରେ ଏମାନେ ପୁରାପୁରି ଓଡ଼ିଆ ଭାଷାରେ ସିଦ୍ଧ ହେଲେଣି ।

## ହୋ—

ହୋ ଜାତିର ଲୋକମାନେ ଅନେକ ଦିନ ଧରି କେନ୍ଦୁଝର ଜିଲ୍ଲାର ଆଠଗଡ଼ ଅଞ୍ଚଳ ଓ ମୟୂରଭଞ୍ଜ ଜିଲ୍ଲାର ଠାକୁରମୁଣ୍ଡା ଅଞ୍ଚଳମାନଙ୍କରେ ସାଧାରଣତଃ ଆଦିବାସୀ ଓ ହରିଜନ ସଂପ୍ରଦାୟର ଲୋକମାନଙ୍କ ସାଙ୍ଗରେ ବସବାସ କରି ରହି ଆସିଛନ୍ତି । ଏମାନଙ୍କ ସ୍ତ୍ରୀମାନେ ଅଳଙ୍କାର ପ୍ରିୟ ହୁଅନ୍ତି । ଏମାନଙ୍କ ଜୀବନରେ ବିଧବା ବିବାହ ଓ ଛାଡପତ୍ର ପ୍ରଥା ଅତ୍ୟଧିକ । ସାଧାରଣତଃ ଏମାନେ ମୂଲ ମଜୁରି ଉପରେ ନିର୍ଭର କରନ୍ତି । ଏ ଯୁଗରେ ଅନେକ ପରିଶ୍ରମୀ ହୋ ଜାତିର ପୁରୁଷ, ସ୍ତ୍ରୀମାନେ ପଡ଼ିଆ ଜମି ଭାଙ୍ଗି ଚାଷ ଜମିରେ ପରିଣତ କରି ଚଳି ଶିଖିଲେଣି ।



---

କେନ୍ଦୁଝର ଗେଜେଟିଅର, ସୁରେନ୍ଦ୍ର ମହାନ୍ତିଂକ ଓଡ଼ିଆ ସାହିତ୍ୟର ଆଦି ପର୍ବ, ସାମୁଏଲ ବିଲ୍‌ଂକ ବୃଦ୍ଧିଷ୍ଟ ରେକର୍ଡ଼ ଅଫ ଦି ୱେଷ୍ଟର୍ଣ୍ଣ World Vol. I ରୁ ଆନୀତ ।

# କେନ୍ଦୁଝରର ଲୋକନୃତ୍ୟ

କେନ୍ଦୁଝର ଜିଲ୍ଲାର ପାରମ୍ପରିକ ଲୋକନୃତ୍ୟ ଉପରେ ଆଲୋକପାତ କରିବା ପୂର୍ବରୁ ଶ୍ୟାମଳବନାନୀ ପରିବେଷ୍ଟିତ କେନ୍ଦୁଝର ବିଷୟରେ ସମ୍ୟକ୍ ଧାରଣା ଦେଉଛୁ ।

କେନ୍ଦୁଝର ରାଜ୍ୟ ୧୧୦୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଜୋହାର ରାଜ୍ୟ ଓ ପରେ ହରିପୁର ରାଜ୍ୟ ନାମରେ ପରିଚିତ ଥିଲା । କେନ୍ଦୁଝରର ଉପକଣ୍ଠ ତଥା ସହରଟି ସମଗରଭ କ୍ଷେତ୍ର ରୂପେ ଜଣାଥିଲା । ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଗ୍ରାମ, ସହର ବା ରାଜ୍ୟର ନାମ ପରିବର୍ତ୍ତନ ହେବା ସ୍ୱାଭାବିକ । ସେହି ପରିପ୍ରେକ୍ଷୀରେ ଏହା କେନ୍ଦୁଝର ଜିଲ୍ଲାରେ ନାମିତ । ଏହାର ଆୟତନ ୮୨୪୦ Sq. miles ଅର୍ଥାତ୍ ଆୟତନରେ ବିଶାଳହେ ହୋଣ ଥିଲା ।

ଏହି କେନ୍ଦୁଝର ରାଜ୍ୟକୁ ପ୍ରଥମ କରି ଜୁଆଙ୍ଗମାନେ ଆସି ବସତି ସ୍ଥାପନ କରୁଥିଲେ । କାଳକ୍ରମେ ଏହି ରାଜ୍ୟ ବୌଦ୍ଧପୀଠରୂପେ ପରିଚିତ ହୋଇଥିଲା । ଖ୍ରୀଷ୍ଟପୂର୍ବ ୬ରୁ ଏହା ଜୋହାର ରାଜ୍ୟ ଥିଲା । ବୌଦ୍ଧଧର୍ମ ଅବଲମ୍ବୀମାନେ ଏହି ରାଜ୍ୟରେ ଅଧିବାସୀ ହିସାବରେ ପରିଚିତ ହେଉଥିଲେ । ସେହିମାନେ ହିଁ ଆମମାନଙ୍କର ତଥାକଥିତ ଜୁଆଙ୍ଗ ଭାଇଭଉଣୀମାନେ । ପଦ୍ମସମ୍ଭବଙ୍କର ଲାମାଇଜିମ ଏହିମାନଙ୍କର ଏକ ନିଖୁଣ ଚିତ୍ର ଦେଇଥିଲେ ।

ଏହି ପୁରାତନ ଯୁଗରେ ଏମାନଙ୍କ ଲୋକନୃତ୍ୟ ଉପରେ ବିଶେଷ କିଛି ସମନ୍ୱିତ ପୋଥି ବା ପୁସ୍ତକ ନ ଥିଲେ ମଧ୍ୟ ଏମାନଙ୍କର ଏକମାତ୍ର ଚାଙ୍ଗୁ ନୃତ୍ୟକୁ ସେମାନେ ତାଙ୍କର ପାରମ୍ପରିକ ନୃତ୍ୟ ହିସାବରେ ଗ୍ରହଣ କରିଛନ୍ତି । ସେ ଯୁଗରେ ସେମାନଙ୍କ ପର୍ବପର୍ବାଣୀ ହିସାବରେ ଠାକୁରାଣୀ ଗାଧୁଆ, ନୂଆଖିଆ ପ୍ରଧାନ । ଏମାନେ ସୂର୍ଯ୍ୟ ଉପାସକ ବୋଲି କେତେକ ତାଳପତ୍ର ପୋଥିରୁ ମୁଁ ସଂଗ୍ରହ କରିଥିଲି । ନୂଆଖିଆ ଅର୍ଥ ଆମର ଏ ଯୁଗରେ ଦୋଳ ବା ହୋଲି ପର୍ବରେ

ଏମାନେ ଆମ୍ବ ନୂଆଖିଆ କରନ୍ତି । କେନ୍ଦୁଝର ଜିଲରେ ଏଯାବତ୍ ବାସକରୁଥିବା ବିଭିନ୍ନ ଆଦିବାସୀଙ୍କ ଭିତରେ ଏହି ଜୁଆଙ୍ଗମାନେ ବେଶୀ ଅନୁନ୍ନତ । ଏମାନେ କେବଳ ଅପର କେନ୍ଦୁଝରରେ ସଖ୍ୟାଗରିଷ୍ଠତା ଲାଭ କରିଛନ୍ତି । ଏମାନେ ଆମ୍ବ ନୂଆଖିଆରେ ବନଦେବୀ ପତର ସରେଇଙ୍କୁ ପୂଜା ଦିଅନ୍ତି ଆମ୍ବ ଓ କୁକୁଡ଼ା । ସେ ଯୁଗରେ ତ ଏମାନେ ଲୁଗା ଜାଣି ନ ଥିଲେ । ପଞ୍ଝା ଡେଣ ରହୁଥିଲେ । ଘର ଉପର ଡାଳ ପତରେ ଘୋଡ଼ୁଥିଲେ । ଗାଁ ମଝିରେ ମଣ୍ଡଘର କଣ ମା', ଝିଅ, ବାପ, ପୁଅ ସମସ୍ତେ ହାଣ୍ଡିଆ ପିଇ ଚାଙ୍ଗୁରେ ମଜଗୁଲ ରହୁଥିଲେ । ତାଙ୍କର ଭାଷା, ତାଙ୍କର ଗୀତ ସମ୍ପୂର୍ଣ୍ଣ ଅଲଗା ଧରଣର । ଚାଙ୍ଗୁନୃତ୍ୟର ଭଙ୍ଗୀ ଖୁବ୍ ସରଳ । ଧାମଣା କାଠରେ ଢାଆଣ ଖୁବ୍ କମ୍ ଓଜନ । ପରିଧି ଗୋଲ—ଅଢ଼େଇ ଫେର, ଗୋଧି ଚମଡ଼ାରେ ଢାଆଣ ହୋଇଥାଏ । ତାଙ୍କ ଭାଷାର ଗୋଟିଏ ଗୀତରୁ କେଇ ପଦ ଦେଲି—

ପୁରୁଷ—କୁକୁଳ ସେମେଲାନ ସେଙ୍ଗାଡାରକୁ
　　କାହୁଡ଼ଆ ପାପମ୍ଭିତେ କୁଙ୍ଗ ସଇରେକୁ ।

ଅର୍ଥ—ଆସରେ ଧାଂଗଡ଼ି ବଣକୁ ଯିବା
　　ବଣରେ ଖୁବ୍ ସୁନ୍ଦର ସୁନ୍ଦର ଫୁଲ ଫୁଟିଛୁ,
　　　　ତୋତେ ମଖେଇ ଦେବି ।

ସ୍ତ୍ରୀ—କୁକୁଲ କମଙ୍ଗେର ସେଂଗାଡାରକୁ
　　ଜଡ଼ା ଗୁଡ଼ି ଆସ୍ତିଁ ଲମଣ ସାଇଁ ଦେ
　　　　ବାଜନାରକୁ ।

ଅର୍ଥ—ରେ ଭେଣ୍ଡିଆ ଚାଇ ଚାଲ
　　ପାହାଡ଼ରେ ଖୁବ୍ ସୁନ୍ଦର ଫୁଲ ଫୁଟିଛୁ
　　　　ମୋତେ ମଖାଇ ଦେବୁ ।

ଏଇ ଢ଼ଂଗୁ ୨।୩ ଜଣ କମଂଗେର (ଧାଂଗଡ଼ା) ଧରନ୍ତି । ମା' ଭଉଣୀମାନେ ଅଣ୍ଟାରେ ଧରି ଆଗକୁ ୩ ପାଦ ପଛକୁ ୩ ପାଦ ଝୁଲି ଝୁଲି ନାଚନ୍ତି ତାଙ୍କର ସେଇ ମଣ୍ଡପର ଆଗରେ । ଏବେ ବି ମଧ୍ୟ ସେଇ ନାଚ ଅଛି; କିନ୍ତୁ ସାମାନ୍ୟ ପରିବର୍ତ୍ତନ ଦେଖା ଦେଇଛି ତାଙ୍କ ପୋଷାକରେ । ଏମାନେ ଏହି ନାଚରେ ସମସ୍ତଙ୍କୁ ମୁଗ୍ଧ କରନ୍ତି ।

ଏମାନଙ୍କର ଶ୍ରେଷ୍ଠ ପର୍ବ ହେଲା ଅମ୍ବ ନୂଆଖିଆ, ରଜ, ଠାକୁରାଣୀ ରାଧୁଆ ବା ବସୁମତୀ ଗାଧୁଆ । ବର୍ଷାଦିନେ ପଣସ ପଚିଲାପରେ ଆଉ ଏକ ପର୍ବ ମାନନ୍ତି । ତାକୁ ତାଙ୍କ ଭାଷାରେ ଜନ୍ତାଲ କହନ୍ତି । ସେ ପର୍ବରେ ସେମାନେ ପତର ସରେଇଙ୍କୁ ପୂଜା ଦିଅନ୍ତି । ତାଙ୍କର ଆଶା ସେମାନେ ଭଲ ଫସଲ ପାଇବେ ।

ଏହି ଜୁଆଂଗମାନେ କେନ୍ଦୁଝରର ସଦର ସବ୍‌ଡିଭିଜନ ଭିତରେ ସୀମିତ । ସାରା ଜିଲାର ୧୩ ବ୍ଲକ ଭିତରୁ ଏମାନଙ୍କର ବସତି ମାତ୍ର ବାଂଶପାଳ, ତେଲକୋଇ ଓ ହରିଚନ୍ଦନପୁର ବ୍ଲକ ମଧ୍ୟରେ ଏମାନେ ଏ ଯୁଗରେ ମାତ୍ର ୧୨୪ଟି ଗ୍ରାମ ଭିତରେ ୧୨୭୨୪ ଜୁଆଙ୍ଗ ଓ ୨୭୨୦ଟି ପରିବାର ଭିତରେ ପର୍ବତର ପାଦଦେଶରେ ବସବାସ କରି ରହୁଛନ୍ତି ଓ ରହୁଥିଲେ ।

## ୨ । ଭୂୟାଁ ଓ ସେମାନଙ୍କର ନାଚ—

୧୦୦୦ ଖ୍ରୀଷ୍ଟାବ୍ଦ ବେଳକୁ ମଗଧ ଓ ବିହାର ଅଞ୍ଚଳରୁ ଆସି ପ୍ରବେଶ କଲେ ଭୂୟାଁମାନେ । ଏମାନେ ଜୁଆଙ୍ଗମାନଙ୍କୁ ତଡ଼ିଦେଲେ ଢେଙ୍କାନାଳ ଜିଲାର ମାଳଗିରି ଅଞ୍ଚଳକୁ ଓ ବସତି ଆରମ୍ଭ କଲେ ଗନ୍ଧମାଦନ ଗୋନାସିକାର ପାଦଦେଶରେ ।

ଆସ୍ତେ ଆସ୍ତେ ସେମାନେ ସଂଖ୍ୟାଗରିଷ୍ଠତା ଲାଭକଲେ । ଫଳରେ ରାଜ୍ୟରେ ବିସ୍ତୃତହୋଇ ପଡ଼ିଗଲେ । ଏମାନେ ମଧ୍ୟ ସେହି ବୁଦ୍ଧଦେବଙ୍କୁ ଅନୁସରଣ କରି ଅନେକ ଦିନ ରହିଲେ । ୧୧୨୮ ଖ୍ରୀଷ୍ଟାବ୍ଦରେ ମାନେ ୫୩୫ ଅମ୍ବୀରେ ଏହି ରାଜ୍ୟରେ ପ୍ରଥମେ ଜ୍ୟୋତିଭଞ୍ଜଙ୍କୁ ରାଜା କରାଇ ସମଗ୍ରଭ କ୍ଷେତ୍ରକୁ କେନ୍ଦୁଝରରେ ନାମିତ କରାଇଲେ ।

ଯେଉଁ ବିନସ୍ତ ବାବୁ ତାଙ୍କ ବହିରେ ଲେଖିଛନ୍ତି—ଏମାନେ ମଗଧର ଭୌମବଂଶ; କିନ୍ତୁ ରାଜା ମୌର୍ଯ୍ୟବଂଶୀୟ ଅର୍ଥାତ୍‌ ସୂର୍ଯ୍ୟବଂଶୀୟ । ଏମାନେ ପ୍ରଥମେ ଏ ରାଜ୍ୟରେ ମାଦଳ ଆବିଷ୍କାର କରି ମାଦଳ ସାଙ୍ଗରେ ଗୀତ ଧରି ନୃତ୍ୟ ଆରମ୍ଭ କଲେ । କିନ୍ତୁ ଦୁଃଖର କଥା ସେମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ଶିବ ଓ ପାର୍ବତୀଙ୍କର ପୂଜାରେ ଅଭ୍ୟସ୍ତ ହୋଇ ତାଣ୍ଡବ ଆରମ୍ଭ କଲେ । କାଳକ୍ରମେ ତାହା ଛଉରେ ପରିଣତ ହୋଇ ଚମ୍ପୁଆ ସବ୍‌ଡିଭିଜନ ଭିତରେ ସୀମିତ କରିଥିଲେ ।

ତାଙ୍କ ପର୍ବ ଭିତରେ ପୁଷ ପୁନେଇ ଶ୍ରେଷ୍ଠ । ଏହି ପୂର୍ଣ୍ଣିମା ଦିନ ସେମାନେ ରାଜାଙ୍କୁ ଅଭିଷେକ କରି ତାଙ୍କୁ ଭେଟି ଦେଉଥିଲେ । କାନ୍ଧରେ ବସାଇ ରାଜାଙ୍କୁ ସିଂହାସନରେ ବସାଉଥିଲେ । ଏ ଯୁଗରେ ରାଜା ନ ଥିଲେ ବି ତଥାପି ରାଜାଘରକୁ ସେମାନେ ଭୁଲି ନାହାନ୍ତି । ଭେଟି ବି ଭୁଲିଯାଇ ନାହାନ୍ତି ବା ପୁଷ ପୁନେଇ ବି ଭୁଲି ନାହାନ୍ତି । ଏ ଦିନରେ ଏମାନେ ମାଦଳ ଓ ଝାଞ୍ଜ ଧରି ସେହି ଜୁଆଙ୍ଗମାନଙ୍କ ଢାଙ୍ଗାରେ ସେହିମାନଙ୍କର ଲୋକନୃତ୍ୟ ପରିବେଷଣ କରନ୍ତି । ଏମାନେ ବହୁ ପ୍ରାଚୀନ କାଳରୁ ପୁଷ ପୁନେଇଁ, କରମା, ଠାକୁରାଣୀ ଗାଧୁଆ, ପଣା ସଂକ୍ରାନ୍ତି, ରଜ ଓ ନୂଆଁ ମହାସମାରୋହରେ ପାଳନ କରନ୍ତି । ପୁଷ ପୁନେଇ ଭଳି ନୂଆଁରେ ମଧ୍ୟ ଏମାନେ ରାଜାଙ୍କୁ ଫଳ ଭେଟି ଦିଅନ୍ତି । ରାଜା ଏମାନଙ୍କର ସର୍ଦ୍ଦାରମାନଙ୍କୁ ଶିରୋପା ଦେଉଥିଲେ ।

ଏମାନେ ମଧ୍ୟ ବୃଦ୍ଧଯୁଗୀସ୍ତ । ଶିବ-ପାର୍ବତୀଙ୍କୁ ପୂଜା କରିବା ସଙ୍ଗେ ସଙ୍ଗେ ଜଙ୍ଗଲରେ ବିଲ ପକାଇ ଭଲ ଫସଲ ଆମଦାନୀର ଆଶା ପୋଷଣ କରନ୍ତି । ଭୂୟାଁମାନଙ୍କର ଭାଷା, ବୋଲି ପ୍ରାୟ ସାଧାରଣ ଓଡ଼ିଆ ଭାଷା ସଙ୍ଗେ ସମାନ । ଆନନ୍ଦର ବିଷୟ ଏମାନଙ୍କ ସମୟରେ ଗୋଟିଏ ବାଦ୍ୟ ଆବିଷ୍କାର କରିଥିଲେ, ତାହା ନାଗରା । ସେମାନେ ସେହି ନାଗରା ସାହାଯ୍ୟରେ ଗୋଟିଏ ଗ୍ରାମରୁ ଅନ୍ୟ ଗ୍ରାମକୁ ସମ୍ବାଦ ପଠାଇ ପାରୁଥିଲେ । ପୂର୍ବକାଳୀନ ସୂଚନା ମଧ୍ୟ ଦେଇ ପାରୁଥିଲେ । ଏହି ନାଗରା ରାଜା ଜନାର୍ଦ୍ଦନ ଭଞ୍ଜଙ୍କ ସମୟରେ ଆବିଷ୍କାର ହୋଇଥିଲା । ଏହି ନାଗରା ମହୁଲ କାଠ ଖୋଲାହୋଇ ୨ୟରୁ ୩ ଫୁଟ ଆୟତନରେ ଏକ ଗୋଲାକାର ବସ୍ତୁ । ଏହା ଷଲୁ ଚମଡ଼ାରେ ଆଚ୍ଛାଦିତ ହୋଇଥିଲା ।

## ଭୂୟାଁ ନାଚ—

ଏମାନଙ୍କର ନାଚର ଭଙ୍ଗୀ ଜୁଆଙ୍ଗମାନଙ୍କଠାରୁ ଉନ୍ନତ ଧରଣର । ଏ ଯୁଗରେ ଭୂୟାଁମାନଙ୍କର ଝିଅମାନେ ଦେଖାଶିଖା ଓଡ଼ିଶାରାଣୀ ଛନ୍ଦରେ ଛନ୍ଦ ହୋଇ ଷଲୁକୁଣୀ ନାଚରେ ଭାଦ୍ରବ ମାସରେ ରଢ ପୂହାଇ ଦିଅନ୍ତି । ରଜ ପର୍ବରେ ୩ ଦିନ ଧରି ଢୋଲରେ ବସି ସେମାନଙ୍କର ଲୋକଗୀତ ପରିବେଷଣ କରନ୍ତି ଏବଂ ଶେଷ ରଜ ଦିନ ରଜକୁ ବାହେଇ ଦେବାକୁ ଯାଇ ପ୍ରତ୍ୟେକ ଭୂୟାଁ ଗ୍ରାମରେ ଝିଅ ବୋହୂମାନେ ଢୋଲ ଓ ମହୁରୀ ବାଜା ସାଙ୍ଗରେ ପାଦ ମିଳାଇ ନାଚ କରନ୍ତି । ତାହା ସଦର ଅନୁବିଭାଗ ଅଞ୍ଚଳରେ ଦର୍ଶନୀୟ । ଠାଏ ଠାଏ

ଭୂୟାଁମାନଙ୍କ ଭିତରେ ଯୁବକମାନେ ଶିକ୍ଷାର ଉନ୍ନତି କରି ପାଲି ଗାୟକ ମଧ୍ୟ ହୋଇ ପାରିଛନ୍ତି । ଏ ଯୁଗର ସାନ୍ତାଳ ଓ ଅନ୍ୟ ଉପଜାତି ସ୍ତ୍ରୀଅମାନେ ଏମାନଙ୍କୁ ଅନୁସରଣ କରୁଛନ୍ତି ।

## ଶବର ନୃତ୍ୟ—

(ଘୁମୁରା) ଘୁମୁରାର ପ୍ରଚଳନ କେନ୍ଦୁଝର ଜିଲାର ଅପର କେନ୍ଦୁଝରରେ ନ ଥିଲେ ମଧ୍ୟ ଏହା ବହୁତ ଦିନ ପୂର୍ବରୁ ଆନନ୍ଦପୁର ସବ୍‌ଡିଭିଜନର ଅଧିକାଂଶ ଶବର ପଲ୍ଲୀରେ ପରିବେଷିତ ହେଉଥିଲା ଏବଂ ଏବେ ବି ହେଉଛି । ଘୁମୁରା ସାଧାରଣତଃ ୧ଫୁଟ କଲସୀରେ ତିଆରି । ଏହାର ମୁହଁରେ ଗୋଧି ଚମଡ଼ା ଆଚ୍ଛାଦିତ ହୋଇଥାଏ ଏବଂ ପଛ ପାଖରେ ଗୋଟିଏ କଣା ରହିଥାଏ । ଏହି ବାଦ୍ୟ ଓ ନୃତ୍ୟରେ ସ୍ତ୍ରୀଅ ପିଲମାନେ ସାଧାରଣତଃ ଭାଗ ନିଅନ୍ତି ନାହିଁ । ଏହି ଘୁମୁରା ନୃତ୍ୟ ଝୁଲଣ ବା ଗହ୍ମା ପୂର୍ଣ୍ଣିମାରେ ଆରମ୍ଭ ହୋଇ ଗୋଟିଏ ସପ୍ତାହ ପର୍ଯ୍ୟନ୍ତ ରହେ । ଗୋଟିଏ ନୃତ୍ୟ ଦଳରେ ପାଞ୍ଚ ଛଅଟି ଘୁମୁରା ଥାଏ । ସେମାନଙ୍କର ନୃତ୍ୟ ପରିବେଷଣ ଅନ୍ୟ ଆଦିବାସୀମାନଙ୍କ ଅପେକ୍ଷା ପୃଥକ ।

ସେମାନଙ୍କର ଲୋକଗୀତ—

କରମ ପଡ଼ିଲେ ମୋର<br>
ଗହ୍ମା ପୁନେଇଁରେ ମୁଁ କରେ ଘର,<br>
ମୋ ବାଦୁଅ ମଞ୍ଚୀ<br>
ଠାକୁର କୋହନେ ପର ।

ଏହି ଶବରମାନେ ଏ ଯୁଗରେ ଏ ନୃତ୍ୟର ଭଙ୍ଗୀ ଆଉ ଟିକିଏ ଉନ୍ନତ ଧରଣର ଗଢ଼ିଲେଣି ।

## ଦଣ୍ଡ ନୃତ୍ୟ—

ଦଣ୍ଡ ନୃତ୍ୟ କେବଳ ଆଦିବାସୀମାନଙ୍କ ମଧ୍ୟରେ ସୀମିତ ନୁହେଁ । ଏହାକୁ ବେଶୀ ଯେହି ଶବର ଜାତିସ୍ଥ ଲୋକମାନେ ପରିବେଷଣ କରନ୍ତି । ଏହି ନୃତ୍ୟ (ପୁରୁଷ ଓ ସ୍ତ୍ରୀ) ଏହି ଦୁଇଜଣଙ୍କ ମଧ୍ୟରେ ସୀମିତ । ଏହି ନୃତ୍ୟ ଶବରମାନେ ଘୁମୁରା ନୃତ୍ୟ ସାଙ୍ଗରେ ବେଶୀ ପରିମାଣରେ ପରିବେଷଣ କରନ୍ତି ।

(ଦଣ୍ଡ ନୃତ୍ୟର—ଗୀତ)

ପୁ—　ଆଦ୍ୟରେ ବନ୍ଦନ ବଣ ଦେବତା ମୁଁ
　　　ପଛକ୍ରେ ବନ୍ଦା କରନ । ଚଢ଼େଶ୍ୱାଣୀ···

ସ୍ତ୍ରୀ—　ନୂଆ ଘର ସୁଖ ଶରଧା ଭଙ୍ଗି ମୁଁ
　　　ତୋହର ହାତ ଧରନ । ଚଢ଼େଶ୍ୱା···

ପୁ—　ବଣ ଦେବୀ ପୂଜ ବାପ ମାଆ ତେଜ
　　　ତୋତେ ମୁଁ କୋଳେ ଧରନ ।

ସ୍ତ୍ରୀ—　ବଣ ଦେବୀ ସେ ବଣରେ ରହିବା
　　　ମଥାରେ ସଜାଇ ମଣି । ଚଢ଼େଶ୍ୱାରେ—

## ମୁଣ୍ଡା ନୃତ୍ୟ—

ଏ ଶବରମାନଙ୍କ ବ୍ୟତୀତ ମୁଣ୍ଡାଙ୍କର ମଧ୍ୟ ପରମ୍ପରାଗତ ବାଦ୍ୟନୃତ୍ୟ ଅଛି । ସେମାନେ ଦଶହରା ସମୟରେ ଦେବୀ ଦୁର୍ଗାଙ୍କ ଭଜାନ୍‌ରେ ୭।୮ ଜଣ ପୁରୁଷ ତାଙ୍କ ସ୍ତ୍ରୀମାନଙ୍କ ପିନ୍ଧା ଶାଢ଼ୀରେ ନିଜକୁ ସଜାଇ କାଂସାବେଲ, ବୀଣା (ନାଉ ତୁମ୍ବିରେ ଓ ବାଉଁଶ ଲମ୍ବ କାଠିରେ ଢଆଣ କରି ଭିତରେ ଗୋଟିଏ ତାର ଦେଇ) ପରିବେଷଣ କରନ୍ତି । ତାଙ୍କର ବାଜା ଏକ ବିଚିତ୍ର ପ୍ରକାର, ସଙ୍ଗୀତ ମଧ୍ୟ ତଦ୍ରୂପ । ତାଙ୍କର ସଙ୍ଗୀତରୁ ଦୁଇ ପଦ ତଳେ ଉଦ୍ଧାର କଲି ।

ପର୍ବତ ଶିଖରେ ମୟୁର ନାଚେ
　　　ସାହାଜ କୋଲାଇ
　　　ଦେବୀ ଦୁର୍ଗା ସାହାଜ କୋଲାଇ ॥
ବଣ୍ଡା ଚେତାନେ ଗୁଟୁ ମେଟା
　　　ଗୁଟୁ ଚେତନା ଘା ଘୁରି ମେନା
　　　ସାଂଗ ମାରିଁ ରେ
ବଦା ସିଂଗ ବାଲା ମେ ଗାଲେ ରମା
　　　ଗୁଡୁ ପତର ଏ କାଇନା
　　　ତୁମକୁ ହବାମେ ଉଓ୍ୟା

ଗାଲଂଗା ତେଗ୍ର ଯାଇନା
ଝିଣି ତେଜ ନେଲେଓ୍ୟା
ଜାସ୍ତ ମେଗ୍ର ଜାସ୍ତନା
ବଂଯା ବାଜେ ଯାକୁ ଖେଲାଇରେ
ଦେଖି ଦୁର୍ଗା ଯାକୁ ଖେଲାଇ ॥

**ବାଥୁଡ଼ି—**

ଏ ଦୁଇଟି ସମ୍ପ୍ରଦାୟ ଆଦିବାସୀ ଶ୍ରେଣୀଭୁକ୍ତ । ଏମାନେ କେବଳ କେନ୍ଦୁଝର ସଦର ମହକୁମାରେ ଦେଖାଯାଆନ୍ତି ନାହିଁ—ଏମାନେ ଆନନ୍ଦପୁର, ଚମ୍ପୁଆ, ବଡ଼ବିଲ ଅଞ୍ଚଳରେ ଠାଏ ଠାଏ ବସବାସ କରୁଛନ୍ତି । ଏମାନଙ୍କର ନୃତ୍ୟକଳା ଜୁଆଙ୍ଗ ଭୂୟାଁମାନଙ୍କ ଅପେକ୍ଷା ଉନ୍ନତ ଧରଣର । ଏମାନେ ବେଶୀ ବିଜୟା ଦଶମୀକୁ ମାନନ୍ତି । ତା' ଛଡ଼ା ଏମାନଙ୍କର ଝିଅମାନେ ଖଲ୍ଲୁକୁଣୀ ନାଚ, ରଜ ଗୀତରେ ଅଂଶ ଗ୍ରହଣ କରନ୍ତି । ଏହି ରଜ ପର୍ବକୁ ସାଧାରଣତଃ ଏହି ଜିଲ୍ଲାରେ ଉନ୍ନତ ଜାତିମାନଙ୍କ ଅପେକ୍ଷା ଅନୁନ୍ନତ ଜାତିମାନେ ବେଶୀ ମାନନ୍ତି । ସେମାନଙ୍କର ବୋଲିବାର ଠାଣି ଚମତ୍କାର । ତାଙ୍କର ନୃତ୍ୟର ନାମ 'ବଂଶୀ ଭେଦ' । ତାଙ୍କ ଗୀତରୁ ଦୁଇ ପଦ ନିମ୍ନରେ ଉଦ୍ଧାର କଲି—

ଲିପାଏଟେ ବଣ ଲାଇଟି
ତସ୍ରପାଏ ଟେ ବଣ ଲାଇଟି
ବଣସି ଦେରେଲରେ ଲାଇଟି
ସିମେଲ୍ ଦରେ ।
ସିଙ୍ଗ ଦସିମ୍ ସିସିଲିକ
ବାଲେ ଯେତେ ଲଇଟି
ମାକେନ୍ଦ୍ରଅର ଝିମମଲ ଝତ୍ୟାଇ ସିନା
ଗୁଲ ବିନାସ୍ତୁ ବନନେ ସମାସ୍ତୁ
ଜାଗର ବିନାସ୍ତୁ ତମନ ସେମୀ
ବକୁ ଲିକାନ ସିଷ୍ଟିସ୍ତୁ ବରତ
ଲାଇଟିକ ସିଦେଲି ଦେରେ ॥

**କୋହ୍ଲ ନୃତ୍ୟ—**

କୋହ୍ଲ ଜାତିର ଲୋକମାନେ ଜୁଆଙ୍ଗ ଓ ଭୂୟାଁମାନଙ୍କଠୁଁ ନୀଚ ହେଲେ ମଧ୍ୟ ଏମାନଙ୍କର ଚଳଣି ଜୁଆଙ୍ଗ ଭୂୟାଁ ଓ ଅନ୍ୟ ଆଦିବାସୀମାନଙ୍କ ଅପେକ୍ଷା

ଅତ୍ୟନ୍ତ ଉନ୍ନତ । ଏମାନଙ୍କର ପରିପାଟୀ ମଧ୍ୟ ବେଶ୍ କମନୀୟ । ଏ ଜାତିର ଧାଙ୍ଗଡ଼ା ଓ ଧାଙ୍ଗଡ଼ିମାନେ ନାଚିବାବେଳେ ଅନ୍ୟ କୌଣସି ଧାଙ୍ଗଡ଼ା ବା ଧାଙ୍ଗଡ଼ି ପାଦ ମିଳାଇ ନ ନାଚି ଜାଣିଲେ ସେମାନଙ୍କୁ ତାଙ୍କ ଭିତରୁ ବାହାର କରି ଦିଅନ୍ତି । ଏମାନଙ୍କର ନାଚର ଭଙ୍ଗୀ ଜୁଆଙ୍ଗ ବା ଭୂୟାଁମାନଙ୍କ ପୃଥ-ଟିଅ ଭଳି ନୁହେଁ । ଏମାନଙ୍କର ନାଚର ଶୈଳୀ ଦୁଇ ପାଦ ଆଗକୁ ତିନି ପାଦ ପଛକୁ ହେଲେ ମଧ୍ୟ ଅନ୍ୟମାନଙ୍କଠାରୁ ଉନ୍ନତତର । ଏମାନଙ୍କର ଗୋଟିଏ ଲୋକଗୀତ ନିମ୍ନରେ ଦେଲୁ—

ଦଂ—ସେରେଞ୍ଜ (ବାହାଘର ଗୀତ)

ଧନ ଦୁରପ୍ ଦୁମାରି ଅଲାଃ କାଥା କାନା,<br>
ନତ୍ର ମେନାଃ ଧୀନାଃ ବାଯୁ<br>
ତା ହେନ୍, ଅଲପାଲ ହାଥ ଦୁଂମାରି<br>
ଦଣମ୍ କଥାକାନା, ନତ ମେନାଃ ଧୀନାଂ ଆରହଁ ତାହେନ<br>
ଅଲଗେ ମେନାଃ ଜତ ବକୋଃ ଦାଲେଦାକା<br>
ଅଲାବ୍ ଚେଦଃଦେ ରେଲ୍ ପତାଅ ଲେକା ।

## ଛଉନୃତ୍ୟ —

ଉପରଲିଖିତ ଲୋକନୃତ୍ୟ ଓ ପଶୁପକ୍ଷୀମାନଙ୍କର ଶବ୍ଦ ଛନ୍ଦ ମଧ୍ୟ ଆହରଣ କରି ଆଉ ଏକ ଲୋକନୃତ୍ୟ ଶହେ ବର୍ଷ ପୂର୍ବେ ଗଢି ଉଠିଥିଲା । ଯାହାକି ଆମ ରାଜ୍ୟରେ ଛଉନୃତ୍ୟ ଭାବରେ ପରିଚିତ ଥିଲା । ଦୁର୍ଭାଗ୍ୟବଶତଃ ଏହି ନୃତ୍ୟକଳା କେବଳ ଚମ୍ପୁଆ ସବ୍‌ଡିଭିଜନର ଅଣନପାଟ ମୌଜାରେ ଅଦ୍ୟାବଧି ସଞ୍ଜିବିତ । ଏହି ଅଣନପାଟ ଏକ କିମ୍ବଦନ୍ତୀଭରା ବୌଦ୍ଧପୀଠ ।

ବୌଦ୍ଧ ଶିଳାଲିପି ଏ ଗ୍ରାମରେ ଏ ଯାବତ୍ ଜାଜ୍ୱଲ୍ୟମାନ । ଏହି ନୃତ୍ୟ ଅଣନପାଟ ମୌଜାରେ ୩୮ଟି ଦଳରେ ଗଠିତ । ଏହି ନୃତ୍ୟର ସହଯୋଗୀ ହିସାବରେ ବଂଶୀ ଲୋକମାନଙ୍କ ମଧ୍ୟରେ ଶିହରଣ ଆଣିଦିଏ । ମାଦଳ, ନାଗରା, ଯୋଡ଼ିନାଗରା ଇତ୍ୟାଦି ଯନ୍ତ୍ର ଏ ନାଚର ସହାୟକ ।

ନୃତ୍ୟ ହିସାବରେ ରାଧାଙ୍କର ମାନଭଞ୍ଜନ, କୃଷ୍ଣଲୀଳା, କଂସ ବଧ, ରାବଣ ବଧ, ନୃସିଂହ ନାଚ, ହନୁମାନ ସେତୁବନ୍ଧ ନିର୍ମାଣ, ଭକ୍ତ ପରୀକ୍ଷା, ସୀତା ସ୍ୱୟମ୍ବର ଇତ୍ୟାଦି ନୃତ୍ୟନାଟିକାଗୁଡ଼ିକ ଛଉନୃତ୍ୟକୁ ବଞ୍ଚାଇ ପାରିଛି ।

ଏହା କେନ୍ଦୁଝରରେ ଜନ୍ମ ନେଇଥିଲେ ମଧ୍ୟ ପଡ଼ୋଶୀ ରାଜ୍ୟ ମୟୂରଭଞ୍ଜ ଓ ସଢ଼େଇକଳାର ଅଧିବାସୀମାନେ ତାଙ୍କର ଲୋକନୃତ୍ୟ ବୋଲି ଗର୍ବ କରନ୍ତି । ବଂଶୀ ବ୍ୟତୀତ ନାଟକର ଅନ୍ୟ ଯନ୍ତ୍ରପାତିଗୁଡ଼ିକ ଏଥିରେ ବ୍ୟବହାର କରାଯାଏ ।

## ଭାଲୁକୁଣୀ ନାଚ—

ଭାଲୁକୁଣୀ ନାଚ ବର୍ଷର ପ୍ରତି ଭାଦ୍ରବ ମାସର ପ୍ରତ୍ୟେକଟି ରବିବାରରେ ପାଳିତ ହୁଏ । ଏହା କେବଳ ଭୂୟାଁ ଆଦିବାସୀ ଝିଅମାନଙ୍କ ମଧ୍ୟରେ ସୀମିତ ନୁହେଁ । ଏହାକୁ ଓଷାର ପ୍ରବଚନ ଦେଇ ଅଧିକାଂଶ ହିନ୍ଦୁ ଘରର ଝିଅମାନେ ପାଳନ କରନ୍ତି । ଏହା ଦୁର୍ଗାଦେବୀଙ୍କର ଗୋଟିଏ ପର୍ବ ।

## ରାମଲୀଳା—

ଏହା ଛଉନୃତ୍ୟ ନ ହେଲେ ବି ସେହି ଧରଣର । ରାମାୟଣର ସବୁ ଅଂଶ ଏହି ନୃତ୍ୟ ଆକାରରେ ପରିବେଷଣ ହୁଏ । ଏହା ପ୍ରାଚୀନ କାଳରେ କେନ୍ଦୁଝର ଉପକଣ୍ଠ କଂସାରି ସାହିରେ, ଆନନ୍ଦପୁରର ବୀରଗୋବିନ୍ଦପୁର, କୋଡ଼ାପଡ଼ାରେ, ଅଙ୍ଗାରୁଆରେ, ରାଇତୋଲାରେ ପରିବେଷଣ କରାଯାଉଥିଲା । କାଳକ୍ରମେ ଏହାର ଅବସାନ ଘଟି କେନ୍ଦୁଝର ଉପକଣ୍ଠରେ ଏକ କଣ୍ଢେଇ ନୃତ୍ୟ (ପୁତୁଲି ନାଚ) ଭାରତର ଅଧିକାଂଶ ଅଞ୍ଚଳରେ ପରିବେଷିତ ହୋଇ ଜନାଦୃତ ହୋଇ ପାରିଛି ।

## ଦକ୍ଷିଣୀ ନାଚ—

ଏହାକୁ ଅନ୍ୟ ଅର୍ଥରେ ଗୋଷ୍ଠିପୁଅ ନୃତ୍ୟ ବୋଲି କହନ୍ତି । ଏହା ସ୍ୱର୍ଗୀୟ ରାଜା ଗୋପୀନାଥ ଭଞ୍ଜଙ୍କ ଅମଳରେ ବହୁ ପ୍ରସାର ଲାଭ କରିଥିଲା । ଏହାର ଉଦ୍ୟୋକ୍ତା ପ୍ରଥମ କରି ଅଙ୍ଗାରୁଆର ସ୍ୱର୍ଗୀୟ କୃଷ୍ଣଚନ୍ଦ୍ର ପଣ୍ଡା ଥିଲେ । ଏହା ଆମ ରାଜ୍ୟର ଲୋକନୃତ୍ୟ ନ ହୋଇଥିଲେ ମଧ୍ୟ ଏହା ରାଜା ଗୋପୀନାଥ ଭଞ୍ଜଙ୍କ ସମୟରେ ଆରମ୍ଭ ହୋଇଥିଲା । କାଁ ଭାଁ ଏହାର ଚର୍ଚ୍ଚା ହେଉଛି ।

## ଭାଗବତ—

ଭାଗବତ ଟୁଙ୍ଗି ଗ୍ରାମମାନଙ୍କରେ ବିଶେଷ ପରିମାଣରେ କେଉଁଠି ଆଜିକାଲି ନ ଥିଲେ ବି ବର୍ତ୍ତମାନ ଯୁଗରେ ଦୁର୍ନୀତି ସାଗରରେ ଲୋକମାନେ ସ୍ନାନ କରି ପୁଣି ସେହି ଭାଗବତ ଟୁଙ୍ଗି ଆଡ଼କୁ ଫେରିଯାଇ ସେହି ଅଦୃଶ୍ୟ-

ଠାକୁରଙ୍କ ଅନୁସରଣ କରିବାକୁ ଠାଏ ଠାଏ ଭାଗବତ ଟୁଙ୍ଗିରେ ଭାଗବତ ଶୁଣିବାକୁ ଆରମ୍ଭ କଲେଣି । ଏ ମହତ୍ତ୍ୱମୟ ପରମ୍ପରା ଲୋକଗୀତ ନ ହେଲେ ବି ଏହା ଅଦୃଶ୍ୟ ବାଣୀ ସ୍ୱଭାବରେ ସୁପ୍ରଚଳିତ ।

## ସଂକୀର୍ତ୍ତନ—

କେନ୍ଦୁଝର ରାଜ୍ୟରେ ଅନେକଗୁଡ଼ିଏ ସଂକୀର୍ତ୍ତନ ଦଳ ଗଢ଼ାହୋଇ ମାଟିରେ ମିଶି ଯାଇଥିଲେ ମଧ୍ୟ ଅଧିକାଂଶ ଗ୍ରାମମାନଙ୍କରେ ଆମ୍ଭମାନଙ୍କର ନିହାତି ଜଣା ସେହି ନିତାଇ ଗୌରଙ୍କର ପାରମ୍ପରିକ କୀର୍ତ୍ତନ ବା ଜୟଦେବଙ୍କର ସଂସ୍କୃତ ସଙ୍ଗୀତ ପରିବେଷଣ ହୋଇ ସେହି ଅଦୃଶ୍ୟ ଠାକୁରଙ୍କ ନାମ ସଂକୀର୍ତ୍ତନ ଚାଲିଛି ।

ଏହି କେନ୍ଦୁଝର ଜିଲ୍ଲାର ଆନନ୍ଦପୁରରେ ଦଧିବାମନଜୀଉଙ୍କ ନିକଟରେ କେନ୍ଦୁଝରର ବଳଦେବଜୀଉଙ୍କ ନିକଟରେ ଥରେ ଦୋଳ ପୂର୍ଣ୍ଣିମା ସମାରୋହରେ ପାଳନ କରାଯାଉଥିଲା । ଯେତେବେଳେ ଠାକୁରଙ୍କ ପ୍ରତିମା ବକେରେ ସଂକୀର୍ତ୍ତନର ପଟୁଆର ହେଉଥିଲା, ଲୋକମାନେ ଉନ୍ମତ୍ତ ହୋଇ ଠାକୁରଙ୍କ ନାମ ଗାଇ ଗାଇ ଠାକୁରଙ୍କୁ ବନ୍ଦେ କରୁଥିଲେ; କିନ୍ତୁ କାଳକ୍ରମେ ଏହା ଲୋପ ପାଇ ନ ଥିଲେ ବି ଖାଲି ସଂକୀର୍ତ୍ତନର ମହତ୍ତ୍ୱ କେହି ଉପଲବ୍ଧି କରୁନାହାନ୍ତି । ରାଧାକୃଷ୍ଣଙ୍କ ପ୍ରେମରେ ନିଜକୁ ହଜାଇ ଦେଇ ଯେଉଁ ଭାଇମାନେ ସଂକୀର୍ତ୍ତନ ଦଳରେ ମୃଦଙ୍ଗର ତାଳେ ତାଳେ ନୃତ୍ୟ କରନ୍ତି, ବାସ୍ତବିକ ସେହି ଲୋକନୃତ୍ୟ ହିଁ ଉପଭୋଗ ଯୋଗ୍ୟ । ଏହା ପରମ୍ପରାଗତ । ଏହା ଯୁଗ ଯୁଗ ଧରି ବଞ୍ଚି ରହିଛି ଓ ରହିଥିବ । ଏ ଯୁଗର ଭେଜାଲ ହାଓ୍ୱା ସେ ପରମ୍ପରାକୁ ନଷ୍ଟ ବା ଛିନ୍ନଭିନ୍ନ କରି ପାରିବ ନାହିଁ ।

## ଡ୍ରମ ଓ ବାଜାଦଳ ନୃତ୍ୟ—

ଆମ ରାଜ୍ୟର ହରିଜନ ଭାଇମାନେ ଅନେକଗୁଡ଼ିଏ ଡ୍ରମବାଜା, ଢୋଲବାଜା, ତେଲିଙ୍ଗିବାଜା ଦଳ ଗଠନ କରି ବିବାହ, ବ୍ରତ ଇତ୍ୟାଦି ଶୁଭ କାମରେ ଉପରୋକ୍ତ ବାଜାର ପ୍ରଚାର କରି ଜୀବିକା ନିର୍ବାହ କରୁଛନ୍ତି ।

ଏହିସବୁ ଦଳର ଏକ ସମାବେଶ ହୁଏ କେନ୍ଦୁଝରର ଉପକଣ୍ଠରେ । ତାହା ଶ୍ରୀ ଶଙ୍କର୍ଷଣ ରାଉତଙ୍କର ଦୁର୍ଗାଦେବୀ ଭବାନୀ ପର୍ବରେ ହିଁ ଅନେକ ଉପଭୋଗ କରିବାକୁ ସୁଯୋଗ ଲାଭ କରନ୍ତି । ଏମାନଙ୍କ ଦଳ ମଧ୍ୟରେ ପରମ୍ପରାଗତ ନାଗରା, ମାଦଳ, ଘୁମୁରା, ଫରି ଖେଳ, ସଂକୀର୍ତ୍ତନ ଦଳ ମଧ୍ୟ ସେମାନଙ୍କର କଳା ପ୍ରଦର୍ଶନ କରି ପୁରସ୍କୃତ ହୁଅନ୍ତି ଏବଂ ଲୋକମାନଙ୍କ ହୃଦୟ ଆକର୍ଷଣ କରନ୍ତି ।

## ବଉବାକା -

ଏହା ନାଗସ୍ୱର ଅନ୍ୟରୂପ । ଏହାର ପରିଧି ୫ ଫୁଟ । ଗୋଲ ଆୟତନ । କାଠରେ ତିଆରି । ଏହାର ଉପରିଭାଗ ଷଣ୍ଢ ଚମଡ଼ାରେ ଗୁହଣୀ । ଏହା ଜଣେ କାଠିରେ ତାଲଦେଇ ମାଡ଼ଦିଏ ଓ ବଳଦ ଗାଡ଼ିରେ ବୃହାହୋଇ ସ୍ଥାନାନ୍ତରିତ ହୁଏ । ଏହା ଠାକୁରଙ୍କ ମନ୍ଦିର ଭିତରେ ଏକ ବଡ଼ ବାଜା ହିସାବରେ ଗ୍ରହଣୀୟ । ଏ ଯୁଗରେ ଏହାର ବିଶେଷ ପ୍ରଯୋଗ ନାହିଁ ।

## ପାଟୁଆ ନୃତ୍ୟ—

ଏହା ପ୍ରାୟ ହରିଜନ ସଂପ୍ରଦାୟର ଲୋକମାନଙ୍କ ମଧ୍ୟରେ ସୀମିତ । ଏହା ସାଧାରଣତଃ ପଣା ସଂକ୍ରାନ୍ତି ପୂର୍ବରୁ ଶିବ-ପାର୍ବତୀଙ୍କୁ ଅନୁସରଣ କରି ଗୋଟିଏ ଢୋଲବାଦ୍ୟ ସାଙ୍ଗରେ ଧରି ବିଭିନ୍ନ ଦଳ ମାଧ୍ୟମରେ ପରିବେଷଣ କରାଯାଏ । ଏହା ଉଡ଼ା ପର୍ବରେ କେନ୍ଦୁଝରର ଆନନ୍ଦପୁର ସବ୍‌ଡିଭିଜନ ଭିତରେ ସଦର ଅଣ୍ଡ ଅଞ୍ଚଳର କାଳିଆହତା ଅଞ୍ଚଳରେ ଓ ଚମ୍ପୁଆର କେଚେକୋଅଞ୍ଚଳରେ ପରିବେଷଣ କରାଯାଏ । ଏଥିରେ ସାଧାରଣତଃ ହରିଜନମାନେ ବେଶୀ ଅଂଶରେ ଭାଗ ନିଅନ୍ତି । ଏହି ନୃତ୍ୟ ପଣା ସଂକ୍ରାନ୍ତିର ଅବ୍ୟବହିତ ପୂର୍ବରୁ ଆରମ୍ଭ ହୋଇ ପଣା ସଂକ୍ରାନ୍ତିରେ ଶେଷ ହୁଏ । ସେହିଦିନ ନୃତ୍ୟ ଶେଷରେ କେହି କେହି ନିଆଁରେ ଚାଲି, ପିଠି ଫୋଡ଼ାଇ, ଜିଭ ଫୋଡ଼ାଇ ମାନସିକ ପୂଜା ନିର୍ବାହ କରନ୍ତି । ଏହାକୁ ମୋରଲବନ୍ଦୀ ଅଞ୍ଚଳରେ ଝାମୁଯାତ୍ରା ବୋଲି କହନ୍ତି ।

## ଯାତ୍ରା ଓ ସୁଆଙ୍ଗ—

୧୬୦୦ ଖ୍ରୀଷ୍ଟାବ୍ଦ ବେଳକୁ କୁଅଁର ଭୂୟାଁଙ୍କ ବ୍ୟତୀତ ୩୬ ପାଟକ ତଥା ବ୍ରାହ୍ମଣ, କରଣ, କ୍ଷତ୍ରିୟମାନେ ଏ ରାଜ୍ୟରେ ବସବାସ କରି ଏ ରାଜ୍ୟର ଶିକ୍ଷାଗତ ଅଭିମୁଖ୍ୟ ବୃଦ୍ଧି କରି ପାରିଥିଲେ । ଆନନ୍ଦପୁର ସବ୍‌ଡିଭିଜନ ମଧ୍ୟ କେନ୍ଦୁଝର ଷ୍ଟେଟରେ ସାମିଲ ହୋଇ ସାରିଥିଲା । କଟକ ଜିଲ୍ଲା ଓ ବାଲେଶ୍ୱର ଜିଲ୍ଲାର ମନୀଷୀମାନେ ଏହି କେନ୍ଦୁଝରର ବାସିନ୍ଦା ହୋଇ ସାରିଥିଲେ । ଫଳରେ ରାମଲୀଳା, ଯାତ୍ରା ଓ ସୁଆଙ୍ଗର ପରିବେଷଣ ଏ ରାଜ୍ୟରେ ହୋଇ ପାରୁଥିଲା । ସୁଆଙ୍ଗ ଅର୍ଥାତ୍ ପଶୁ-ପକ୍ଷୀମାନଙ୍କ ମୁଖା ପିନ୍ଧି ପିଲାମାନଙ୍କର ନୃତ୍ୟ । ଏହାର ଚଳଣି ପ୍ରାୟ ୧୮୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଲାଗି ରହିଥିଲା । ଏହା ଏ ଯୁଗର କଥାକଳୀ ନୃତ୍ୟ ରୂପେ ପରିଚିତ । ସେ କାଳରେ ମଦନା ଦ୍ୱିଷ୍ଟିର ସୁଆଙ୍ଗ ଯାତ୍ରା

ଓ ମଧୁପୁରର ସାହୁ ଦଳର ସୁଆଙ୍ଗ ଚର୍ଚ୍ଚାକର୍ମିନ ଥିଲ । ୧୮୦୦ ଠାରୁ ୧୯୦୦ ଖ୍ରୀଷ୍ଟାବ୍ଦ ମଧରେ ସୁଆଙ୍ଗର ପ୍ରଚଳନ ଆମର କେନ୍ଦୁଝର ଉପକଣ୍ଠରେ ପୁରୁଣା ବଜାର, କଂସାଶସାହି ପିଲମାନଙ୍କ ଦ୍ୱାରା ପରିବେଷଣ କରାଯାଉଥିଲା । ଏହାର ପ୍ରସାର ମଧ୍ୟ ଆନନ୍ଦପୁରର ଅଣ୍ଟ ଅଞ୍ଚଳର ବେଲସୁନ୍ଦରୀ, ରାଇତୋଳା ମୌଜା ପର୍ଯ୍ୟନ୍ତ ବ୍ୟାପିଥିଲା ।

ଏତଦ୍‌ବ୍ୟତୀତ ମରେଇଗାଁ, ଆମ୍ବଗଡିଆ, ପଦନା ମରେଇ, ବେଲବାହାଳି, ମୁଗୁପୁର ରାହାଦଳ ଦୀର୍ଘଦିନ ଧରି ବିଭିନ୍ନ ଜାଗାରେ ଯାତ୍ରା କରି ଲୋକମାନଙ୍କର ପ୍ରୀତିଭାଜନ ହୋଇ ପାରିଥିଲେ ।

## ଥିଏଟର—

୧୯୦୦ର ବହୁ ପୂର୍ବରୁ କେନ୍ଦୁଝର ଜିଲ୍ଲାରେ ଥିଏଟର ଥିଲା ବୋଲି ଜନମୁଖରେ ପରିଚିତ । ୧୯୦୦ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗୀୟ ବଳିଆ ବାନାର୍ଜୀଙ୍କ ନିର୍ଦ୍ଦେଶନାରେ କେନ୍ଦୁଝର ଉପକଣ୍ଠରେ ବଳଭଦ୍ର ସାହିତ୍ୟ ସଂସଦ ତରଫରୁ ଥିଏଟର ପରିବେଷିତ ହେଉଥିଲା । ସେଉଁ ନଗର ଭବନର ନିର୍ମାଣ କେନ୍ଦୁଝର ଜିଲ୍ଲାର ସରକାରୀ ଗ୍ରନ୍ଥାଗାରରେ କାମ କରୁଥିବା ଚିତ୍ରିତ କଳାକାର ହରିହର ମୁଖାର୍ଜୀଙ୍କର ପ୍ରଥମ ଅବଦାନ ପ୍ରଶଂସନୀୟ । ସେହି ମହାଶୟଙ୍କ ବାରମ୍ବାର ଅନୁରୋଧରେ ରାଜା ବଳଭଦ୍ର ଭଞ୍ଜଦେଓ ନଗର ଭବନଟି ନିର୍ମାଣ କରାଇ ପାରିଥିଲେ । ତାହାର ପ୍ରମାଣ ସ୍ୱରୂପ କେନ୍ଦୁଝରର ଆଧୁନିକ ନଗର ଭବନ ମୂକସାକ୍ଷୀ ।

ସେହି ସମୟରେ ନୃସିଂହ ନାରାୟଣ ଥିଏଟର ସଂସ୍ଥା ଆନନ୍ଦପୁରରେ ଦୀର୍ଘ ବର୍ଷ ଧରି ରାଧାକୃଷ୍ଣଙ୍କ ରାସ ଅଭିନୟ ୧୯୪୯-୫୫ ପର୍ଯ୍ୟନ୍ତ ବହୁ ରହିଥିଲା । ୮ ପରମାନନ୍ଦ ମିଶ୍ର ଶ୍ରୀକୃଷ୍ଣଙ୍କ ରାସ ଲେଖି ନିର୍ଦ୍ଦେଶ ଦେଉଥିଲେ । ଏହି ରାସ ଯାହା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଥିଏଟର କରି ସୁନାମ ଅର୍ଜନ କରିଥିଲେ । ଏହାର ମୁଖ୍ୟ ହିସାବରେ ଆନନ୍ଦପୁରର ଯୋଗେଶ୍ୱର ପାଢ଼ି ଅନେକ ଦିନ ଧରି ସୁନାମ ଅର୍ଜନ କରିଥିଲେ । ଝୁମ୍ପୁରାରେ ଜୟମଙ୍ଗଳା ଥିଏଟର ଦଳ ଓ ମଦନପୁରରେ ଗୋଟିଏ ଥିଏଟର ଦଳ ମଧ୍ୟ ଢେଙ୍କାନାଳ ଜିଲ୍ଲା ଭୁବନର ପୀତାମ୍ବର ମିଶ୍ରଙ୍କ ନିର୍ଦ୍ଦେଶନାରେ ସେମାନଙ୍କର ମଞ୍ଚଶୈଳୀ ପ୍ରଦର୍ଶନ କରି ପାରିଥିଲେ । ଶ୍ରୀ ଦୀନବନ୍ଧୁ ଦାସ ଏହାର ପୃଷ୍ଠପୋଷକତା କରୁଥିଲେ । ଏହାଛଡ଼ା ଖପରାଖାଇ ଜନାର୍ଦ୍ଦନପୁରରେ ପ୍ରାଦେଶିକ ପାଠାଗାର ତରଫରୁ ପ୍ରତି ଖ୍ରୀଷ୍ଟାବ୍ଦକାଳରେ ସ୍କୁଲ ପିଲମାନେ ଥିଏଟର ପରିବେଷଣ କରି ସୁନାମ ଅର୍ଜନ କରିଥିଲେ । ସେମାନଙ୍କର ଅଗ୍ରଣୀ ଥିଲେ ଖପରାଖାଇର ଶତ୍ରୁଘ୍ନ ମହାନ୍ତି ଓ

ନାରାୟଣ ମିଶ୍ର । ୧୯୬୫ ଠାରୁ ୧୯୭୫ ଭିତରେ କେଉଁଝର ତନ୍ଦ୍ରା କଲଚରାଲ କ୍ଲବ, ଗୋପାଳନନ୍ଦ ପାଠାଗାର ଓ ଚମ୍ପୁଆର କମଲେଶ୍ୱର ଥିଏଟର ଦଳ ରଙ୍ଗମଞ୍ଚରେ ଏହାଙ୍କ ଲାଗି ଗଲେଣି ।

କେନ୍ଦୁଝରର କଲେକ୍ଟରେଟ କ୍ଲବର ୧୯୬୮ରୁ ଓ ଶିକ୍ଷା ବିସ୍ତାର ପାଠାଗାରର ସଦସ୍ୟମାନେ ଏ ଯାବତ ବିଭିନ୍ନ ନାଟକ ମଞ୍ଚସ୍ଥ କରି ଲୋକ-ମାନଙ୍କୁ ଆପ୍ୟାୟିତ କରୁଥିଲେ ।

କଲେକ୍ଟରେଟ କ୍ଲବର ଶ୍ରୀ ଗଦ୍ଦାଧର ଦାଶ ଓ ଶିକ୍ଷା ବିସ୍ତାର ପାଠାଗାରର ଶ୍ରୀ ଅର୍ଜ୍ଜୁନ ଚରଣ ବେହେରା ଏହି ଅନୁଷ୍ଠାନର କର୍ମକର୍ତ୍ତା ଭାବରେ ବିଦିତ । ଦୁର୍ଭାଗ୍ୟବଶତଃ କଲେକ୍ଟରେଟ କ୍ଲବର କାର୍ଯ୍ୟରତ ବ୍ୟକ୍ତିମାନେ ଏହି କ୍ଲବରୁ କୌଣସି କାରଣବଶତଃ ଅବସର ନେଇ ସାରିଛନ୍ତି । ୧୯୭୦ ମସିହାଠାରୁ ୧୯୮୦ ମସିହା ଭିତରେ କେନ୍ଦୁଝର ଜିଲାରେ ନାନା ସ୍ଥାନମାନଙ୍କରେ ସ୍ଥାନୀୟ ସ୍କୁଲ, କଲେଜ ଛାତ୍ରଛାତ୍ରୀମାନେ ଓ ଗ୍ରାମର କେତେକ ଉଦ୍‌ଯୋଗୀମାନଙ୍କ ଦ୍ୱାରା ଅନେକଗୁଡ଼ିଏ ନାଟକ ମଞ୍ଚସ୍ଥ କରାଇ ବହୁ ମୁଖରେ ପ୍ରଶଂସିତ ହେଉଥିଲେ । ଦୂରଦର୍ଶନର ପ୍ରସାର ହେବା ପରେ ଥିଏଟରର ଆଦର କମି ଯାଇଛି ।

କେନ୍ଦୁଝର ଜେଲର କଇଦୀମାନେ ମଧ୍ୟ ୧୯୭୪ରୁ ୧୯୮୦ ଭିତରେ ୪ଟି ଐତିହାସିକ ଓ ସାମାଜିକ ନାଟକ ଶ୍ରୀ ଶତ୍ରୁଘ୍ନ ମହାନ୍ତିଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ କରିବାକୁ ସକ୍ଷମ ହୋଇ ପାରିଛନ୍ତି ।

ଏହି କଇଦୀମାନେ ଶ୍ରୀ କୃଷ୍ଣଚନ୍ଦ୍ର ଦାଶ ଓ ଶତ୍ରୁଘ୍ନ ମହାନ୍ତିଙ୍କ ସହା-ୟତାରେ ନାଟକଗୁଡ଼ିକ ମଞ୍ଚସ୍ଥ କରି ଦର୍ଶକମାନଙ୍କର ମନ ହରଣ କରି ପାରିଛନ୍ତି । ଏବେ ମଧ୍ୟ ଜେଲ୍ ସୁପରିଣ୍ଟେଣ୍ଡେଣ୍ଟ ଓ ଜେଲ୍‌ରଙ୍କ ସାହାଯ୍ୟରେ ଜେଲ୍‌ରେ ରହିଥିବା କଇଦୀମାନେ ନାଟକ ମଞ୍ଚସ୍ଥ କରି ପ୍ରୀତିଭାଜନ ହୋଇ ପାରିଛନ୍ତି ।

## ନୃତ୍ୟର ପରମ୍ପରା—

ଆମର ଭାରତ ବର୍ଷରେ ନୃତ୍ୟକଳା ମଧ୍ୟରେ କଥକ—ଉତ୍ତର ଭାରତୀୟ, ମଣିପୁରୀ—ଦକ୍ଷିଣ ଭାରତୀୟ, କଥାକଲୀ—ଦକ୍ଷିଣ ଭାରତୀୟ, ଭରତ ନାଟ୍ୟମ—କର୍ଣ୍ଣାଟକ ପ୍ରଦେଶ—ପଶ୍ଚିମା ନୃତ୍ୟ ଭିତରେ ଓଡ଼ିଶୀ ନୃତ୍ୟ ପୃଥିବୀର ସବୁ ସ୍ଥାନରେ ଆଦରଣୀୟ ଓ ଗ୍ରହଣୀୟ ।

କଥାକଲୀରୁ ଛଉନୃତ୍ୟ ଉତ୍ପନ୍ନ ହୋଇ ଆମ କେନ୍ଦୁଝର ଜିଲ୍ଲାର ଅଣନପାଟ ଗ୍ରାମରେ ଏ ଯାବତ୍ ବଂଚି ରହିଅଛି । ଏହା ପରେ ପଶୁପକ୍ଷୀଙ୍କ ମୁଖାପିନ୍ଧା ନୃତ୍ୟ ନାମରେ ନାମିତ ହୋଇ ଜିଲାରେ ପ୍ରଚାର ଲଭ କରୁଥିଲା ।

ଫୋକ ନୃତ୍ୟ ଜୁଆଙ୍ଗମାନଙ୍କର ଚ୍ଙ୍ଗୁ ନାଚର ଅପଭ୍ରଂଶ । ଏହାକୁ ହିଁ ଅନୁସରଣ କରି ଏ ଯୁଗରେ ଅନ୍ୟାନ୍ୟ ଆଦିବାସୀମାନେ ଭାଲଟାଇ, ଟେବଗ, ଭିଲ୍ ନୃତ୍ୟ ପ୍ରଦର୍ଶନ କରି ସୁନାମ ଅର୍ଜନ କରୁଛନ୍ତି । ଜୁଅଙ୍ଗମାନେ ହିଁ ଏହି ଜିଲାର ପ୍ରଥମ ଅଧିବାସୀ ଏବଂ ଏମାନେ ହିଁ ତାଙ୍କର ସେହି ତଥାକଥିତ ଚ୍ଙ୍ଗୁର ପ୍ରଚାର କରି ତା'ର ପରମ୍ପରା ଏହି ଜିଲାରେ ରଖି ଯାଇଛନ୍ତି । କଥାକଲୀ ଦକ୍ଷିଣ ଭାରତରେ ବେଶି ଆଦୃତ ହେଉଥିଲା । ଏହାର ଆଦର ଏ ଯୁଗରେ ଏ ରାଜ୍ୟରେ ପରିଲକ୍ଷିତ ହେଉନାହିଁ ।

ଏହିସବୁ ଲୋକନୃତ୍ୟ କଳା ସ୍ୱର୍ଗୀୟ ନାଟ୍ୟକାର କବି କାଳୀ ଚରଣ ପଟ୍ଟନାୟକ ମଧ୍ୟ ତାଙ୍କ ଓଡ଼ିଶୀ ନୃତ୍ୟ ପୁସ୍ତକରେ ଉଲ୍ଲେଖ କରି ଯାଇଛନ୍ତି ।

## ପାଲା—

୧୬୦୦ ଖ୍ରୀଷ୍ଟାବ୍ଦ ବେଳକୁ କେନ୍ଦୁଝର ଜିଲାରେ ୨।୩ ଦଳ ମାତ୍ର ପାଲା ଗାୟକ ପାଲା ପରିବେଷଣ କରୁଥିଲେ; କିନ୍ତୁ ୧୯୦୦ ଖ୍ରୀଷ୍ଟାବ୍ଦ ଆରମ୍ଭରେ ୨।୩ରୁ ୭।୮ ମଧ୍ୟରେ ସୀମିତ ଥିଲା । ୧୯୫୦ ମସିହା ପରେ ଏହି କେନ୍ଦୁଝର ଜିଲାରେ ପାଲାକାର ବା ପାଲା ଗାୟକମାନଙ୍କର ସଂଖ୍ୟା ୫୦ରୁ ଅଧିକକୁ ଟପିଗଲଣି । ୧୯୮୨ରେ ପାଲା ଗାୟକମାନଙ୍କର ଏକ ସମ୍ମିଳନୀ ଘଟଗାଁ ମୌଜାରେ ଅନୁଷ୍ଠିତ ହୋଇଥିଲା । ପାଲା ଗାୟକଙ୍କର ସଭାପତି ପୂର୍ବରୁ ପଣ୍ଡିତ ଶ୍ରୀ ମଦନମୋହନ ମିଶ୍ର ଥିଲେ । ଏବେ କିନ୍ତୁ ଶ୍ରୀ ନାରାୟଣ ଦାଶଙ୍କ ସଭାପତିତ୍ୱରେ ପାଲା ଗାୟକମାନଙ୍କର ବୈଠକ ହେଉଛି ।

## ସାହିତ୍ୟ ସଂସ୍କୃତି—

ମିଳନୀ ସାହିତ୍ୟ ସଂସଦ—ଏହି ସାଂସ୍କୃତିକ ଅନୁଷ୍ଠାନଟି ୧୯୭୨ରୁ ଜନ୍ମଗ୍ରହଣ କରିଛି ସତ; କିନ୍ତୁ ସ୍ୱର୍ଗୀୟ ବଳଭଦ୍ର ଭଞ୍ଜ ମହାରାଜାଙ୍କ ପୌରୋହିତ୍ୟରେ ବଳଭଦ୍ର ସାହିତ୍ୟ ସଂସଦ ନାମରେ ଏକ ଅନୁଷ୍ଠାନ ଗଢ଼ାଯାଇ ଏଇ ରାଜ୍ୟର ମୁଖପତ୍ର ହିସାବରେ 'ବନବାଣୀ' ପତ୍ରିକା ବହୁ ପ୍ରସାର ଲାଭ କରିଥିଲା । ବର୍ତ୍ତମାନ ସମୟରେ ବନବାଣୀକୁ ପୁନରୁଦ୍ଧାର କରି 'ମିଳନୀ ବନବାଣୀ'

ନାମରେ ଏକ ସାଂସ୍କୃତିକ ପତ୍ରିକା ସାରା ରାଜ୍ୟରେ ପରିଚିତ ହୋଇ ଯାଇଛି । ଏହାର କର୍ମକର୍ତ୍ତା ହିସାବରେ ପଣ୍ଡିତ ମଦନ ମୋହନ ମିଶ୍ର ଓ ଦିବାକର ସାହୁ ସହସ୍ର ମୁଖରେ ପରିଚିତ । ଏହାର ଅଭିମୁଖ୍ୟ ରାଜ୍ୟର ଲୋକଗୀତର ପ୍ରସାର କରିବା ।

ଆନନ୍ଦର ବିଷୟ ସାହିତ୍ୟ ଓ ସଂସ୍କୃତିର ଶ୍ରୀବୃଦ୍ଧି କରିବାକୁ ଯାଇ କେନ୍ଦୁଝର ତରଫରୁ କାକଳି, ଜ୍ୟୋତିପ୍ରଭା, ପିନାକୀ, ଗୌରବ, ବୈତରଣୀ ପତ୍ରିକାଗୁଡ଼ିକ ପାଠକ ପାଠିକାମାନଙ୍କର ମନ ଓ ହୃଦୟ ସ୍ପର୍ଶ କରିପାରୁଛି । ଏହାଛଡ଼ା କଲେଜ ଓ ହାଇସ୍କୁଲ ଛାତ୍ରଛାତ୍ରୀମାନଙ୍କ ସହାୟତାରେ ସେମାନଙ୍କ ଅନୁଷ୍ଠାନର ପତ୍ରିକାଗୁଡ଼ିକ ପ୍ରକାଶ ପାଉଛି । ସେମାନଙ୍କ ମଧ୍ୟରେ ଦୂରବୀ, ବିଜୟଲକ୍ଷ୍ମୀ, ବିକାଶ, କଲ୍ଲୋଳ, ଗୋନାସିକା, ଜ୍ୟୋତି ଅନ୍ୟତମ । ଗୌରବର ବିଷୟ ସେହି କେନ୍ଦୁଝର ଉପକଣ୍ଠରୁ ଶିଶୁ ମନଯୋଗୀ ଏକ ଶିଶୁପତ୍ରିକା ଫୁଲ-ଚନ୍ଦନ ନାମରେ ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ହୃଦୟ ଓ ମନ ଆକର୍ଷଣ କରି ପାରୁଛି ଓ ପାରିବ । ତାହାର ସମ୍ପାଦକ ହିସାବରେ ଶ୍ରୀ ନନା ମହାନ୍ତ ସବୁରି ପାଖରେ ସୁନାପୁଅ । ଶ୍ରୀ ମହାନ୍ତ ଏବେ ମଧ୍ୟ ଆଉ ଗୋଟିଏ ଶ୍ରେଷ୍ଠ ପତ୍ରିକା 'ଫୁଲ' ପ୍ରକାଶ କରି ସବୁରି ପାଖରେ ପରିଚିତ । ଗୌରବର ସମ୍ପାଦକ ଶ୍ରୀ ଉମେଶ ଚନ୍ଦ୍ର ସାହୁ ୧୯୭୧ ଜାନୁୟାରୀରେ ଗୌରବ ପତ୍ରିକାର ପ୍ରସାର କରି ୧୯୭୫ ପର୍ଯ୍ୟନ୍ତ ସୁସ୍ଥୁରୂପେ ଚଳାଇଥିଲେ । ଗୌରବ ପତ୍ରିକାକୁ ଶ୍ରୀ ଉମେଶ ଚନ୍ଦ୍ର ସାହୁ ଓ ବୈତରଣୀ ପତ୍ରିକା ସମାଜର ସାମ୍ପାଦକ ଶ୍ରୀ ବଂଶୀଧର ମିଶ୍ରଙ୍କ ଦ୍ୱାରା ଅନେକ ଦିନ ଧରି କେନ୍ଦୁଝରରେ ଚମକ ଖେଳାଇ ପାରିଥିଲା ।

କେନ୍ଦୁଝର ବ୍ୟତୀତ ଘଟଗାଁ ଅର୍ଥାତ୍ ମା' ତାରିଣୀଙ୍କ ପୀଠରୁ ସେହି ଜଗଜ୍ଜନନୀଙ୍କ ଇତିହାସ ତଥା ତାଙ୍କର କରୁଣାରେ ଭକ୍ତମାନଙ୍କ ସ୍ତୁତିରୁ କେତେ ଖଣ୍ଡ ବହି ମଧ୍ୟ ଆତ୍ମପ୍ରକାଶ କରିବା ଅତ୍ୟନ୍ତ ସୁଖପ୍ରଦ । ଆନନ୍ଦପୁର ସବ୍‌ଡିଭିଜନ ଅଞ୍ଚଳରୁ ସାଳନ୍ଦୀ ପତ୍ରିକା ମଧ୍ୟ ଲୋକଲୋଚନର ଗୋଚରକୁ ଆସି ପାରିଛି । ଖୁବ୍ ଅଳ୍ପଦିନ ପୂର୍ବରୁ ସେହି ସ୍ନେହମୟୀ ଜନନୀଙ୍କ ଆଶୀର୍ବାଦରେ ଏହି ପତ୍ରିକାଗୁଡ଼ିକ ଜନମନ ମୁଗ୍ଧ କରି ଅନେକ ଦିନ ଧରି ବଞ୍ଚି ପାରିଲେ ସାହିତ୍ୟ ଓ ସଂସ୍କୃତିର ଉନ୍ନତି ହେବ ।

ପାଟମ୍ପଶିକ ସୀତରେ ଆମରି ଏଇ ମାଟିରେ ବାର ମାସରେ ତେରଟି ପର୍ବ ଶ୍ରୀକ୍ଷେତ୍ରରେ ଦେହ କାଳିଆ ଠାକୁରଙ୍କ ନୀତିକୁ ଅନୁସରଣ କରି ପାଳିତ ହୋଇ ଯୁଗ ଯୁଗ ଧରି ବହି ଚାଲିଛି । ଏହାରି ଭିତରେ କେତେ କ'ଣ ହୋଇ ଯାଉଛି

ତଥାପି ଆମ୍ଭମାନଙ୍କ ପରମ୍ପରା ରହି ଆସିଛି । କେନ୍ଦୁଝର ଜଙ୍ଗଲ ବଣ ପାହାଡ଼ର ରାଜ୍ୟ ହେଲେ ମଧ୍ୟ ସାଂସ୍କୃତିକ ଚେତନାର ଏହା ଏକ ପୀଠ କହିଲେ ଅତ୍ୟୁକ୍ତି ହେବନାହିଁ । ତାହାର ପ୍ରମାଣ ସ୍ୱରୂପ ଏହି ମାଟିରେ ଅନେକ ସ୍ୱର୍ଗୀୟ ରାଜକବି ଓ କବିମାନେ ମାଟିରେ ମିଶିଥିଲେ ମଧ୍ୟ ତାଙ୍କ ଲେଖନୀ-ସୃଷ୍ଟ ଅନେକଗୁଡ଼ିଏ ପୋଥି ସମ୍ବଳିତ ହୋଇ ଏବେ ମଧ୍ୟ ରାଜବାଟିରେ ଅଧୁନା ଶ୍ରେଷ୍ଠବାଧ ଶ୍ରୀ ଲକ୍ଷ୍ମୀ-ନାରାୟଣ ଭଞ୍ଜଦେବଙ୍କ ନିକଟରେ ଗଚ୍ଛିତ ଅଛି । ସେ ମହୋଦୟ ଉକ୍ତ ପ୍ରକାଶନୀ ଚେଷ୍ଟା କରିଆରେ ସେହି ଅମର କବିମାନଙ୍କୁ ଲୋକଲୋଚନର ଗୋଚରକୁ ଆଣିବାକୁ ଚେଷ୍ଟା କରୁଛନ୍ତି ।

ଆମ ଦେଶ ଓ ଜାତିର ପରମ୍ପରାକୁ ବେଶୀ ବଜାୟ ରଖି ପାରୁଛନ୍ତି ଆମ୍ଭମାନଙ୍କ ଝିଅ, ଭଉଣୀ, ବୋହୂମାନେ । ତା'ର ପ୍ରମାଣ ସ୍ୱରୂପ ଆମ୍ଭମାନଙ୍କ ନିହାତି ଆପଣାର ରଜ ପର୍ବରେ ବାଳକ ବାଳିକାମାନେ ଦୋଳିରେ ଝୁଲିବା ମାତ୍ରେ ତାଙ୍କର ମୁହଁରୁ ଝରିପଡ଼େ କେତେ ସଙ୍ଗୀତର ଲହରୀ । ଅତି ଆନନ୍ଦର ବିଷୟ ତାକୁ କେହି କେବେ ଲେଖିନାହିଁ । ସେମାନଙ୍କର ନିଜସ୍ୱ ଓ ମର୍ମସ୍ପର୍ଶୀ ସଙ୍ଗୀତ ଦୋଳିରେ ଝୁଲିଲେ ବାହାରେ ଯଥା—

"ଆଦ୍ୟ ମାର୍ଗଶୀର ହେଲା—ଏ ସମୟେ କାନ୍ତ ବିଦେଶ ଗଲା;
ଚଳୁ ପାଗଲୀ ମୋ—ମୋତେ ସେ ଅଜାଣ୍ଡା କଲା ।୧।
ବାଡ଼ିରେ ବାଡ଼ିଆ ବେତ—ଗାଁ ମଙ୍ଗଳାଙ୍କୁ ମୋ ଦଣ୍ଡବତ
ଅନୁକୂଳ ହେଲା ଗୀତ ।"

ଏହି ଧରଣର ଲୋକଗୀତଗୁଡ଼ିକ ସ୍ୱତଃସ୍ଫୂର୍ତ୍ତି । ସେହି ଦୋଳିରେ ଝୁଲୁଥିବା ଅଙ୍ଗନାମାନଙ୍କ ମୁହଁରେ କ୍ଷଣକ ମଧ୍ୟରେ ଏ ପ୍ରକାର ଦୋଳିଗୀତ ଫୁଟିଉଠେ ସେହି ପର୍ବରେ ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଭାସିଯାଏ ପବନର ତାଳେ ତାଳେ । ଏହାର ନୂତନତ୍ୱ, ମହତ୍ତ୍ୱ ଉପଲବ୍ଧି ସମସ୍ତେ କରନ୍ତି ଓ କରୁଛନ୍ତି । ଏହି ଧରଣର ଲୋକଗୀତ ବୋଧହୁଏ ଅନ୍ୟ କେଉଁଠି ନାହିଁ । ଏ ରାଜ୍ୟର ସବୁ ଜାତିର ଲୋକମାନେ ପ୍ରାୟ ଏହି ରଜ ପର୍ବକୁ ବେଶୀ ପରିମାଣରେ ମାନନ୍ତି ଏବଂ ପ୍ରତ୍ୟେକ ବାଳିକା, ଅଙ୍ଗନା, ଚପଳାମାନଙ୍କ ମୁହଁରୁ ଏହିପରି ଲୋକସଙ୍ଗୀତର ଝର୍ଣ୍ଣର ବୋହିଯାଏ ।

ଆଜିକାଲିକା ନବଯୁଗର ଯୁବଯାତ୍ରୀମାନଙ୍କ ମନ ମଧ୍ୟରେ କେତେଗୁଡ଼ିଏ ଥିଏଟର ଦଳ ପାଲା ବା ଦାଣ୍ଡକାଠିଆ ଦଳର ପୁନରାବୃତ୍ତି ବ୍ୟତୀତ ଏହି ପାରମ୍ପରିକ ଲୋକଗୀତର ସେହି ରଜା ପର୍ବ ଓ ଖଲ୍ଲୁକୁଣୀ ପୂଜା ବ୍ୟତୀତ ଅନ୍ୟ

କୌଣସି ମଞ୍ଚ ପଟାଣୀରେ ଦେଖାଯାଏ ନାହିଁ । କେନ୍ଦୁଝର ଜିଲ୍ଲା ଅନ୍ୟ ଜିଲ୍ଲାମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଲେ ମଧ୍ୟ ଖଣିଜ ସମ୍ପଦ ସମ୍ପନ୍ନା ଓ ଲୋକନୃତ୍ୟ, ଲୋକଗୀତ ଓ ସାହିତ୍ୟ ସଂସ୍କୃତି ସମୃଦ୍ଧା । ଏହାର ଐତିହ୍ୟ ବୃଦ୍ଧ ଯୁଗରୁ ଏ ଯାବତ୍ ବଞ୍ଚି ରହି ଆସିଛି । ଏହି ଜିଲ୍ଲାର ଐତିହ୍ୟ ପୁଙ୍ଖାନୁପୁଙ୍ଖ ତନଖି କଲେ ଏହା ଏକ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପନ୍ନା ଓ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଜିଲ୍ଲା ଭାବରେ ପରିଚିତ ହେବ । ଏ ରାଜ୍ୟର ଲୋକନୃତ୍ୟ ଯେତେ ଚିତ୍ତାକର୍ଷକ ଏହାର ଲୋକଗୀତ ମଧ୍ୟ ସେତେ ହୃଦୟସ୍ପର୍ଶୀ । ମୋର ବିଶ୍ୱାସ ଓ ଆଶା ଏହା ଖଣିଜ ସମ୍ପଦଭରା ଜିଲ୍ଲା ଭାବରେ କେବଳ ନୁହେଁ; ଲୋକନୃତ୍ୟ, ଲୋକଗୀତ ତଥା ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଅନ୍ୟମାନଙ୍କ ପାଖରେ ସବୁ ଯୁଗରେ ସମ୍ମାନ ଲାଭ କରୁଛି ଓ କରିବ ।

( ଓଡ଼ିଆ ଲୋକନାଟ୍ୟରେ ପ୍ରକାଶିତ )

ଆନନ୍ଦପୁର ଅଣୁ ଅଞ୍ଚଳରେ ଗତ ୨ ବର୍ଷ ହେଲା ସବୁଜିମା ସାହିତ୍ୟ ସଂସଦ ଅନୁଷ୍ଠାନଟିଏ ଗଢ଼ାଯାଇ କବି ଓ କଳାକାରମାନେ ଏକତ୍ରିତ ହୋଇ କବିତା ପାଠଚକ୍ର କରିବାରେ ଝାଡ଼େଶ୍ୱର ହାଇସ୍କୁଲଠାରେ ଆରମ୍ଭ କରିଛନ୍ତି । ତା'ର ପ୍ରବୋଧା ଭାବେ ଶ୍ରୀ ଅକ୍ଷୟ କୁମାର ଦାସ ଓ ଜନାର୍ଦ୍ଦନ ଦାଶ କାର୍ଯ୍ୟ ନିର୍ବାହ କରୁଛନ୍ତି ।

ଶ୍ରୀଯୁକ୍ତ ନିରଞ୍ଜନ ନାୟକ ପଢ଼ିଆରି ପଲ୍ଲୀ ଅଞ୍ଚଳରୁ ଗୋଟିଏ ଶାଳଦୀ ପତ୍ରିକା ବାହାର କରି ବହୁ ସାହିତ୍ୟପ୍ରେମୀ ବନ୍ଧୁମାନଙ୍କୁ ବାନ୍ଧି ପାରିଛନ୍ତି ।

## ସେବାସଙ୍ଘ—

( ନାରୀ ସମାଜ, ଶିକ୍ଷାକେନ୍ଦ୍ର )

କେନ୍ଦୁଝର ଉପକଣ୍ଠରେ ଦୀର୍ଘ ୪୦–୪୨ ବର୍ଷ ଧରି ଗୋଟିଏ ମହିଳା ସମିତି ଜିଲ୍ଲାପାଳଙ୍କ ସ୍ତ୍ରୀଙ୍କର ଅଧ୍ୟକ୍ଷତାରେ ସେବାକାର୍ଯ୍ୟ କରିଆସୁଛି । ଏହାର ଆଭିମୁଖ୍ୟ କେନ୍ଦୁଝର ଜିଲ୍ଲା ଗ୍ରାମାଞ୍ଚଳମାନଙ୍କରେ ପ୍ରୌଢ଼ଶିକ୍ଷା, ଅନୁନ୍ନତ ଜାତିର ପିଲାମାନଙ୍କର ସ୍ୱାସ୍ଥ୍ୟ ସେବା, ପ୍ରସୂତି ମହିଳାଙ୍କର ସେବା କରିବା । ଗତ କେତେବର୍ଷ ଧରି ସ୍ଥାନୀୟ ସରକାରୀ କଳରେ ଥିବା ଓ ବେସରକାରୀ ମହିଳାମାନେ ନାଟକ ମଞ୍ଚସ୍ଥ କରି ସ୍ଥାନୀୟ ଜିଲ୍ଲା ଚିକିତ୍ସାଳୟକୁ ଆର୍ଥିକ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଦୁର୍ଘଟଣା ପ୍ରପୀଡ଼ିତ ଶିଶୁମାନଙ୍କୁ, ମହିଳା ଓ ପୁରୁଷମାନଙ୍କୁ ଲୁଗା ଓ ଅର୍ଥ ସାହାଯ୍ୟ କରିବାକୁ ସକ୍ଷମ ହୋଇଛନ୍ତି । ଏବେ ୫।୬ଟି ସିଲେଇ ମେସିନରେ ଫ୍ରକ୍, ପ୍ୟାଣ୍ଟ, ସାୟା, ବ୍ଲାଉଜ ତିଆରି କରି ସ୍ୱଳ୍ପ ମୂଲ୍ୟରେ ଗରିବମାନଙ୍କୁ ଦାନ

କରି ଚାଲିଛନ୍ତି । ଏହି ସମିତିରେ ପ୍ରାୟ ୪୦ ଜଣ ସଦସ୍ୟା ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରୁଛନ୍ତି ।

## ମନୋଜମଞ୍ଜରୀ ଶିଶୁ ଭବନ—

ସ୍ଥାନୀୟ ସାମ୍ବାଦିକ ଶ୍ରୀଯୁକ୍ତ ନରେନ୍ଦ୍ର ମହାପାତ୍ର ୧୯୬୪ ମସିହାରେ ସାଇକ୍ଲୋନଗ୍ରସ୍ତ ୩ଟି ଅନାଥ ଝିଅ ସଂଗ୍ରହ କରି ସେକାଳର ଜିଲ୍ଲାପାଳ ଶ୍ରୀଯୁକ୍ତ ମ୍ୟାନମୋହନ ମହାପାତ୍ରଙ୍କ ସହାୟତାରେ ଓ ଶ୍ରୀମତୀ ମନୋଜମଞ୍ଜରୀ ଦେବୀ (ରାଜମାତା)ଙ୍କ ଅକୃଣ୍ଠ ଭୂମିଦାନରେ ଗୋଟିଏ ଭବନ ନିର୍ମାଣ କରି ପ୍ରାୟ ଶତାଧିକ ଅନାଥ ବାଳକ ବାଳିକାମାନଙ୍କ ରକ୍ଷଣାବେକ୍ଷଣ ଭାର ବହନ କରି ଚଳାଇ ଆସୁଛନ୍ତି । ସେ ମହୋଦୟ ଏହି ଅନାଥ ପିଲାମାନଙ୍କର ରକ୍ଷଣାବେକ୍ଷଣ ପାଇଁ ବିଦେଶରୁ ମଧ୍ୟ ଆର୍ଥିକ ସାହାଯ୍ୟ ପାଉଛନ୍ତି । ସ୍ଥାନୀୟ ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଏହି ଶିଶୁ ଭବନଟି ମନୋଜମଞ୍ଜରୀ ଶିଶୁ ଭବନ ରୂପେ ପରିଚିତ । ଶିଶୁ ଭବନର ଅନାଥ ଶିଶୁମାନେ ଦୀର୍ଘବର୍ଷ ଧରି ନାଟକ, ନାଟିକା, ଗୀତିନାଟ୍ୟ ମଞ୍ଚସ୍ଥ କରି ଓ ନୃତ୍ୟ ପରିବେଷଣ କରି ବହୁ ମୁଖରେ ପ୍ରଶଂସିତ ।

## ଯୁବକସଙ୍ଘ, ସେବାସଙ୍ଘ ଓ ମହିଳା ସମିତି—

କେନ୍ଦୁଝର ଜିଲ୍ଲାର ଗ୍ରାମାଞ୍ଚଳମାନଙ୍କରେ ୪୫୦ ଗୋଟି ଯୁବକସଙ୍ଘ, ୫୦୦୦ ଗୋଟି ମହିଳା ସମିତି ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ତତ୍ତ୍ୱାବଧାନରେ ଗଢ଼ାଯାଇ ସେବା କାର୍ଯ୍ୟରେ ସଦସ୍ୟ ଓ ସଦସ୍ୟାମାନେ ନିଜକୁ ନିୟୋଜିତ କରନ୍ତି ।

ଆନନ୍ଦପୁର, କୁଶଳେଶ୍ୱରରେ ୬ଟି ସେବାସଙ୍ଘ ପ୍ରତିଷ୍ଠିତ ହୋଇଛି । ଏହାର ସେବକମାନେ ମଧ୍ୟ ଗ୍ରାମାଞ୍ଚଳ ଲୋକମାନଙ୍କର ସେବାକାର୍ଯ୍ୟରେ ନିଜକୁ ନିୟୋଜିତ କରନ୍ତି ।

## ରୋଟାରୀ କ୍ଲବ—

କେନ୍ଦୁଝର ଜିଲ୍ଲାର ବଡ଼ବିଲରେ ପ୍ରଥମେ ୧୯୭୩ରେ ପ୍ରତିଷ୍ଠା ଲାଭକରି କେନ୍ଦୁଝରରେ ପ୍ରସାର ଲାଭ କରିଛି । ଏଥିରେ ଜିଲ୍ଲାପାଳ, ଚେୟାରମ୍ୟାନ, ଓକିଲସଙ୍ଘ, ପ୍ରଶାସନିକ ଅଫିସର ପ୍ରମୁଖ ଅନେକ ଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ

ଗ୍ରାମାଞ୍ଚଳର ଲୋକମାନଙ୍କର ସେବାକାର୍ଯ୍ୟରେ ନିଜକୁ ନିୟୋଜିତ କରନ୍ତି ଓ କରୁଛନ୍ତି ।

## ରେଡ଼କ୍ରସ ସୋସାଇଟି—

୧୯୫୧ରୁ ଏହି ସୋସାଇଟି ଆରମ୍ଭ ହୋଇ ଗୋଟିଏ ବ୍ଲଡ଼ ବ୍ୟାଙ୍କ ଓ ଗୋଟିଏ ରିଡ଼ିଂ ରୁମ୍ ପ୍ରତିଷ୍ଠା କରି ଜନସେବାରେ ସଦସ୍ୟମାନେ ନିଜକୁ ନିୟୋଜିତ କରନ୍ତି । ଏଥିରେ ୩୪୪୮ ଜଣ ଆସୋସିଏଟ, ୨୫୭ ଜଣ ବାର୍ଷିକ ଓ ୭୭ ଜଣ ଆଜୀବନ ସଦସ୍ୟଙ୍କ ନାମ ଉଲ୍ଲେଖଯୋଗ୍ୟ ।

# କେନ୍ଦୁଝରର ଗଣ ଆନ୍ଦୋଳନ

ପ୍ରକୃତ ସୌନ୍ଦର୍ଯ୍ୟଭରା କେନ୍ଦୁଝର ଆଜି କୋଟି ମୁଖରେ ପ୍ରଶଂସିତା । କମ୍ବୁଦନ୍ତୀ ବହୁଳା ଖଣିଜ ସମ୍ପଦ ସମ୍ପନ୍ନା ଗନ୍ଧମାଦନ କିରୀଟ ରୂପେ ଏହାର ଶ୍ରୀ ବର୍ଦ୍ଧନ କରୁଛି । ଗୋନାସିକା ବସଣୀ ରୂପେ ପରିଚିତା । ଗୋବର ଚୂଳିଆ ପାହାଡ଼ ଦୁଇଟି ରାଜ ନିବାସ ବା ଗଡ଼ର ପ୍ରାଚୀର ରୂପେ ଦଣ୍ଡାୟମାନ । ବହୁଳା ଝମକା ପାଦଦେଶ ମଣ୍ଡନ କରି କେନ୍ଦୁଝରର ଶ୍ରୀବୃଦ୍ଧି କରି ଯୁଗ ଯୁଗ ଧରି ଆଗନ୍ତୁକମାନଙ୍କୁ ସମ୍ଭାଷଣ ଜଣାଉଛନ୍ତି । ପୁଣ୍ୟତୋୟା ବୈତରଣୀ ଗୋନାସିକାରୁ ଉତ୍ପନ୍ନ ହୋଇ କେନ୍ଦୁଝରର ପାଦ ଧୌତ କରି ଦୋଶ ଲିଙ୍ଗ ଶଙ୍କରଙ୍କ ପାଦ ଲାଗି ପବିତ୍ର ହୋଇ ଶଙ୍ଖାକୃତିରେ ନିମ୍ନଦେଶକୁ ବହିଯାଇ ଆଖଣ୍ଡଳମଣିଙ୍କ ପାଦ ସ୍ପର୍ଶ କରି ସମୁଦ୍ର ଗର୍ଭରେ ମିଶି ଯାଇଅଛି । ଏହି ଶାନ୍ତପୀଠ କେନ୍ଦୁଝରରେ ଆଦିମ ଯୁଗରୁ ଯାଯାବର ଜୁଆଙ୍ଗମାନେ ବସତି ସ୍ଥାପନ କରିଥିଲେ । ଭୌମ ଦେଶାଧିବାସୀମାନେ ଏମାନଙ୍କୁ ପାର୍ବତ୍ୟ ଅଞ୍ଚଳକୁ ତଡ଼ିଦେଇ ବସତି ସ୍ଥାପନ କରି ତଥାକଥିତ ଭୂୟାଁ ନାମରେ ବିଦିତ । ଏହି ଭୂୟାଁମାନେ ଦୁଇ ଭାଗରେ ବିଭକ୍ତ । ୧—ରାଜକୁଳୀ, ୨—ପାହାଡ଼ୀ । ରାଜାଙ୍କ ବଂଶ ସମ୍ଭୂତ ବା ରାଜାଙ୍କୁ ସାହାଯ୍ୟ କରୁଥିବା ଭୂୟାଁମାନେ ରାଜକୁଳୀ ଓ ପାହାଡ଼ ଅଞ୍ଚଳରେ ବାସ କରୁଥିବା ଭୂୟାଁମାନେ ପାହାଡ଼ୀ ଭୂୟାଁ ନାମରେ ବିଦିତ । ଏମାନେ ଜୁଆଙ୍ଗମାନଙ୍କଠାରୁ ଉଚ୍ଚଶିକ୍ଷିତ । ଧନୁଶରଧାରୀ ଲଢ଼ୁଆ ଜାତି ।

ଏହି କେନ୍ଦୁଝର ଖ୍ରୀଷ୍ଟଜନ୍ମ ପୂର୍ବରୁ କୋହାର ରାଜ୍ୟ, ପରିବର୍ତ୍ତନଶୀଳ ଯୁଗରେ ହରିପୁର ରାଜ୍ୟ ଭିତରେ ଯମଗରଭ କ୍ଷେତ୍ରମଣ୍ଡଳ ରୂପେ ବିଦିତ ଥିଲା । ଏହି ଭୂୟାଁମାନଙ୍କ ବସତି ପରେ ଏ ରାଜ୍ୟର ବଳିଷ୍ଠତା ନିରୂପଣ କରି ଏହାକୁ କେନ୍ଦୁଝର ନାମରେ ନାମିତ କରିଛନ୍ତି ।

୧୧୨୮ ଖ୍ରୀଷ୍ଟାବ୍ଦରେ ଏମାନେ କ୍ୟୋଢପୁରରେ କ୍ୟୋଢ ଭଞ୍ଜଙ୍କୁ ମୟୂରଭଞ୍ଜରୁ ନେଇ ଆଣି ରାଜା କରାଇ କଚ୍ଛଦନ ପରେ ବୀରବରପୁର ଓ ପରେ

ନୟାକୋଟ ଓ ନୟାଗଡ଼ରେ ଉଆସ ସ୍ଥାପନା କରି ରାଜ୍ୟର ସମସ୍ତ ଶାସନ କାର୍ଯ୍ୟ ହାତରେ ଚଳାଇ ଆସୁଥିଲେ । ୧୧୬୮ ଖ୍ରୀଷ୍ଟାବ୍ଦରୁ ୧୮୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ କୌଣସି ଗଣଆନ୍ଦୋଳନ ଦେଖାଯାଇ ନ ଥିଲା । ଏହି ସମସ୍ତ ମଧ୍ୟରେ ୩୪ଜଣ ରାଜା ଏ ରାଜ୍ୟର ଶାସନକଳ ସୁରୁଖୁରୁରୂପେ ଚଳାଇ ଆସିଥିଲେ । ଏହି ରାଜାମାନଙ୍କ ଭିତରେ ଭକ୍ତକବି ଗୋବିନ୍ଦ ଭଞ୍ଜ ୧୪୦୦-୧୫୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ମା' ଚାରଣୀ, ସିଦ୍ଧକାଳୀ, ରଘୁନାଥଜୀଉଙ୍କୁ ସ୍ଥାପନା କରି ଭକ୍ତକବି ଭାବରେ ପ୍ରସିଦ୍ଧ । ଏ ରାଜ୍ୟର ଅଷ୍ଟମ ରାଜା ସନ୍ଥ ଭଞ୍ଜ ଶାନ୍ତିଦେବ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଇଷ୍ଟକୃପା ନାମରେ ଭୂଷିତ ହୋଇ ବୌଦ୍ଧପୀଠ ସ୍ଥାପନା ଓ ବୌଦ୍ଧ ଧର୍ମ ପ୍ରଚାର କରି କୋଟି ମୁଖରେ ପରିଚିତ । ଲକ୍ଷ୍ମୀନାରାୟଣ ଭଞ୍ଜ ଶ୍ରୀ ବଳଦେବଜୀଉ ମନ୍ଦିର ନିର୍ମାଣ କରି ଓ ବଳଦେବଙ୍କୁ ପ୍ରତିଷ୍ଠା କରି ଯେପରି ପରିଚିତ, ପ୍ରତାପ ବଳଭଦ୍ର ଭଞ୍ଜ ମଧ୍ୟ ସେପରି ଅମ୍ବିକା ବିଳାସ ରଚନା କରି କୋଟି ଜନତାର ପ୍ରିୟଭାଜନ ହୋଇ ପାରିଛନ୍ତି ।

ସ୍ୱର୍ଗତ ଗଦାଧର ଭଞ୍ଜ ୧୮୩୮ରୁ ୧୮୭୨ ପର୍ଯ୍ୟନ୍ତ ରାଜତ୍ୱ କରି ବ୍ରିଟିଶ ସରକାରଙ୍କ ପ୍ରିୟଭାଜନ ହୋଇ ମହାରାଜା ପଦରେ ଭୂଷିତ । ଗଦାଧର ଅପୁତ୍ରିକ ଥିବାରୁ ତାଙ୍କର ଫୁଲରାଣୀଙ୍କ ଔରସ ଜନ୍ମ ହୋଇଥିବା ଧନୁର୍ଜୟଙ୍କୁ ରାଜା ବୋଲି ଅସ୍ୱୀକାର କରି ପ୍ରଥମେ ଏହି ଗଣ ଆନ୍ଦୋଳନର ସୂତ୍ରପାତ କରିଥିଲେ ଆମ୍ଭମାନଙ୍କ ତଥାକଥିତ ଭୂୟାଁ ଭାଇମାନେ । ସେମାନଙ୍କର ନେତୃତ୍ୱ ନେଇଥିଲେ ୧୮୭୨ରେ ପ୍ରଥମେ ରତ୍ନା ନାୟକ । ମହାରାଜା ଗଦାଧରଙ୍କ ପାଟରାଣୀ ବିଷ୍ଣୁପ୍ରିୟା ମୟୂରଭଞ୍ଜର ଭାଇ ବୃନ୍ଦାବନଙ୍କୁ ଗଦାଧରଙ୍କ ତୀର୍ଥଯାତ୍ରା ସମୟରେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ପ୍ରଥମେ ଗାଦିରେ ବସାଇଥିଲେ । ଧନୁର୍ଜୟଙ୍କ ପାର୍ଶ୍ୱଚରମାନେ ଏହାର ପ୍ରତିବାଦ କରି ହାଇକୋର୍ଟର ଆଶ୍ରୟ ନେଇଥିଲେ । ହାଇକୋର୍ଟର ରାୟ ତାଙ୍କର ବିରୁଦ୍ଧରେ ଯାଇଥିବାରୁ ଧନୁର୍ଜୟ ବାରିଷ୍ଟର ମଧୁବାବୁଙ୍କ ସାହାଯ୍ୟରେ ଓ ସେ ସମୟର ବେଙ୍ଗଲ ଗଭର୍ଣ୍ଣରଙ୍କ ସାହାଯ୍ୟରେ Prevy Councilରେ ଦରଖାସ୍ତ କରି ନିଜର ଦାବି ହାସଲ କରିଥିଲେ । ଫଳରେ ପାଟରାଣୀଙ୍କ ପ୍ରରୋଚନାରେ ରତ୍ନା ନାୟକ ମେଳିର ମୂଳଦୁଆ ସ୍ଥାପନା କରିଥିଲେ । ଏହା ୧୮୬୮ ମସିହା ଅପ୍ରେଲ ମାସ ଆରମ୍ଭରେ ହୋଇଥିଲା । ଏହାର ଏକ ବିଶଦ ବିବରଣୀ ସଂଗ୍ରହ କରି ଲୋକଲୋଚନର ଗୋଚରାର୍ଥେ ମୁଁ ଲେଖିବାକୁ ଯାଉଛି । ଏହି ଆନ୍ଦୋଳନ ଉପରେ ଅନେକ ଲେଖକ, ସମ୍ବାଦକ ବିଭିନ୍ନ ମତ ଦେଇଛନ୍ତି । ଏହାକୁ ମୁଁ କେତେ ଖଣ୍ଡ ବହି ବା ପୁରୁଣା ରେକର୍ଡରୁ ସଂଗ୍ରହ କରିବାକୁ ସକ୍ଷମ ହୋଇଛି ।

୧ । ଉତ୍କଳ ଦୀପିକା—୧୬-୧୦-୧୮୯୬
୨ । ଓଡ଼ିଶା ରେକର୍ଡ଼ସ—କେନ୍ଦୁଝର—
୩ । କେନ୍ଦୁଝର ଏଜେଣ୍ଟ ୯.୪୬—୨୮-୪-୧୮୯୬
୪ । କେନ୍ଦୁଝର ରେକର୍ଡ଼ ରୁମ୍‌ରୁ କେନ୍ଦୁଝର ଗେଜେଟିଅର
୫ । ପଲିଟିକାଲ ଅପରେଟ ଇନ ଓଡ଼ିଶା—
In 19th Century of Dr. P. Mishra
୬ । ପ୍ର: ଜନ୍ମେଜୟ ସାହୁ ଧରଣୀଧର କଲେଜ ।
୭ । ଫକୀର ମୋହନ ଗ୍ରନ୍ଥାବଳୀ ।
୮ । ନୀଳକଣ୍ଠ ଗ୍ରନ୍ଥାବଳୀ ।
୯ । ଅଞ୍ଚଳର ଦୁଇ ଜଣ ଭଦ୍ରବ୍ୟକ୍ତି
ଶ୍ରୀ ଉପାଧ୍ୟାୟ ଓ ରେକ୍ଟର ଶ୍ରୀ ନାୟକ ।
୧୦ । ନିଜର ସାକ୍ଷାତକାର ।

୧୮୬୧ ମସିହାରେ ମହାରାଜା ଗଦାଧର ଭଞ୍ଜଙ୍କର ଦେହାନ୍ତ ପରେ ମହାରାଣୀ ବିଷ୍ଣୁପ୍ରିୟା ମୟୂରଭଞ୍ଜର ରାଜାଙ୍କର ଭାଇ ବୃନ୍ଦାବନ ଚନ୍ଦ୍ରଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ରାଜ ସିଂହାସନରେ ବସାଇଲେ । ମହାରାଜା ଗଦାଧର ଭଞ୍ଜଙ୍କର ଫୁଲବିବାହୀ ରାଣୀଙ୍କର ପୁଅ ଧନୁର୍ଜୟ ମଧ୍ୟ ଏ ସିଂହାସନ ପାଇଁ R·N. Shore Crupt of Tributary Mahala Cuttackଙ୍କ ପାଖରେ ଦାବୀ କରିଥିଲେ ଏବଂ ଏହା Regulation XI of 1816 ଅନୁଯାୟୀ ଧନୁର୍ଜୟଙ୍କୁ ରାଜା ବୋଲି ସ୍ୱୀକାର କରିଥିଲେ । ଫଳରେ ବୃନ୍ଦାବନ ଚନ୍ଦ୍ର High Courtରେ ଅପିଲ ରୁଜୁ କରିଥିଲେ । ଏହା ରାୟ ହେବା ପୂର୍ବରୁ Supt·ଙ୍କର ଆଦେଶ କାଏମ ରହିଲା ଜାଣି ମହାରାଣୀ ବିଷ୍ଣୁପ୍ରିୟା ବିରୋଧ କରିଥିଲେ । ଏହି ବିରୋଧକୁ କେଉଁଝରର ପ୍ରଜାମାନେ ସ୍ୱାଗତ ଜଣାଇଥିଲେ । ଧନୁର୍ଜୟ ସେ ସମୟରେ ନାବାଳକ ଥିବାରୁ ଜଣେ ତହସିଲଦାର ଏବଂ ଜଣେ ଦେଓ୍ୱାନ ହାତରେ ରାଜ୍ୟର ପରିଚାଳନା ଭାର ଦେଇ Supt. ଧନୁର୍ଜୟଙ୍କୁ କଟକରେ ପାଠ ପଢ଼ାଇବାର ବନ୍ଦୋବସ୍ତ କରିଥିଲେ । ୧୮୬୭ ମସିହା ସେପ୍‌ଟେମ୍ବର ମାସ ଧନୁର୍ଜୟ ସାବାଳକ ହେବା ପରେ T.E. Ravenshaw Supt. of Territory Mahala କେନ୍ଦୁଝରର ରାଜ୍ୟ ତଥା ଗାଦୀ ଧନୁର୍ଜୟଙ୍କୁ ଅର୍ପଣ କରିଥିଲେ । ଫଳରେ ମହାରାଣୀ ବିଷ୍ଣୁପ୍ରିୟାଙ୍କ ପ୍ରରୋଚନାରେ ରତ୍ନା ଗୋଳମାଳର ସୂତ୍ରପାତ ହେଲା । ରତ୍ନା

ନାଏକଙ୍କ ଆଦେଶରେ ଗୋଟିଏ ଦଳ ଭୂୟାଁ ମୟୂରଭଞ୍ଜ ଏବଂ ଆଉ ଗୋଟିଏ ଦଳ ଆନନ୍ଦପୁରକୁ ରବାନା ହେଲେ । ଭୂୟାଁ ଦଳ ବେଙ୍ଗଲ ଗଭର୍ଣ୍ଣର Lt. Governerଙ୍କୁ ସାକ୍ଷାତ କରି ଧନୁର୍ଜୟଙ୍କୁ ଅସ୍ୱୀକାର କରିବା ପାଇଁ ଆବେଦନ କରିଥିଲେ; କିନ୍ତୁ ବେଙ୍ଗଲ ଗଭର୍ଣ୍ଣର ଧନୁର୍ଜୟଙ୍କୁ ରାଜା ଭାବେ ସ୍ୱୀକାର କରିବା ପାଇଁ ଆଦେଶ ଦେଇଥିଲେ । ଫଳରେ ରତ୍ନା ଗୋଲମାଳ ବ୍ରିଟିଶ ସରକାର ବିରୁଦ୍ଧରେ ବା ଏ ଆଦେଶ ବିରୁଦ୍ଧରେ ଗଣ ଆନ୍ଦୋଳନ ଜଳି ଉଠିଲ । ସତେଇକଲାର ମୃତ୍ୟୁଙ୍କ ପ୍ରରୋଚନାରେ ରାଣୀ ଧନୁର୍ଜୟଙ୍କୁ ୧୮୬୮ ଫେବୃୟାରୀ ୧୭ ତାରିଖରେ ସ୍ୱୀକାର କଲେ; କିନ୍ତୁ ରତ୍ନା ନାଏକଙ୍କ ନେତୃତ୍ୱରେ ଗଣ ଆନ୍ଦୋଳନ ୧୮୬୮ ଏପ୍ରିଲ ୨୮ ତାରିଖଠାରୁ ଘନୀଭୂତ ହେଲା ।

Dr. Prasana Mishraଙ୍କର 'Political Upset in Orissa in the 19th Century' ଗ୍ରନ୍ଥରୁ ଅନୁମିତ ହୁଏ କେନ୍ଦୁଝର ଗଡ଼ଜାତରେ ୧୬୮୮ ମସିହାରେ (ଲକ୍ଷ୍ମୀନାରାୟଣ ଭଞ୍ଜଦେଓ) ବଳଦେବଜୀଉ ମନ୍ଦିର ନିର୍ମାଣ କାର୍ଯ୍ୟରେ ବେଠି ଖଟି ୧୭୩୬ରୁ ୫୭ ମଧ୍ୟରେ (ନରସିଂହ ନାରାୟଣ ଭଞ୍ଜଦେଓ) କେନ୍ଦୁଝରର ତଥାକଥିତ ଭୂୟାଁମାନେ ମରହଟ୍ଟାମାନଙ୍କ ସଙ୍ଗରେ ଯୁଦ୍ଧ କରି ବ୍ୟତିବ୍ୟସ୍ତ ହୋଇ ଯାଇଥିଲେ ଏବଂ ଅଭାବ ଅନାଟନର ସମ୍ମୁଖୀନ ହୋଇଥିଲେ । ୧୭୬୨ଠାରୁ ୧୭୯୭ ମଧ୍ୟରେ ବଳଭଦ୍ର ଭଞ୍ଜଙ୍କ ରାଜୁତି ସମୟରେ ଭୂୟାଁ ପୀଢ଼ଗୁଡ଼ିକ ପାଇକାଳୀ Tenureରେ ପରିଣତ ହେବାରୁ ସୈନ୍ୟର ଅଭାବ ମଧ୍ୟ ପରିଲକ୍ଷିତ ହେଲ । ଫଳରେ ନୟାଗଡ଼, ନୟାକୋଟ, ମେକପୁରର ଭୂୟାଁମାନେ ପ୍ରଥମେ ନରସିଂହ ନାରାୟଣ ଭଞ୍ଜଦେଓ ଏବଂ ପ୍ରତାପ ବଳଭଦ୍ର ଭଞ୍ଜଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ରାଜା ଜନାର୍ଦ୍ଦନ ଭଞ୍ଜ କେଉଁଝରରେ ପ୍ରଥମ settlement କରିବା ଫଳରେ ଭୂୟାଁମାନଙ୍କ ଉପରେ ଅନେକ ପ୍ରକାରର କର ଲଦି ଦିଆଯାଇଥିଲା । ସେ ସମୟର ବେବର୍ତ୍ତାମାନେ ମଧ୍ୟ ଭୂୟାଁମାନଙ୍କ ଉପରେ ଅତ୍ୟାଚାର କରିବାରୁ ଭୂୟାଁମାନେ ରତ୍ନା ନାଏକଙ୍କର ନେତୃତ୍ୱରେ ୧୮୯୧ ମସିହାରେ ଗଣ ଆନ୍ଦୋଳନ ସୃଷ୍ଟି କରିଥିଲେ । ସେ ସମୟର କମିଶନର A J.M. Mills ଏବଂ Supt. of Territory Mahala Cuttack ମେଳକୁ ଦମନ କରି ରତ୍ନାକର ନାଏକଙ୍କୁ ନଜରବନ୍ଦୀରେ ରଖିଥିଲେ । ତଥାକଥିତ ନିର୍ଯାତିତ ଭୂୟାଁମାନେ ରାଜାଙ୍କ ସାଙ୍ଗରେ ଆଦେଶ ଓ ସମ୍ବାଦ ସରବରାହ ନିମନ୍ତେ ଜଣେ ଗୁରୁମାନଙ୍କ ବା ଜଣେ ଭୂୟାଁ ଏଜେଣ୍ଟ ନିଯୁକ୍ତ କରିଥିଲେ ।

୧୮୬୮ ମସିହା ଏପ୍ରିଲ ୨୧ ତାରଖରେ ରତ୍ନା ନାଏକ ଭୂୟାଁ, କୋହ୍ଲ ଏବଂ ଜୁଆଙ୍ଗମାନଙ୍କୁ ଏକତ୍ରିତ କରି ଧନୁର୍ଜ୍ଜୟ ଭଞ୍ଜଙ୍କୁ ରାଜା ବୋଲି ଅସ୍ୱୀକାର କରିବାପାଇଁ ଆଦେଶ ଦେଇଥିଲେ । ଧନୁର୍ଜ୍ଜୟଙ୍କର କେହି ଲୋକ ତାଙ୍କ ପାଖକୁ ଆସିଲେ ତାଙ୍କୁ ବନ୍ଦୀ କରି ରଖୁଥିଲେ । ସେମାନେ କେନ୍ଦୁଝରର ପ୍ରଧାନମନ୍ତ୍ରୀ ଏବଂ ବେଢ଼ାଜାଲ ମହାପାତ୍ର (ସାଉନ୍ତମାନଙ୍କର ନେତା)ଙ୍କୁ ଧରିନେଇ ହତ୍ୟା କଲେ । ଅନେକ ଗୁଡ଼ିଏ ଗାଁ ମଧ୍ୟ ପୋଡ଼ି ପକାଇଲେ । ରାଜାଙ୍କର ଅନେକ ଗୁଡ଼ିଏ ଅନୁଚର ଯେଉଁମାନେ କି ଭୂୟାଁମାନଙ୍କ ଉପରେ ଅତ୍ୟାଚାର କରୁଥିଲେ, ସେମାନଙ୍କୁ ମଧ୍ୟ ଗ୍ରେପ୍ତାରି ନେଇଗଲେ । ଏମାନଙ୍କର ସଂଖ୍ୟା ଆସ୍ତେ ଆସ୍ତେ ବଢ଼ି ୨୦ ହଜାର ପର୍ଯ୍ୟନ୍ତ ଗଲା । ସେମାନେ ଅପର କେନ୍ଦୁଝରର ଅନେକ ଘରଦ୍ୱାର ପୋଡ଼ିଦେବା, ଅତ୍ୟାଚାରୀ ଲୋକଙ୍କୁ ମାରିଦେବା, ଡାକ ପୋଡ଼ିଦେବା କାର୍ଯ୍ୟରେ ଲିପ୍ତ ହୋଇଥିଲେ । ସେମାନେ ସମସ୍ତରେ କେନ୍ଦୁଝର ରାଜା ଧନୁର୍ଜ୍ଜୟଙ୍କୁ ନ ମାନି ନିଜ ହାତରେ ଧନୁ, ତୀର, ଖଣ୍ଡା ଧରି କେନ୍ଦୁଝରର ବହୁଳ କ୍ଷତି ଘଟାଇଥିଲେ । ମହାରାଣୀ ଭିକ୍ଟୋରିଆ ରାଜାଙ୍କର ପ୍ରରୋଚନାରେ ଧନୁର୍ଜ୍ଜୟଙ୍କୁ ରାଜା ବୋଲି ସ୍ୱୀକାର କଲେ । ଫଳରେ କଟକ କମିଶନରଙ୍କ ଦ୍ୱାରା ସେ ପେନ୍‌ସନଭୋଗୀ ହେଲେ । ରାଜାଙ୍କର ଅନୁରୋଧରେ କଟକ କମିଶନର ଏବଂ ଗ୍ରେଟ ନାଗପୁରର କମିଶନର, ଡେପୁଟୀ କମିଶନର ସିଂହଭୂମିଙ୍କୁ ଏ ଆନ୍ଦୋଳନ ଦମନ କରିବା ପାଇଁ ପଠାଇଲେ । କଟକ କମିଶନର ଆନ୍ଦୋଳନକାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କଲେ । ଆଦେଶାନୁକ୍ରମେ Dr. Hayes ସୈନ୍ୟସାମନ୍ତ ଧରି ଜୟନ୍ତୀ ଗଡ଼ ବାଟେ କେନ୍ଦୁଝରରେ ମଇ ୭ ତାରିଖ ଦିନ ପହଞ୍ଚିଲେ ଏବଂ ରାଜାଙ୍କୁ ଆନ୍ଦୋଳନ ହାତରୁ ଉଦ୍ଧାର କଲେ । ସ୍ୱଳ୍ପ ସୈନ୍ୟ ସାହାଯ୍ୟରେ Dr. Hayes ଏ ଆନ୍ଦୋଳନ ଦମନ କରି ନ ପାରି ଅଧିକ ସୈନ୍ୟ ଗ୍ରେଟନାଗପୁର ଏବଂ ବେଙ୍ଗଲ ଗଭର୍ଣ୍ଣରଙ୍କଠାରୁ ମଗାଇଲେ । ଏହି ଆନ୍ଦୋଳନ ତଳ କେନ୍ଦୁଝର ତଥା ଆନନ୍ଦପୁର ପର୍ଯ୍ୟନ୍ତ ବ୍ୟାପୀଥିଲା । Dr. Hayes ପର୍ବତ କନ୍ଦର ଭୀଷଣ ଜଙ୍ଗଲ ଭିତରେ ସୈନ୍ୟମାନଙ୍କ ସହ ବହୁ ଚେଷ୍ଟାରେ ଏହି ଆନ୍ଦୋଳନକୁ ଦମନ କଲେ । କଟକ କମିଶନର ରାଜା ଧନୁର୍ଜ୍ଜୟଙ୍କୁ ରାଜା ବୋଲି ନ ଭାବିଲେ ଫାଶୀ ଖୁଣ୍ଟରେ ଝୁଲାଇବେ ଆଦେଶରେ ଭୂୟାଁମାନେ ବ୍ୟଥିତ ହେଲେ ।

ସେହି ସମୟରେ ମୟୂରଭଞ୍ଜର ରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଏ ଆନ୍ଦୋଳନକୁ ଦମନ କରିବା ପାଇଁ ସାହାଯ୍ୟ କରିଥିଲେ । Colonel E. T. Dalton

ଗ୍ରେଟନାଗପୁରର କମିଶନର ମଧ୍ୟ ଏ ଆନ୍ଦୋଳନ ଦମନ କରିବା ପାଇଁ ଅଗ୍ରସର ହୋଇଥିଲେ । **Ravenshaw Saheb** ମଧ୍ୟ ବହୁ ସୈନ୍ୟ ସାଙ୍ଗରେ ଆଣି କେନ୍ଦୁଝରକୁ ଏ ଆନ୍ଦୋଳନ ଦମନ କରିବା ପାଇଁ ଆସିଥିଲେ । ସେମାନେ ବହୁ ସୈନ୍ୟ ସାହାଯ୍ୟରେ ନନ୍ଦ ନାଏକ, ନନ୍ଦ ପ୍ରଧାନ, ବାବୁ ନାଏକ, ଦାଶରଥି ନାଏକ, ଝୁମ୍ପା ପ୍ରଧାନ ଇତ୍ୟାଦିଙ୍କୁ ବନ୍ଦୀ କରିଥିଲେ; କିନ୍ତୁ ରତ୍ନା ନାଏକ ଖସି ପଳାଇଗଲେ । ଭୂୟାଁମାନେ **Colonel Dalton** ଏବଂ **T. E. Ravenshaw** ସାହେବଙ୍କ ପାଖରେ ଏ ବିଦ୍ରୋହ ବନ୍ଦ କରିବା ପାଇଁ ୧୫ ଦିନ ସମୟ ମାଗିଥିଲେ; କିନ୍ତୁ କମିଶନର ସାହେବ ତାଙ୍କୁ ଗୋଟିଏ ଦିନ ମଧ୍ୟ ସମୟ ଦେଇ ନ ଥିଲେ । ସେ ସମୟର ବ୍ରିଟିଶ ସରକାର ତଥା **Dalton** ଏବଂ କମିଶନର **T. E. Ravenshaw** ଆନ୍ଦୋଳନକାରୀମାନେ ଆତ୍ମସମର୍ପଣ କଲେ ତାଙ୍କୁ ପୁରସ୍କାର ଦିଆଯିବ କହି ସେମାନଙ୍କୁ ଆଶ୍ବସ୍ତ କରିଥିଲେ । ଫଳରେ ସେମାନଙ୍କ ମୁଖ୍ୟ ନେତା ରତ୍ନା ନାଏକ, ନନ୍ଦ ନାଏକ, ଗୁଞ୍ଜି ଅ କୋଲ୍ହ, ସୁନ ରଣା ପ୍ରମୁଖ ୧୫।୮।୬୮ରେ ଧରାହେଲେ ଏବଂ ଫାଶୀ ଖୁଣ୍ଟରେ ଝୁଲିଲେ । ସେହି ସମୟରେ କେନ୍ଦୁଝର ଷ୍ଟେଟରେ ଜନସଂଖ୍ୟା ୨,୪୮,୧୦୧ ଥିଲା ।

ଆଉ କେତେକ ପଳାତକ ନେତା ବଣେଇ ରାଜା, ଉଦୟପୁର ରାଜା ଓ ପାଲଲହଡ଼ା ରାଜାଙ୍କ ପାଖରେ ଆତ୍ମସମର୍ପଣ କଲେ ଏବଂ ଆନ୍ଦୋଳନର ଅବସାନ ହେଲା । ରତ୍ନା ନାଏକ ସମେତ ଛଅ ଜଣ ଫାଶୀ ଖୁଣ୍ଟରେ ଝୁଲିଲେ । ଅନ୍ୟ ୧୮୩ ଜଣଙ୍କୁ ବିଚାର ପାଇଁ ପଠାଗଲା । ଆଉ ମଧ୍ୟ କେତେକ ନେତା ପାହାଡ଼ କୋରଡ଼ରେ ଆଶ୍ରୟ ନେଲେ । କେନ୍ଦୁଝରରେ ଶାନ୍ତି ପ୍ରତିଷ୍ଠା କରିବାପାଇଁ ୨୦୦ ଫୌଜ ସାଙ୍ଗରେ ଧରି ଆସିଷ୍ଟାଣ୍ଟ ପୋଲିସ ମଧ୍ୟ ଅବସ୍ଥାନ କଲେ । **Ravenshaw** ସାହେବ ଏବଂ **Colonel Dalton** ସ୍ୱସ୍ଥାନକୁ ନଭେମ୍ବର ୧୦ ତାରିଖରେ ପ୍ରତ୍ୟାବର୍ତ୍ତନ କଲେ । ଭୂୟାଁ ନେତା ରତ୍ନା ନାଏକ ଫାଶୀ ଖୁଣ୍ଟରେ ଝୁଲିଲେ ମଧ୍ୟ ସେ ବ୍ରିଟିଶରମାନଙ୍କୁ ସ୍ୱୀକାର କରି ନ ଥିଲେ କିମ୍ବା ତାଙ୍କ ନିକଟରେ ଆତ୍ମସମର୍ପଣ କରି ନ ଥିଲେ । ମହାରାଣୀ ବିଷ୍ଣୁପ୍ରିୟାଙ୍କୁ କଟକରୁ ପୁରୀକୁ ପଠାଗଲା । ଏହି ଆନ୍ଦୋଳନ ବ୍ରିଟିଶ ସରକାରଙ୍କର **Military** ଶାସନ ବଳରେ ଦମନ କରାଯାଇଥିଲା; କିନ୍ତୁ ଏହା ବେଶିଦିନ ତିଷ୍ଠି ପାରିଲା ନାହିଁ । ୨୫ଜଣ ଜୁଆଙ୍ଗ ନେତା ଆତ୍ମ ସମର୍ପଣ କରିଥିଲେ । ୧୦୦ଜଣ ମେଳିଆ ବନ୍ଦ ହୋଇଥିଲେ । କେନ୍ଦୁଝରର ପଡ଼ୋଶୀ ରାଜାମାନେ ଏ ମେଳି ବା ଆନ୍ଦୋଳନ ବନ୍ଦ କରିବାକୁ ସାହାଯ୍ୟ କରିଥିଲେ ।

୨୦ ବର୍ଷ ପରେ ପରେ ପୁଣି ଥରେ କେନ୍ଦୁଝରରେ ଏହି ଭୂୟାଁ ଆନ୍ଦୋଳନ ଚେଇଁ ଉଠିଲା । ଏହି ଆନ୍ଦୋଳନରେ ସୁଶିକ୍ଷିତ ଧରଣୀଧର ଭୂୟାଁ ନେତୃତ୍ୱ ନେଇଥିଲେ । ଏହା ୧୮୯୧ ଖ୍ରୀ:ଅ: ଜାନୁୟାରି ୧୭ ତାରିଖରେ ଆରମ୍ଭ ହୋଇଥିଲା ।ଏହି ଆନ୍ଦୋଳନକୁ ପୁଙ୍ଖାନୁପୁଙ୍ଖ ଚର୍ଚ୍ଚା କରି ଡକ୍ଟର ପ୍ରସନ୍ନ ମିଶ୍ର ତାଙ୍କ ପ୍ରକାଶିତ ବହିରେ ସ୍ଥାନ ଦେଇଛନ୍ତି । ଭୂୟାଁମାନଙ୍କ ବିଚାରରେ—ରାଜ୍ୟରେ ଗଣଆନ୍ଦୋଳନ ନ ହେଲେ ରାଜା ସ୍ୱେଚ୍ଛାରୂପେ ଶାସନ ଚଳାନ୍ତି ନାହିଁ । ତାଙ୍କୁ ଉଦାହରଣ ଦେଇ ଅଜୟ ଚନ୍ଦ୍ର ଦାସ ତାଙ୍କ ବହିରେ ଲେଖିଛନ୍ତି—

Development and progress by slow Process of evolution from the past was against the assi-milation. They subscribe to the ideas that as amo-malette can not be made without breaking eggs. Similarly no progress can be achieved in the tribal society without a break with its culture.

(Written by Ajay Chandra Das)

ମହାରାଣୀ ବିଷ୍ଣୁପ୍ରିୟା ପୁରୀକୁ ଚାଲିଗଲେ ମଧ୍ୟ ତାଙ୍କର ଆଦରର ପୁଅ କୃଷ୍ଣମିତା ନିବାସୀ ଧରଣୀ ସମେତ ଅନେକ ଭୂୟାଁମାନଙ୍କୁ କେନ୍ଦୁଝରରେ ଛାଡ଼ି ଯାଇଥିଲେ । ରାଜା ଧନୁର୍ଜ୍ଜୟ ପ୍ରିଭି କାଉନସିଲର ଆଦେଶନାମାନୁଯାୟୀ କେନ୍ଦୁଝରରେ ଗାଦିସୀନ ହେଲେ ମଧ୍ୟ ତାଙ୍କର ନିହାତି ଆପଣାର ଭୂୟାଁମାନଙ୍କ ଉପରେ ଅତ୍ୟାଚାର, ବେଠି ଓ ଅନ୍ୟ କେତେକ କାରଣରୁ ତାଙ୍କ ଭିତରେ ବିଦ୍ରୋହର ନିଆଁ ଲିଭି ଯାଇ ନ ଥିଲା ।

ରାଜା ଧନୁର୍ଜ୍ଜୟ ଭଞ୍ଜ ୧୮୯୧ ମସିହାରେ ମାଛକାନ୍ଦଣା ଝର କେନ୍ଦୁଝର ସହର ଭିତର ଦେଇ ଗଡ଼ କରିବା ଉଦ୍ଦେଶ୍ୟରେ ବିଚିତ୍ରାନନ୍ଦ ଦାସଙ୍କୁ ଆନନ୍ଦ-ପୁରରୁ ଡକାଇ ଜୋର ବା ନାଳ ଖୋଳିବା କାର୍ଯ୍ୟ ସମ୍ପୂର୍ଣ୍ଣ କରିବାକୁ ଆଦେଶ ଦେଇଥିଲେ । ସେଥିପାଇଁ ରାଜା ୧୦,୦୦୦ ଟଙ୍କା ମଞ୍ଜୁର କଲେ । ବିଚିତ୍ରାନନ୍ଦଙ୍କ ଜାଲିଆତିରେ ୫୬୦୦୦ ତଳକୁ ଖସି ଆସିଲା । ଫଳରେ ନିରୀହ ଭୂୟାଁ, କୋହ୍ଲ, ସାନ୍ତାଳ, କନ୍ଧ ପ୍ରଭୃତି ଶ୍ରମିକମାନଙ୍କ ଉପରେ ବେଠୀର ଚାବୁକ ଗର୍ଜି ଉଠିଲା । ପେଟକୁ ନ ଦେଇ ସେବେଳର ସରକାରୀ କର୍ମଚାରୀମାନେ ବିନା ପଇସା ଖର୍ଚ୍ଚରେ କାମ ହାସଲ (ଜୋରଖୋଳା) କରିବାକୁ ବଦ୍ଧ ପରିକର ହୋଇ ପଡ଼ିଲେ ।

ଦ୍ୱିତୀୟରେ ଧରଣୀ ନାୟକ ରାଜା ଓ ରାଣୀଙ୍କ କୋଳରେ ଆଦରରେ ବଢ଼ି କଟକ ସହରରେ ଦର୍ଭେ ପାଶ କରି ମଧ୍ୟ ସେ କାର୍ଯ୍ୟାଗାରରୁ ନିବୃତ୍ତ ହୋଇଥିଲେ ଏବଂ ସେହି ସମୟରେ ଧନୁର୍ଜ୍ଜୟଙ୍କ ଆଦେଶରେ ଧରଣୀ ସୀମା ନିର୍ଦ୍ଧାରଣ କରିବା ପ୍ରକାଶେ ଜୟନ୍ତୀକୁ ପଠା ଯାଇଥିଲେ ଏବଂ ଦେଢ଼ ବର୍ଷ କାଳ ବିନା ବେତନରେ ସର୍ଭେ କାମ କରିଥିଲେ । ଜୟନ୍ତୀରେ ଥିବାବେଳେ ଧରଣୀର ବଂଶଧର ତଥା ତାଙ୍କ ଜାତିର ଲୋକମାନଙ୍କୁ ଜେଲ ଦିଆଯାଇଛି ବୋଲି ଜାଣିବାକୁ ପାଇଲେ । ସେ ମଧ୍ୟ କେବେ ଯେ ରାଜାଙ୍କର ଶିକାର ନ ହେବେ ଏ ଭାବନା ତାଙ୍କ ମୁଣ୍ଡରେ ଦୃଢ଼ରୁ ଦୃଢ଼ତର ଭାବରେ ଜାଗି ଉଠିଲା । ଏସବୁକୁ ନେଇ ଧରଣୀଧର ରାଜାଙ୍କ ବିରୁଦ୍ଧରେ ନେତୃତ୍ୱ ନେବାକୁ ସ୍ଥିର କଲେ । ଜାନୁୟାରୀ ୧୮୯୧ରେ ସେ ଟ୍ରିବ୍ୟୁଟାରୀମହଲ ସୁପରିଣ୍ଟେଣ୍ଡେଣ୍ଟ, ମୟୂରଭଞ୍ଜ ରାଜାଙ୍କ ମେନେଜର ତଥା ବେଙ୍ଗଲ ସରକାରଙ୍କ ନିକଟରେ କେନ୍ଦୁଝର ରାଜା ଧନୁର୍ଜ୍ଜୟଙ୍କର ଅତ୍ୟାଚାରରୁ ଭୂୟାଁମାନଙ୍କୁ ରକ୍ଷା କରିବା ଲାଗି ଦରଖାସ୍ତ ପଠାଇଥିଲେ ଏବଂ ମାମୁଁଙ୍କ ଗାଁରେ ଗୋଟାଏ ପଞ୍ଚାୟତ ଡକାଇ ରାଜାଙ୍କ ଅତ୍ୟାଚାରର ତୀବ୍ର ସମାଲୋଚନା କରିଥିଲେ । ରାଜା ଏ ବିଷୟ ଖବର ପାଇ ବିଚିତ୍ରାନନ୍ଦ ଦାସ ଓ ନାରାୟଣ ପୋଇଙ୍କୁ ପଠାଇ କେତେକଙ୍କୁ ବନ୍ଦୀ କରି ନେଇ ଯାଇଥିଲେ । ସେଥିରେ ଜନସାଧାରଣ ଅତିଷ୍ଠ ହୋଇ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରିବେ ବୋଲି ବଦ୍ଧପରିକର ହେଲେ । ଧରଣୀଧର କିନ୍ତୁ ସେଠାରୁ ପଳାଇ ଯାଇ ରାଜାଙ୍କର ଏପରି ହୀନ କର୍ମରୁ ନିବୃତ୍ତ ହେବାପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ତା ୨ । ୫ । ୧୮୯୧ରେ ଧରଣୀଧରଙ୍କ ନେତୃତ୍ୱରେ ଚମ୍ପକପୁରରେ ଏକ ବିରାଟ ସଭା ବସିଥିଲା । ସେଥିରେ ବଣେଇ ଓ ଜୟନ୍ତୀ ଗଡ଼ ଆଡ଼ୁ ଆସିଥିବା ଭୂୟାଁ ଓ କୋହ୍ଲ ସର୍ଦ୍ଦାର ସମେତ ପ୍ରାୟ ୧୦୦୦ ପ୍ରଜା ଯୋଗ ଦେଇଥିଲେ । ୬ରେ ସେମାନେ ନରେନ୍ଦ୍ର ମହାପାତ୍ରଙ୍କୁ ନେଇ କାଳିକା ପ୍ରସାଦରେ ମଧ୍ୟ ଗୋଟିଏ ସଭାରେ ରାଜାଙ୍କର ପ୍ରଜାମାନଙ୍କ ପ୍ରତି ଦୁର୍ବ୍ୟବହାର ବିଷୟରେ ସମାଲୋଚନା କରିଥିଲେ । ଧରଣୀଧର କେନ୍ଦୁଝରକୁ ଫେରିବା ବାଟରେ ପ୍ରାୟ ୨୦୦୦ ଭୂୟାଁ ଓ କୋହ୍ଲ ଲୋକମାନେ ଧରଣୀଙ୍କ ସାଙ୍ଗରେ ଯୋଗଦେଇ କେନ୍ଦୁଝରର ରାଜରାସ୍ତା କାଟି ଦେଇଥିଲେ । ଧରଣୀଙ୍କ ନେତୃତ୍ୱରେ କେନ୍ଦୁଝରକୁ ସବୁ ଦିଗରୁ ବିଚ୍ଛିନ୍ନ କରି ରାଜା ଉଆସ ପ୍ରାୟ ୫୦୦୦ ଭୂୟାଁ ଓ ଅନ୍ୟ ଜାତିର ଲୋକମାନେ ୭।୫।୧୮୯୧ରେ ଘେରାଉ କଲେ ।

୧୨।୫।୧୯୧ରେ ରାଜା ଧନୁର୍ଜୟ ଚତୁର ଫକୀର ମୋହନଙ୍କ ବୁଦ୍ଧିରେ ଖବର (ଗୁପ୍ତ) ରାସ୍ତାରେ ଆନନ୍ଦପୁର ହାଣ୍ଡି ପିଠିରେ ଯାଇ G. Toyanabi, କଟକ କମିଶନରଙ୍କ ସାହାଯ୍ୟ ଲୋଡ଼ିଲେ । କମିଶନର ବେଙ୍ଗଲ ଗଭର୍ଣ୍ଣରଙ୍କୁ ଜଣାଇ କେନ୍ଦୁଝର ରାଜାଙ୍କୁ ସାହାଯ୍ୟ କରିବାକୁ ଏକ ବାର୍ତ୍ତା ପଠାଇଲେ । ବେଙ୍ଗଲ ଗଭର୍ଣ୍ଣର H. Dawson, Dy. Commissioner ଛୋଟନାଗପୁରଙ୍କୁ ଏ ଆନ୍ଦୋଳନ ଦମନ କରିବାକୁ ନିର୍ଦ୍ଦେଶ ଦେଲେ । କମିଶନର ମଧ୍ୟ ଢେଙ୍କାନାଳ ସିଂହଭୂମି ଓ ମୟୂରଭଞ୍ଜରେ ଥିବା ସରକାର କର୍ତ୍ତୃପକ୍ଷଙ୍କୁ ଆନ୍ଦୋଳନ ଦମନ କରିବାରେ ସାହାଯ୍ୟ ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ୧୨।୫।୧୯୧ଠାରୁ ୧୭।୫।୧୯୧ ଭିତରେ ଧରଣୀଧରଙ୍କୁ ୨୦ ହଜାରରୁ ବେଶୀ ଲୋକ ସାହାଯ୍ୟ କଲେ । ଧରଣୀଧରଙ୍କ ଅନୁଚରମାନେ ବାଟରେ ଅନେକ ପାଇକମାନଙ୍କୁ ବନ୍ଦୀ କରି ରସଦ ଛଡ଼ାଇ ନେଇ କେନ୍ଦୁଝର ଉଆସ ଆକ୍ରମଣ ପାଇଁ ବ୍ୟସ୍ତ ହେଲେ । କ୍ଷେତ୍ରବର ସିଂହଙ୍କ ପାଖରେ ଥିବା ସୈନ୍ୟମାନେ ଏମାନଙ୍କୁ ବିରୋଧୀ କଲେ । ଧରଣୀଧର ଚନ୍ଦ୍ରବନଠାରୁ ରାଇସୁଆଁ ଭିତରେ ନିଜର ଆଦେଶ ଜାହିର କରି ଫକୀର ମୋହନଙ୍କୁ ୧୪।୫।୧୯୧ ସକାଳେ ବସନ୍ତପୁର ଘାଟିରେ ବନ୍ଦୀ କଲେ । ଫକୀର ମୋହନ ମହାରାଣୀ ପୁତ୍ର ଧରଣୀଧରଙ୍କ ପାଖରେ ଗୁମାସ୍ତାଗିରି କରି ରହିଲେ । ଧରଣୀଧର ବହୁ ଲୋକଙ୍କ ସାହାଯ୍ୟ ପାଇ ରାଜପ୍ରାସାଦ ଲୁଟିନେଲେ । ରାଜ ସରକାର କର୍ମଚାରୀମାନଙ୍କଠାରୁ ରସଦ ନେଇ ତାଙ୍କର ରାଇସୁଆଁ ଓ ଚନ୍ଦ୍ରବନରେ ରହୁଥିବା ଲୋକମାନଙ୍କ ଖାଇବା ଓ ରହଣି ବନ୍ଦୋବସ୍ତ କରୁଥିଲେ । ଫକୀର ମୋହନ ବନ୍ଦୀ ହୋଇ ରାଇସୁଆଁରେ ଧରଣୀ ସର୍ଦ୍ଦାରଙ୍କୁ ସ୍ୱୀକାର କରି ସର୍ଦ୍ଦାରଙ୍କ ମେନେଜର କରି ରହିଲେ ।

ଧରଣୀ ଫକୀର ମୋହନଙ୍କ ପରାମର୍ଶରେ ଉଆସ ଘେରାଉ ପ୍ରସ୍ତାବ ବାତିଲ କଲେ । ମହାରାଣୀ ପୁତ୍ର ଦସ୍ତଖତରେ (ସନ୍ତକରେ) ଧାଇଁତଆ ତୋପ କଣିବାକୁ ପଠାଗଲେ । ଫକୀର ମୋହନ ୪।୫ ଦିନ ରହଣି ଭିତରେ ସର୍ଦ୍ଦାରଙ୍କ ମନ ଜିଣି ନେଇଥିଲେ । ଦିନେ ଗୂଢ଼ ଆଲୋଚନାବେଳେ ଧରଣୀ ଖଣ୍ଡେ ପାନ ଖାଇବାକୁ ଚାହିଁଲେ । ଫକୀର ମୋହନ ଏଇ ସୁବିଧା ନେଇ ଉପସ୍ଥିତ ବୁଦ୍ଧି ଖଟାଇ ଗାଁରୁ ପାନ ମଗାଇବାର ବନ୍ଦୋବସ୍ତ କଲେ । ଧରଣୀଙ୍କ ସଙ୍ଗେ ଆଲୋଚନା ପରେ ଉପସ୍ଥିତ ବୁଦ୍ଧିରେ ଫକୀର ମୋହନ ଚିଠି ଲେଖିଲେ—

"ଭୋଲାନାଥ ଖମାସ୍ତ ଜାଣିବୁ,

ମହାରାଣୀ ପ୍ରଜ ସକାଶ ନଚାନ୍ତ ଦରକାର । ଅତଶୀଘ୍ର ଶହେ ହେଲେ ପାନ, ଦୁଇ ଶହ ଗୁଆ ପଠାଇବୁ । ପଶ୍ଚିମ ପଟରୁ ମାହାର କର ଆଖ୍ ବାଡ଼ିକୁ ଶୀଘ୍ର ପାଣି ମଡ଼ାଇବୁ । ନୋହଲେ ଆଖୁ ବାଡ଼ି ବନାଶ ହିବ ବୋଲ ଜାଣିବୁ ।"

। ଇତ ।

॥ ଫକୀର ମୋହନ ସେନାପତ ॥

ତାଳପତ୍ର ଲେଖାରେ ଧରଣୀଧର ସରଳ ବଶ୍ୱାସରେ ଦସ୍ତଖତ ଦେଲେ । ଦୁଇ ଜଣ ଧାଉଡ଼ିଆ ପାଇକ ୫ ଟଠି ସାଙ୍ଗରେ ୩ ଖଣ୍ଡି ତାର ନେଇ ଆନନ୍ଦପୁରରେ ଫକୀର ମୋହନ ସେନାପତଙ୍କ ଗୁମାସ୍ତା ଭୋଲାନାଥ ଖମାରୀଙ୍କୁ ଦେଲେ । ଖମାରୀ ତା'ର ଅର୍ଥ କଛି ବୁଝି ନ ପାର ରାଜାଙ୍କୁ ଦେଲେ ।

ଏହା ଅନ୍ୟ ଏକ ଲେଖାରେ ଭୋଲାନାଥଙ୍କୁ ବାଲେଶ୍ୱରରେ ଦେଲେ । ଖମାରୀ ଆନନ୍ଦପୁର ଅସି ଫକୀର ମୋହନଙ୍କ ସ୍ତ୍ରୀଙ୍କ ପରାମର୍ଶରେ ଧନୁର୍ଜ୍ଜୟଙ୍କ ହାତରେ ଦେଲେ । ଆଉ ଏକ ମତରେ ମଧୁସୂଦନ ରାଓ—ଶିକ୍ଷାର୍ଥୀଙ୍କୁ ଦେଖାଇ ସାର ଭୋଲାନାଥ ଧନୁର୍ଜ୍ଜୟ ଭଞ୍ଜଙ୍କୁ ଦେଲେ । ଯାହାହେଉ ଧନୁର୍ଜ୍ଜୟ ଟଠି ଓ ତାର ପାଇ ତାଙ୍କ ଉପସ୍ଥିତ ବୁଦ୍ଧିରେ ଅର୍ଥ କଲେ—"ଚନୋଟି ତାର—ସୁପରଣ୍ଟେଣ୍ଡେଣ୍ଟ ବେଙ୍ଗଲ ଗଭର୍ଣ୍ଣମେଣ୍ଟ, ଧନୁର୍ଜ୍ଜୟ ଭଞ୍ଜ ଓ ମଧୁବାବୁ ଏକେଲ"—୧୦୦ ପାନର ଅର୍ଥ—ଶହେ ପୋଲସ ଓ ଦୁଇ ଶହ ଗୁଆର ଅର୍ଥ—୨୦୦ ଗୁଳ । ପଶ୍ଚିମ ଦଗ ଅର୍ଥାତ୍ ଗୁର୍ଦ୍ଦିବସା ଆଡ଼ୁ ପୋଲସ ଆକ୍ରମଣ ହେଲେ ଆନ୍ଦୋଳନ ଦମନ କରବେ । ଏଇ ନଷ୍ପତ୍ତିରେ ଉପସ୍ଥିତ ହୋଇ ରାଜା ଧନୁର୍ଜ୍ଜୟ ପାଇକ ସର୍ଦ୍ଦାର ମହାପାତ୍ରଙ୍କୁ କଟକ କମିଶନର କୋଠିକି ପଠାଇଲେ । ପୋଲସ ସାହେବ ରାତାରାତ କଟକ ଯାଇ ପରଦନ ସକାଳେ ମଧୁବାବୁଙ୍କୁ ସାଙ୍ଗରେ ନେଇ ସୁପରଣ୍ଟେଣ୍ଡେଣ୍ଟଙ୍କୁ ଦେଖାକଲେ । ସୁପରଣ୍ଟେଣ୍ଡେଣ୍ଟ ଗୁର୍ଦ୍ଦିବସା ଡେପୁଟି କମିଶନର ଓ ବାଲେଶ୍ୱର ସୁପରଣ୍ଟେଣ୍ଡେଣ୍ଟଙ୍କୁ ଫୌଜ ପଠାଇବାକୁ ନର୍ଦ୍ଦେଶ ଦେଲେ । ଗୁର୍ଦ୍ଦିବସା ଡେପୁଟି କମିଶନର ନଜେ ଫୌଜ ଧର ଆଗେଇ ଆସିଲେ । ବାଲେଶ୍ୱରରୁ ଫୌଜ ଆନନ୍ଦପୁରରେ ଅବସ୍ଥାନ କଲେ ।

G. Toyanbi—Supdt. Tributory Mahala Cuttack.

H. P. Wylly—Agent of Keonjhar (Manager of Mayurbhanja took over as Agent).

Charles Elliot—Laileul Governor, Bengal.

Statutory Civilian of British Government—

ରାୟ ବାହାଦୁର ନନ୍ଦ କିଶୋର ଦାସ

R. F. Guise—

ଗୃଦ୍ଧିବସା ଡେପୁଟି କମିଶନର—ଗଇସ ସାହେବ କେନ୍ଦୁଝରରେ ଧରଣୀ ସର୍ଦ୍ଦାରଙ୍କୁ ଦେଖା କରିବାକୁ ଏକ ଆଦେଶନାମା ପଠାଇଲେ । ବାଲେଶ୍ୱରରୁ ସୁପରିଣ୍ଟେଣ୍ଡେଣ୍ଟ ମଧ୍ୟ ଏକ ନୋଟିସ ପଠାଇଲେ । ଧରଣୀ—ଗଇସଙ୍କର ନୋଟିସ ଓ ବାଲେଶ୍ୱର ସୁପରିଣ୍ଟେଣ୍ଡେଣ୍ଟଙ୍କ ନୋଟିସ ପାଇ ଫକୀର ମୋହନଙ୍କୁ ଦେଖାଇଲେ ଏବଂ ସଙ୍ଗେ ସଙ୍ଗେ ଅସୀ ମୂନରେ ଫାଡ଼ି ଦେଇ ଫିଙ୍ଗିଦେଲେ । ଚତୁର ଫକୀର ମୋହନ ତାକୁ ଯୋଡ଼ି ଗଇସ ସାହେବ ମହାରାଣୀ ପୁତ୍ର ଧରଣୀ ସର୍ଦ୍ଦାରଙ୍କୁ ସାକ୍ଷାତ କରିବାକୁ ସ୍ୱହାନ୍ତ ବୋଲି ବୁଝାଇ ଦେଲେ ।

ଧରଣୀ—ସାହେବଟା ସିନା ମହାରାଣୀ ପୁଅକୁ ସଲାମ କରିବ; କିନ୍ତୁ ମହାରାଣୀ ପୁତ୍ର କାହିଁକି ଗୋଟେ ସାହେବକୁ ଦେଖା କରିବାକୁ ଯିବ । ରାଜା ଧନୁର୍ଜୟ ଗଇସ ସାହେବଙ୍କ ସାଙ୍ଗରେ ଆସି ରାଇସୁଆଁ ପାଖ ହାଣ୍ଡିଭଙ୍ଗାରେ ରହିଲେ । ତାଙ୍କ ସାଙ୍ଗରେ S. I. ଶ୍ରୀ ଶଶୀଭୂଷଣ ରାୟ ମଧ୍ୟ ଫୌଜ ସାଙ୍ଗରୁ ବାହାରି ଆସି ଫକୀର ମୋହନଙ୍କ ସାଙ୍ଗରେ ଧରଣୀଙ୍କୁ ଗଇସଙ୍କ ପାଖକୁ ଯିବାକୁ ଅନୁରୋଧ କରିଥିଲେ । ଗଇସ ଆସିବାର ସମ୍ବାଦ ଧରଣୀ ପାଇ ଫକୀର ମୋହନଙ୍କ ପରାମର୍ଶ ଲୋଡ଼ିଲେ । ସିପାହୀମାନଙ୍କ ସାଙ୍ଗରେ ମହାରାଣୀ ପୁଅ ଧରଣୀଧର ଘୋଡ଼ାରେ ସବାର ହୋଇ ସାହେବଙ୍କୁ ଭେଟିବାକୁ ଯିବେ । ସାହେବମାନେ ସଲାମ ଦେବେ । ଧରଣୀ କେମିତି ସଲାମ ଗ୍ରହଣ କରିବେ ଫକୀର ମୋହନଙ୍କଠାରୁ ଶିଖି ଲାଲ ଧୋତି ପରିଧାନ କରି ମୁଣ୍ଡରେ ଏକ ମୂଲ୍ୟବାନ ଟୋପି ଦେଇ ହାତରେ ଲମ୍ବା ତରବାରୀ ଧରି ଘୋଡ଼ାରେ ବସି ସାକ୍ଷାତ କରିବାକୁ ଗଲେ । ସିଆଡ଼ୁ ଗଇସ, କସନ ଓ କେନ୍ଦୁଝରର ଏଜେଣ୍ଟ ଘୋଡ଼ାରେ ଆସି ଧରଣୀଙ୍କୁ କାବୁ କରିନେଲେ । S. I.ଙ୍କ ସଙ୍କେତ ମାତ୍ରେ ସିପାହୀମାନଙ୍କ ସାହାଯ୍ୟରେ ଧରଣୀଙ୍କୁ ବନ୍ଦୀ କଲେ । ସେତେବେଳେ ଧରଣୀ ତାଙ୍କର ଖଣ୍ଡାଟି ଜୋରସହ ଫିଙ୍ଗିଦେଲେ । ଫଳରେ ଅନେକଗୁଡ଼ିଏ ହାଣ୍ଡି ତାଙ୍କ ଖଣ୍ଡାରେ ଭାଙ୍ଗିଯିବା ସଙ୍ଗେ ସଙ୍ଗେ ୨।୪ ଜଣ ସିପାହୀ ମଧ୍ୟ ଆହତ ହୋଇଥିଲେ । ସେ ପାଇଁ ସେ ଗ୍ରାମ ଏ ଅବଧି ହାଣ୍ଡିଭଙ୍ଗା ନାମରେ ଖ୍ୟାତ । ଧରଣୀଙ୍କ ସାଙ୍ଗରେ ବଳରାମ ସିଂ, ନରେନ୍ଦ୍ର ମହାପାତ୍ର ୨୯।୫।୧୮୯୧ ତାରିଖରେ ବନ୍ଦୀ ହେଲେ । ଗୋପାଳ ସମେତ ଆଉ ଅନେକ ନେତା ଜଙ୍ଗଲ ମଧ୍ୟରେ ଲୁଚି ପଳାଇଲେ । ଡା: ପ୍ରସନ୍ନ ମିଶ୍ରଙ୍କ ଲେଖାରୁ ଜଣାପଡ଼େ ଏମାନେ ପୁଟୁଳିଆଠୁ

ଲୁଗୁଡ଼ ଭିତରେ ବନ୍ଦୀ ହୋଇଥିଲେ । ତପନ, ସାଇସ ପ୍ରଭୃତି ହାତୀରେ ଆସିଥିଲେ; କିନ୍ତୁ ଫକୀର ମୋହନଙ୍କ ଲେଖାରୁ ଜଣାପଡ଼େ ସେମାନେ ଘୋଡାରେ ଆସି ଧରଣୀଙ୍କୁ କାବୁ କରିଦେଇ ବନ୍ଦୀ କଲେ । ଗୋପାଳ, ନରେନ୍ଦ୍ର ସମେତ ଆଉ କେତେକ ମୂଟିଆ ଜଙ୍ଗଲରେ ଆତ୍ମଗୋପନ କଲେ ।

ବନ୍ଦୀ ସମୟରେ ଧରଣୀ ଦମ୍ଭର ସହିତ କହିଥିଲେ, ଶୋଷକମାନେ ଏଇ ଲଙ୍ଗଳାଙ୍କ ହାତରେ ଭାରତ ପରି ଏକ ସ୍ୱର୍ଣ୍ଣପ୍ରସୂ ରାଜ୍ୟକୁ ଛାଡ଼ି ଦେଇଯିବେ ।

ସେହି ଧରଣୀଧର ଆଉ ଥରେ ତାଙ୍କର କଲିକତା ରହଣିରେ ସର୍କସ ଦେଖିବାକାଳେ ମଧ୍ୟ କହିଥିଲେ, ହଣ୍ଟର ବାଲି ଶାସନ ଆଉ ବେଶୀ ଦିନ ନୁହଁ । ଏହାର ଅବସାନ ଦିନେ ନା ଦିନେ ହେବ । ସେତେବେଳେ ଆଳି ରାଜା ବ୍ରଜସୁନ୍ଦର ଦେବ ମଧ୍ୟ ଉପସ୍ଥିତ ଥିଲେ । ଧରଣୀଧରଙ୍କ ତନ୍ତ୍ର ବଳରେ ଆଳି ରାଜା ଓ ଧରଣୀଧରଙ୍କୁ ସର୍କସ ପାର୍ଟିରେ ଥିବା ବାଘ, ହାତୀ ଓ ସିଂହମାନେ ଆସି ପାଦ ଛୁଇଁଥିଲେ । ଏଗ୍ରିମେଣ୍ଟ ଅନୁଯାୟୀ ସେ ସର୍କସଟି ଆଳି ରାଜା କିଣି ନେଇଥିଲେ । ପରେ ଏହା ଆଳି ସର୍କସ ହିସାବରେ ପରିଚିତ ହୋଇଥିଲା । ଲେଖକର ପ୍ରଥମ କଲିକତା ଗସ୍ତ ଅବସ୍ଥାରେ ଏଇ ବ୍ୟକ୍ତିଙ୍କୁ ଦେଖିବାର ସୁଯୋଗ ମିଳିଥିଲା ।

ପୁରୀରୁ ଫେରିଯାଇ ଆଳିରେ ପୋଖରୀ ଭିତରେ ବାଉଁଶରେ ଘର ତିଆରି କରି କେତେଦିନ ରହିବା ପରେ ବହୁ କଷ୍ଟରେ ଧରଣୀଧର ଦେହତ୍ୟାଗ କଲେ । ତାଙ୍କର ଘର କୁସୁମିତା ଗ୍ରାମରେ ଟିକନ ନାୟକଙ୍କର ପୁଅ ବୋଲି ଜଣାପଡ଼େ । କେତେକଙ୍କ ମତରେ ୧୮୬୧ ମକର ସଂକ୍ରାନ୍ତିରେ ଜନ୍ମଗ୍ରହଣ କରି ୧୯୪୪ରେ ଆଳିରେ ଦେହତ୍ୟାଗ କଲେ । ଜନ ମୁଖରେ ମୁଖଶ୍ରୁତ ସେ ଜଣେ ପ୍ରସିଦ୍ଧ ତାନ୍ତ୍ରିକ । ମରିବା ପୂର୍ବରୁ ତାଙ୍କ ଜଙ୍ଘରୁ ଗୋଟାଏ ଜିନିଷ ବାହାର କରିନେବା ପରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ଆମର ଉତ୍କଳର ଶାସନକଳ ତାଙ୍କ ନାମରେ କେନ୍ଦୁଝର କଲେଜକୁ ନାମିତ କରିଛନ୍ତି । ତାଙ୍କ ଉଦ୍ଦେଶ୍ୟରେ ଲେଖକ ଗୋଟିଏ ନାଟକ, କାବ୍ୟ ଓ ଗୀତିନାଟ୍ୟ ଲେଖି ମଞ୍ଚସ୍ଥ କରାଇବାକୁ ସୁଯୋଗ ନେଇଥିବାରୁ ନିଜକୁ ଧନ୍ୟ ମନେ କରୁଛି । ଓଡ଼ିଶା ସ୍ତରରେ ଧରଣୀଙ୍କ ନାମରେ ଗୋଟିଏ କମିଟି ମଧ୍ୟ ଅଛି । ବିପ୍ଳବୀ ଧରଣୀଧର ନାଟକଟି ସ୍ଥାନୀୟ ITDAର ପ୍ରକଳ୍ପ ଅଧିକାରୀ ଶ୍ରୀ ଜଗବନ୍ଧୁ ପାଢ଼ୀ ଓ ଜିଲ୍ଲାପାଳ ଶ୍ରୀ ଶ୍ୟାମସୁନ୍ଦର ଲେଙ୍କା, I. A. S.ଙ୍କ ଅଧ୍ୟକ୍ଷତାରେ

ରବିନ୍ଦ୍ର ମଣ୍ଡପରେ ନବରଙ୍ଗପୁର ହାଇସ୍କୁଲର ଶିଶୁ କଳାକାରଙ୍କ ଦ୍ୱାରା ମଞ୍ଚସ୍ଥ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା ।

ତାଙ୍କର ଉଦ୍ଦେଶ୍ୟରେ ମୋର ରଚିତ ଗୋଟିଏ ଆବାହନୀ ତଳେ ଉଦ୍ଧାର କଲି । ସେଇ ବିପ୍ଳବୀ ବୀରଙ୍କ ନିର୍ଭୀକତା, ଜାତି ଓ ଦେଶପ୍ରେମ ନିକଟରେ ସମସ୍ତେ ମୁଣ୍ଡ ନୁଆଁଇଛନ୍ତି ।

"ଏଇ ମାଟି ଆମ ଗାଁ—ଏହି ମାଟିରେ ବିପ୍ଳବୀ ବୀର
ରଖିଗଲେ ତାଙ୍କ ନାଁ—
ଏଇ ମାଟିରେ ପ୍ରକୃତି ରାଣୀ କରନ୍ତି ବିହାର,
ଏଇ ମାଟିର ବନ ରାଇଜ ଅତି ମନୋହର,
ଏଇ ମାଟି ମା' ଦେଶ ବିଦେଶେ
ରଖିଛି ତା'ର ନାଁ ॥

ଏଇ ମାଟିର ସବୁଜ ପ୍ରାଣ,
ସାହିତ୍ୟ ରସ କରି ରସାଣ ।
ବାଢ଼ି ପାରିଛି ସବୁରି ଆଗେ
ଆମରି ରାଜାର ନାଁ—
ଏଇ ମାଟିରେ ସବୁ ସନ୍ତାନ, ଗଢ଼ି ଯାଇଛି ବିପ୍ଳବୀ ପ୍ରାଣ
ସାରା ସଂସାରେ ଚେତାଇ ଦେଇ
ରଖିଗଲେ ତା' ନାଁ···।
ଯାଇଚ ବେଲ, ଧରମେ ଠୁଲ, ବିଦେଶୀ ବଳ କରି ଦୁର୍ବଳ
ବନ୍ଧୁକ ଗୁଳି ବାରୁଦ ଆଗେ—ଛାତି ପତାଇ ଅତି ସୁହାଗେ
ରଖିଛି ମା'ର ନାଁ···॥"

ଟମ୍ସନବ କେନ୍ଦୁଝର ମୁକାମକୁ ଆସି ଅବସ୍ଥା ଶାନ୍ତ କରାଇଲେ । ଧନୁର୍ଜୟ କେନ୍ଦୁଝରରେ ରହିଲେ ଆନ୍ଦୋଳନ ଆଉ ଥରେ ମୁଣ୍ଡ ଟେକିବ ଆଶାକରି ଧନୁର୍ଜୟଙ୍କୁ କଟକ ପଠାଇ ଦେଲେ । H. P. Wylly କେନ୍ଦୁଝର ଦାୟିତ୍ୱରେ ରହିଲେ । ଧରଣୀ ୭ ବର୍ଷ ସଶ୍ରମ କାରାଗାର ଭୋଗିବାକୁ କଟକ ଜେଲ୍‌କୁ ପଠାଗଲେ । ଆନନ୍ଦପୁରର ପ୍ରଜାମାନେ ଫକୀର ମୋହନଙ୍କ କାର୍ଯ୍ୟକଳାପରେ ଅସନ୍ତୁଷ୍ଟ ହୋଇ ବିଦ୍ରୋହ କଲେ । କେନ୍ଦୁଝରର ଭୂୟାଁମାନେ ଧରଣୀ, ନରେନ୍ଦ୍ର ଓ ବଳରାମଙ୍କୁ ଛାଡ଼ିଦେବାକୁ ଦାବି କଲେ । H. P. Wylly ଅନେକ ଫୌଜ ସାହାଯ୍ୟରେ ବିଦ୍ରୋହ ଦମନ କଲେ । ଧୀରେ ଧୀରେ ଶୃଙ୍ଖଳ

ମହାନାୟକ, ନନ୍ଦ ନାୟକ, କାଳିଆ ନାୟକ, କୁଲୁ ନାୟକ ଏମାନଙ୍କ ପାଖରେ ଆତ୍ମସମର୍ପଣ କଲେ । ଟିକନ ରଣା ୧୩।୧୦।୯୪ରେ ଓ ଗୋପାଳ ନାଏକ ୧୯।୮।୯୪ରେ ବନ୍ଦୀ ହେଲେ । ଭିକାରୀ ଦେହୁରୀ, ଯୋଗେନ୍ଦ୍ର ପଡ଼ିଆଳ ପ୍ରଭୃତି କେତେଜଣ ନେତା ୧୮୯୪ ଜୁଲାଇ ମାସରେ ରାଜାଙ୍କ ପାଖରେ ଆତ୍ମସମର୍ପଣ କଲେ । ୯।୭।୧୮୯୪ରେ କେନ୍ଦୁଝରରେ ଶାନ୍ତି ପ୍ରତିଷ୍ଠା ହେଲା । ଧନୁର୍ଜୟ ଭଞ୍ଜ କେନ୍ଦୁଝରକୁ ଫେରିଆସି ଦାୟିତ୍ୱ ଗ୍ରହଣ କଲେ ।

ବିପ୍ଳବୀ ଧରଣୀଧର ୭ ବର୍ଷ ପାଇଁ ଜେଲ୍ ଦଣ୍ଡ ପାଇଥିଲେ ମଧ୍ୟ ସେ ୫ ବର୍ଷ ପରେ ଜେଲ୍ରୁ ଅକ୍ଟୋବର ୧୮୯୭ରେ ମୁକ୍ତ ହୋଇଥିଲେ । ତାଙ୍କୁ ମାସିକ ୫ ୮-୦୦ ପେନସନ ମଞ୍ଜୁର ହୋଇଥିଲା ଓ ପ୍ରତି ମାସରେ ଥରେ କେନ୍ଦୁଝର ଯାଇ ପାରିବେ ବୋଲି ନିର୍ଦ୍ଦେଶ ହୋଇଥିଲା; କିନ୍ତୁ ଧରଣୀଧରଙ୍କ ନିର୍ଭୀକତା ତାଙ୍କୁ ସେଥିରୁ ଓହରାଇ ନେଲା । ସେ କଟକରେ ନ ରହି ଆଳି ରାଜା ବ୍ରଜସୁନ୍ଦର ଦେବଙ୍କ ପାଖରେ ରହୁଥିଲେ । ସେ ଜଣେ ତାନ୍ତ୍ରିକ ସନ୍ନ୍ୟାସୀ ଥିଲେ । ଆଳି ରାଜା ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏ ବିଷୟ ଆଳିର କେତେକ ପ୍ରଜାମାନଙ୍କଠାରୁ ଖବର ମିଳେ ।

ଆଳି ରାଜ୍ୟରେ ଅନେକ ରୋଗୀ ତାଙ୍କ ଆଶୀର୍ବାଦରେ ଆରୋଗ୍ୟ ଲାଭ କରିଥିଲେ । ଆଳିରେ ଲୋକମାନେ ତାଙ୍କୁ ବ୍ୟତିବ୍ୟସ୍ତ କରିବାରୁ ସେ ଶ୍ରୀକ୍ଷେତ୍ରକୁ କିଛିଦିନ ଆସିଥିଲେ । ପଣ୍ଡିତ ନୀଳକଣ୍ଠ ତାଙ୍କ ଆତ୍ମଜୀବନୀରେ ଧରଣୀଙ୍କ ସାଙ୍ଗରେ ସମୁଦ୍ର ବେଳାଭୂମିରେ ସାକ୍ଷାତ ହୋଇଥିଲା—ଏକଥା ଲେଖି ଯାଇଛନ୍ତି । ପଣ୍ଡିତ ନୀଳକଣ୍ଠଙ୍କ ଜୀବନୀରେ ସେ ମଧ୍ୟ ଧରଣୀଙ୍କୁ ଜଣେ ଉଚ୍ଚକୋଟୀର ସାଧୁ-ସନ୍ଥ ହିସାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ସାକ୍ଷାତକାରରେ ଧରଣୀ ତାଙ୍କୁ କହିଥିଲେ—ମୁଁ ଏକା ବିପ୍ଳବ କରିନାହିଁ, ଦିନେ ସମୟ ଆସିବ ଏ ଲଙ୍ଗଳା ଲୋକ ବି ବିପ୍ଳବ କରିବେ । ସେହି ଲଙ୍ଗଳା ଲୋକଙ୍କ ହାତରେ ଶାସନଭାର ଟେକିଦେଇ ବିଦେଶୀ ଶାସକମାନେ ଭାରତ ଛାଡ଼ି ଚାଲିଯିବେ ।

ଆନନ୍ଦର ବିଷୟ ବିପ୍ଳବୀ ଧରଣୀଧର ଦେହାନ୍ତ ହେବାର ଦୁଇ ବର୍ଷ ଭିତରେ ଫିରିଙ୍ଗି ଶାସନର ଅବସାନ ହେଲା ଏବଂ ଆମ ଦେଶ ସ୍ୱାଧୀନତା ଲାଭ କରି ୧୩ଟି ବଡ଼ ରାଷ୍ଟ୍ର ସାଙ୍ଗରେ ପାଦ ମିଳାଇ ଆଜି ଏକ ସ୍ୱତନ୍ତ୍ର ରାଷ୍ଟ୍ର ହିସାବରେ ପରିଚିତ ହେଲା ।



# ଗନ୍ଧମାଦନ

କେନ୍ଦୁଝର ଜିଲ୍ଲାରେ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଗନ୍ଧମାଦନ କେନ୍ଦୁଝର ଜନନୀର ମୁକୁଟ ମଣ୍ଡନ କରି କେନ୍ଦୁଝରର ପ୍ରାକୃତିକ ସୌନ୍ଦର୍ଯ୍ୟ ବୃଦ୍ଧି କରୁଅଛି । ଏହା ସମୁଦ୍ର ପତ୍ତନର ୩୪୭୭ ଫୁଟ ଉଚ୍ଚରେ ଅବସ୍ଥିତ । ଏହାର ଆୟତନ ମଧ୍ୟରେ ୪୦୪୩ କି: ମି: ଜଙ୍ଗଲରେ ପରିପୂର୍ଣ୍ଣ । ଏଠାକାର ଗ୍ରୀଷ୍ମକାଳୀନ ଉତ୍ତାପ ଅନ୍ୟ ସ୍ଥାନ ଅପେକ୍ଷା ଅତ୍ୟଧିକ । ଏହାର ମଧ୍ୟ ଭାଗରେ ବାରବାଙ୍କ, ସୋମଗିରି, ମାଙ୍କଡ଼ ନାସ୍ଥି ଓ ଗୋନାସିକା ଗନ୍ଧମାଦନକୁ ପରିପୁଷ୍ଟ କରେ । ଏହାର ଉତ୍ତାପ ଗ୍ରୀଷ୍ମକାଳରେ ୩୭·୧୭° ସେଣ୍ଟିଗ୍ରେଡ୍ । ଏହାର ଶୀତକାଳୀନ ଉତ୍ତାପ ୧୦·୦୪° ସେଣ୍ଟିଗ୍ରେଡ୍ । ମାଙ୍କଡ଼ ନାସ୍ଥିର ଉଚ୍ଚତା ୩୬୩୯ ଫୁଟ ଏବଂ ଗୋନାସିକାର ଉଚ୍ଚତା ୩୨୧୯ ଫୁଟ ।

ତ୍ରେତୟା ଯୁଗରେ ରାମାୟଣ ବର୍ଣ୍ଣିତ ହନୁମାନ ଏହି ଗନ୍ଧମାଦନ ପର୍ବତକୁ ଟେକି ନେଇଥିଲେ ବୋଲି କହିଲାବେଳେ ଆଜିକାଲି ଲୋକମତରେ ଏହା ସେହି ଗନ୍ଧମାଦନ ନୁହେଁ; କିନ୍ତୁ ଏହି ପର୍ବତ ମଧ୍ୟରେ ବିଶଲ୍ୟକରଣୀ ଓ ଭୃଙ୍ଗରମାଣ୍ଡି ଏ ଯାବତ୍ ବିଦ୍ୟମାନ । ଏତଦ୍‌ବ୍ୟତୀତ ଦରକାରୀ ଔଷଧ ଓ ଉପଯୋଗୀ ପଦାର୍ଥ ଏହି ଗନ୍ଧମାଦନ ମଧ୍ୟରେ ଭରି ରହିଛି ।

ଏହି ଯୁଗରେ କେନ୍ଦୁଝରର ଜଣେ ଭୂତପୂର୍ବ ସିଭିଲ୍‌ସର୍ଜନ ଡାକ୍ତର ମଲ୍ଲିକ ଏହି ପର୍ବତ ମଧ୍ୟରେ ଗସ୍ତ କରିବାବେଳେ ବିଶଲ୍ୟକରଣୀ ଗଛକୁ ଆବିଷ୍କାର କରିଥିଲେ । ଏ ଗଛର ପତ୍ର କୌଣସି କଟା ସ୍ଥାନରେ ଲଗାଇଲେ ଖୁବ୍ ଅଳ୍ପ ସମୟ ମଧ୍ୟରେ ଫଳକତ ହୋଇଉଠେ ଓ ରକ୍ତସ୍ରାବ ବନ୍ଦ ହୋଇଯାଏ । ଭୃଙ୍ଗରମାଣ୍ଡି ସାଧାରଣତଃ କୁଷ୍ଠ ରୋଗର ମହୌଷଧି । ଏହା ପ୍ରାୟ ଆମ ଦେଶରେ ସମସ୍ତଙ୍କୁ ବିଦିତ । ଏହି ଭୃଙ୍ଗରମାଣ୍ଡି ଗଛ ଭଞ୍ଜବଂଶ ରାଜତ୍ୱ କାଳରେ ମହାରାଜା ସ୍ୱର୍ଗୀୟ ଧନୁର୍ଜୟ ଭଞ୍ଜ କେନ୍ଦୁଝର ପୁରୁଣା ହଆସର ଅଗଣା ଭିତରେ ଲଗାଇ

ବହୁ କୁଷ୍ଠ ରୋଗୀମାନଙ୍କୁ କୁଷ୍ଠର ଦାରୁଣ କଷ୍ଟରୁ ଉଦ୍ଧାର କରିଥିଲେ । ଏବେ କିନ୍ତୁ ଭ୍ରମରମାଣ୍ଡି ଉଆସ ମଧ୍ୟରେ ଆଉ ନାହିଁ । ଏହା କେବଳ ଗନ୍ଧମାଦନ ପର୍ବତ ମଧ୍ୟରେ ମିଳିବାର ସମ୍ଭାବନା ଅଛି । ଏହା ବର୍ତ୍ତମାନ ସମୟରେ ଜଣେ ଦୁଇ ଜଣ ଅଲେଖ ସାଧୁଙ୍କ ଦ୍ୱାରା କେନ୍ଦୁଝର ତଥା ଅନ୍ୟ ସ୍ଥାନମାନଙ୍କରେ କୁଷ୍ଠ ରୋଗୀମାନଙ୍କ ମଧ୍ୟରେ ବିତରଣ ହୋଇ ପାରୁଅଛି । ଏହି ପର୍ବତ ମଧ୍ୟରେ ଅନେକ ରକମର ଔଷଧ ଗଛ ଭରି ରହିଛି । ଏହାଛଡ଼ା ଏହି ଗନ୍ଧମାଦନ ପର୍ବତର ପାଦଦେଶ ତଥା ସୋମଗିରି ଭିତରୁ ସାମାକୋଇ ନଦୀର ଧାରେ ଧାରେ ସୁନାଖଣିର ସ୍ତର ମାଇଲ୍ ମାଇଲ୍ ବ୍ୟାପୀ ରହିଅଛି । ଗବେଷକଙ୍କ ମତରେ ସୁନା ଶତକଡ଼ା ୪୦ ଭାଗ ଏହି ସ୍ଥାନମାନଙ୍କରେ ରହିଥିବାର ଜଣା ପଡ଼ିଅଛି । ଗବେଷଣା ଶେଷ ହେଲେ ଏ ଖଣି କାର୍ଯ୍ୟକାରୀ ହୋଇପାରେ । ଲୌହ ଧାତବ ଦ୍ରବ୍ୟ ଛଡ଼ା ଅନ୍ୟ ଧାତୁ ଜିନିଷ ମଧ୍ୟ ଗନ୍ଧମାଦନ ଶରୀର ମଧ୍ୟରେ ବିରାଜିତ । ଏ ଯୁଗରେ ସ୍କ୍ଲିଁହୋମ ମଧ୍ୟ ଏ ପର୍ବତ ମଧ୍ୟରେ ଆବିଷ୍କୃତ ହୋଇଅଛି ।

ବର୍ତ୍ତମାନ ଓଡ଼ିଶା ମାଇନିଂ କରପୋରେସନ୍ ଗନ୍ଧମାଦନରେ ଥିବା ଲୌହ ସମ୍ପଦ ବିଦେଶକୁ ପଠାଇ ଲାଭବାନ୍ ହେଉଛନ୍ତି । ସେହି ତଥାକଥିତ ଋଷିପୁଅମାନେ ଗନ୍ଧମାଦନର ଅଧିବାସୀ ଅଟନ୍ତି । ଏହାର ଉପରିଭାଗ ଓ ନିମ୍ନଭାଗ ପାର୍ବତ୍ୟ ଅଞ୍ଚଳରେ ଆଦିବାସୀମାନେ ପୋଡ଼ୁଚାଷ କରି ସେମାନଙ୍କର ଜୀବିକା ନିର୍ବାହ କରନ୍ତି । କେନ୍ଦୁଝରର ପର୍ବତ ଶ୍ରେଣୀର ପାଦଦେଶରେ ବହୁ ଯୁଗରୁ ସେହି ତଥାକଥିତ ଋଷିପୁଅ ଜୁଆଙ୍ଗ ଓ ଭୂୟାଁମାନେ ଏହାର ଶ୍ରୀ ମଣ୍ଡନ କରୁଛନ୍ତି । ଏ ପୂର୍ବରେ ଜାହ୍ନିକ ରାଜାଙ୍କର ଶାସନ ସମୟରେ ମଧ୍ୟ ଏହି ଆଦିବାସୀମାନେ ତାଙ୍କର ଜୀବିକା ନିର୍ବାହ କରି ସବୁ ରକମର ସୁବିଧା ହାସଲ କରୁଥିଲେ । ସେତେବେଳେ ଏମାନେ ଅନେକ ବର୍ଷ ଧରି ରାଜାଙ୍କୁ କୌଣସି କର ଦେଉ ନ ଥିଲେ । ୧୯୧୪-୧୫ ମସିହାରେ ପ୍ରଥମ ବନ୍ଦୋବସ୍ତ ପରେ ଏମାନଙ୍କ ଉପରେ ଚୁଲି କର ବା ହଳ କର ଧାର୍ଯ୍ୟ କରାଯାଇ ଥିଲା । ପ୍ରତ୍ୟେକ ଗ୍ରାମର ମୁଖିଆ ବା ସର୍ଦ୍ଦାର କର ଦାଖଲ କରି ମଧ୍ୟ କମିଶନ ପାଇ ପାରୁଥିଲେ ।

ଗନ୍ଧମାଦନ ଉତ୍ତର ପଶ୍ଚିମ ଦିଗରେ ଯୋଡ଼ା, ବଡ଼ବିଲ, ଠାକୁରାଣୀ ପର୍ଯ୍ୟନ୍ତ ବିସ୍ତୃତ ଓ ଦକ୍ଷିଣରେ ମାଲ୍କାଗିରି, ପାଲଲହଡ଼ା ପର୍ଯ୍ୟନ୍ତ ବିସ୍ତୃତ । ମଧ୍ୟ ଦେଶରେ ସୋମଗିରି ଓ ବାରବାଙ୍କ ପର୍ବତ ଘାଟିରେ କାଣ୍ଡିପାଣି ଅବସ୍ଥିତ । ଯେଉଁଠାରେ ବର୍ଷା ଦିନେ ବର୍ଷ ଆରମ୍ଭରୁ ସବୁ ସମୟରେ ବର୍ଷା ଅନୁଭୂତ ହୁଏ । ଦକ୍ଷିଣ ପଶ୍ଚିମ ଉପତ୍ୟକାରୁ ସାମାକୋଇ, ତେଲକୋଇ ଅଞ୍ଚଳ ପ୍ଳାବିତ କରି

ଢେଙ୍କାନାଳ ଜିଲାରେ ବ୍ରାହ୍ମଣୀକୁ ଜଳଦାନ କରେ । ଘୋଡ଼ା, ବଡ଼ବଲ ଆଡ଼କୁ ବିସ୍ତୃତ ହୋଇଥିବା ପର୍ବତମାଳାରେ ଖଣ୍ଡାଧାର ଅବସ୍ଥିତ । ଏହାର ଦକ୍ଷିଣ ବିସ୍ତାରିତ ପାର୍ବତ୍ୟ ଉପତ୍ୟକା ଲୌହ ସମ୍ପଦରେ ପରିପୂର୍ଣ୍ଣ । ଗନ୍ଧମାଦନକୁ ଖୋଳିଲେ ଲୌହ ସମ୍ପଦ ଛଡ଼ା ଅଭ୍ର, ବକ୍‌ସାଇଟ୍ ଓ ଆଉ କେତେକ ଖଣିଜ ପଦାର୍ଥ ଦେଶ ବିଦେଶର ଉପକାର ସାଧନ କରି ପାରନ୍ତା ।

ସେ ଯୁଗର ଗନ୍ଧମାଦନ ଆଜିକାଲି ଯୁଗରେ ଆଉ ନାହିଁ । ଆଜିକାଲି ଗନ୍ଧମାଦନର ସେ ସୌନ୍ଦର୍ଯ୍ୟ ବା ସବୁଜିମା ନାହିଁ । ପର୍ବତର ଶରୀରକୁ କାଟି ଠାଏ ଠାଏ ଲୁହାଖଣି କରାଯାଇଛି । ଶ୍ରମଜୀବୀ ତଥା ଆଦିବାସୀମାନେ ଲୁହା ଉତ୍ପାଦନରେ ବ୍ୟସ୍ତ ଥିବାବେଳେ ବାହାର ଜଗତରୁ ଆସୁଥିବା ଟ୍ରକ୍‌ଗୁଡ଼ିକ ଗନ୍ଧମାଦନର ପାଦ ଦେଶରେ ବିଚିତ୍ର ଲୀଳା କରି ଦଣ୍ଡାୟମାନ । ଯେଉଁ ପର୍ବତ ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା ତାହା କଟାଯାଇ ସଫା ହେବାଦ୍ୱାରା ପର୍ବତର ସୌନ୍ଦର୍ଯ୍ୟରେ ବାଧାପ୍ରାପ୍ତ ହୋଇଛି । ଜଙ୍ଗଲର ରଜା ପୂର୍ବ ପରିଚିତ ବ୍ୟାଘ୍ର, (ସିଂହ) ଓ ହାତୀମାନଙ୍କର ଗର୍ଜ୍ଜନ ପରିବର୍ତ୍ତେ ଡ଼ିଜେଲ ଟ୍ରକର ଦାରୁଣ ଶବ୍ଦରେ ପର୍ବତକନ୍ଦର ମୁଖରିତ ହେଉଅଛି । ସ୍ଥାନେ ସ୍ଥାନେ ଡ଼ିନାମାଇଟ୍‌ର ବିସ୍ଫୋରଣରେ ବନ୍ୟଜନ୍ତୁ ଇତସ୍ତତଃ ହୋଇ ପଳାଇ ଯାଉଛନ୍ତି । ଏ ଯୁଗର ମାନବଜାତି ନଭଶ୍ଚୁମ୍ବୀ ପର୍ବତ ଶରୀରକୁ କାଟି ଛିନ୍‌ଭିନ୍ କରି ସମ୍ପଦ ଲୁଟି ନେବାରେ ବ୍ୟସ୍ତ । ପର୍ବତ ମଧ୍ୟରେ ବାସ କରୁଥିବା ଋଷିକୁମାରମାନଙ୍କ ମଧ୍ୟରେ ଅସନ୍ତୋଷ ଜନ୍ମୁଛି । ମୁକୁଟମଣ୍ଡିତା କେନ୍ଦୁଝରର ମୁକୁଟରୁ ମଣିଗୁଡ଼ିକ ବିଦେଶୀ ହାତରେ ସମର୍ପି ଦେଇ କେତେଜଣ ସ୍ୱାର୍ଥାନ୍ଧ ମାନବ ସହର ଅଞ୍ଚଳରେ ଅଳ୍ପା ମନ୍ଦିରରେ ନିଜର ହୁକୁମ ଜାହିର କରୁଛନ୍ତି ।

ଗନ୍ଧମାଦନ ପର୍ବତ ଉପରେ ସ୍ଥାନେ ସ୍ଥାନେ ପୋଖରୀ ଭଳି ପାଣି ଅଛି । ଜଣେ ବିଶିଷ୍ଟ ପଣ୍ଡିତ କହୁଥିଲେ, ସେଠାରେ ସପ୍ତକର୍ଣ୍ଣୀ ମହର୍ଷିଙ୍କ କ୍ରୀଡ଼ା ସରୋବର ମଧ୍ୟ ଅଛି ଏବଂ ସେ ସଦାସର୍ବଦା ତପସ୍ୟାରତ ଅଛନ୍ତି । ଅନ୍ୟାନ୍ୟ ଗୁମ୍ଫାମାନଙ୍କରେ ମଧ୍ୟ ତପସ୍ୱୀମାନେ ଅଛନ୍ତି । ସମୟେ ସମୟେ ଏହି ଗୁମ୍ଫାମାନଙ୍କରୁ ସେମାନଙ୍କର ଗୀତବାଦ୍ୟ ପର୍ବତ କନ୍ଦରରେ ମୁଖରିତ ହେବା ଅନ୍ୟମାନେ ଶୁଣି ପାରିଛନ୍ତି । ଏଠାରେ ବଳରାମ ଦାସ ନାମରେ ଜଣେ ଋଷି ବହୁକାଳ ତପସ୍ୟାରେ କଟାଇ ସିଦ୍ଧିଲାଭ କରିଥିବାର ଖବର ମିଳେ । ସେ ୧୯୬୭ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିଲେ । ସେ କେତେଗୁଡ଼ିଏ ଆଧ୍ୟାତ୍ମିକ ଶାସ୍ତ୍ର ସଙ୍ଗେ ସଙ୍ଗେ ଭୂସ୍ୱାଁକାରର ଇତିହାସ ଲେଖି ଯାଇଛନ୍ତି । ସେ ବାସ କରୁଥିବା ମଠ

ଧ୍ୱସ୍ତ ବିଧ୍ୱସ୍ତ ହୋଇଥିଲେ ମଧ୍ୟ ସେ ମଠବାଡ଼ିର ତତ୍ତ୍ୱାବଧାନରେ ଥିବା ଦଅଁଲା ଗ୍ରାମର କଥି ଦାସ ବସ୍ତି ରହିଛନ୍ତି ଏବଂ ତାହା ମାଇନଂ ଏରିଆରେ ଅନ୍ତର୍ଭୁକ୍ତ ହୋଇଯାଇଛି । ସେହି ମଠବାଡ଼ି ଭିତରେ ଭ୍ରମରମାଖି ଭଳି ଆଉ ଏକ ଗଛ ଅଛି—ଯେଉଁ ଗଛର ଛେଲି ଚା' ପତ୍ର ହିସାବରେ ବ୍ୟବହୃତ ହେଉଅଛି । କେନ୍ଦୁଝରର ଜଣେ ଉଡ଼୍ଡ଼ୀୟମାନ କବି, ସାମ୍ବାଦିକ ଏହି ଚାହାର ସ୍ୱାଦ, ବଜାରରେ ବିକ୍ରୀ ହେଉଥିବା ଚା' ଠାରୁ ଉତ୍କୃଷ୍ଟତର ବୋଲି ସେ 'ବୈତରଣୀ' ପତ୍ରିକାର ୨୨-୬-୭୭ ତାରିଖରେ ମତବ୍ୟକ୍ତ କରିଛନ୍ତି । ସେ ଆହୁରି ମଧ୍ୟ କହିଛନ୍ତି—କ୍ଷୀରବୃକ୍ଷ ଓ ମଧୁବୃକ୍ଷ ଗନ୍ଧମାଦନ ପର୍ବତର ଏହି ମଠବାଡ଼ିରେ ଏ ଯାବତ୍ ବଞ୍ଚି ପାରିଅଛି । ଏହାର ଛେଲି ତଳ ଆଉ କ୍ଷୀରର କାର୍ଯ୍ୟ କରି ପାରୁଅଛି ।

●

# ମୀନା ଘାଟୀ

୧୬୫୦-୬୦ ଖ୍ରୀଷ୍ଟାବ୍ଦରେ କେନ୍ଦୁଝରରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ଭଞ୍ଜଦେବ ଶ୍ରୀ ବଳଦେବଜୀଉ ମନ୍ଦିର ନିର୍ମାଣ କରି ଶ୍ରୀ ବଳଦେବଙ୍କୁ ବଗୋରୁ ଆଣି ପ୍ରତିଷ୍ଠା କରିବା ପରେ ସାହାସୁଜାଙ୍କର ଭଦ୍ରକ ଆଡୁ କେନ୍ଦୁଝରରେ ଆକ୍ରମଣ ସମ୍ବାଦ ପାଇ ସେ ତୁରନ୍ତ ଆନନ୍ଦପୁରରୁ ପାଇକ ସୈନ୍ୟମାନଙ୍କୁ ନେଇ ସାହାସୁଜାଙ୍କର ସମ୍ମୁଖୀନ ହେଲେ । ସାହାସୁଜା ଲକ୍ଷ୍ମୀନାରାୟଣ ଭଞ୍ଜଦେବଙ୍କ ପାଇକ ସୈନ୍ୟଙ୍କ ତୀବ୍ର ଆକ୍ରମଣରେ ପଣ୍ଡୁଆ ଓ ପଞ୍ଚର ଭିତରେ ରହି ପାରିଲେ ନାହିଁ । ଶିକାରୀ ବେଶରେ ସେମାନେ ଠେକୁଆ ଦୌଡ଼ରେ ବନ୍ୟ ବାଟରେ ବିଲ ହିଡ଼ ନ ମାନି ଉତ୍ତରକୁ ଫେରିଗଲେ । ଏହି ସୁଜା ଦିଲ୍ଲୀର ବାଦଶାହା ଔରଙ୍ଗଜେବଙ୍କ ଦ୍ୱାରା ବହୁ ସୈନ୍ୟଙ୍କ ସହ ପଠା ଯାଇଥିଲେ । ଅତି ଆଶ୍ଚର୍ଯ୍ୟର ବିଷୟ ସେତେବେଳେ ଏହି ପାଇକମାନେ ଶ୍ରୀ ଚୈତନ୍ୟ ଚରିତାମୃତ ପାନ କରି ନାମକୀର୍ତ୍ତନ କରିବା ଭଙ୍ଗୀରେ ଢାଲତରବାରି ଧରି ପଠାଣ ବା ବିଦେଶୀଙ୍କ ସାଙ୍ଗରେ ଯୁଦ୍ଧ କରିବାକୁ ଆଗେଇ ଯାଇଥିଲେ । ଆମର କେନ୍ଦୁଝରର ଭକ୍ତରାଜା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଯୁଦ୍ଧରେ ସାହାସୁଜା (ସୁବେଦାର)ଙ୍କୁ ପରାସ୍ତ କରିଥିଲେ ଏବଂ କେନ୍ଦୁଝର ସୀମା ସେପାଖରେ ରଡାରଡି ପାଇକ ସୈନ୍ୟଙ୍କ ଦ୍ୱାରା ଛୁଡ଼ିଦେଇ ଆସିଥିଲେ । ପଠାଣଙ୍କ ହାତରୁ 'ମଞ୍ଚର ଦୁର୍ଗ' ଅଧିକାର କରିଥିଲେ । ତିନି ଶହ ବର୍ଷ ପରେ ମଧ୍ୟ ସେହି ପଞ୍ଚର ମୌଜାରେ ସଂଖ୍ୟାଧିକ ପଠାଣମାନେ ବାସ କରୁଛନ୍ତି । ପଣ୍ଡୁଆ ଗ୍ରାମ ସେତେବେଳେ ମିର୍ଜାପୁର ନାମରେ ପରିଚିତ ଥିଲା ।

୧୬୬୦ ଖ୍ରୀଷ୍ଟାବ୍ଦରେ ଖାନ-ଇ-ଦୌରନ, ସାହାସୁଜାଙ୍କ ପରେ ଜଳେଶ୍ୱରରେ ମୟୂରଭଞ୍ଜ ରାଜା ସ୍ୱର୍ଗତ କୃଷ୍ଣଚନ୍ଦ୍ର ଭଞ୍ଜଙ୍କୁ ଡକାଇ ନେଇ ହତ୍ୟା କଲେ ।

ସ୍ୱର୍ଗତ ଲକ୍ଷ୍ମୀନାରାୟଣ ଭଞ୍ଜ ପାଇକ ସୈନ୍ୟମାନଙ୍କ ସାଙ୍ଗରେ କେନ୍ଦୁଝର ଫେରି ଶ୍ରୀ ବଳଦେବଜୀଉଙ୍କୁ ପ୍ରତିଷ୍ଠା କଲେ । ତାଙ୍କର ଆସିବା ବାଟରେ ପାଇକ ସୈନ୍ୟମାନେ କନ୍ଦ୍ରୋ ଓ ଦରଖୋଳା ମଝି ଜଙ୍ଗଲରେ ତାଙ୍କ ତରବାରୀ ମୂନରେ ଗୋଟାଏ ପଥର ଉପରେ ଖୋଳି ଦେଇ ଯାଇଥିଲେ—

"ଫିରଙ୍ଗି ଯା ନେଉଛି
ଆଉ ନ ଦେଖିବୁ ମୀନା ଘାଟୀ ।"

ଏହି ପଥର ଖଣ୍ଡିକ ରାସ୍ତା କଡ଼ରେ ବଡ଼ ଗଛର କେନାରେ ରଖି ଦେଇ ସେମାନେ କେନ୍ଦୁଝରରେ ସ୍ୱର୍ଗୀୟ ରାଜାଙ୍କୁ ଛାଡ଼ିଦେଇ ଆସିଥିଲେ । ସେଇ ପାଇକ ଜାତିର ବଂଶଧରମାନେ ଏବେ ବି ଆନନ୍ଦପୁର ଅଣ୍ଡା ଅଞ୍ଚଳରେ ଭରି ରହିଛନ୍ତି । ସେମାନେ ଦଶହରା ଦିନ ତାଙ୍କର ଖଣ୍ଡା ପୂଜା କରିବା ସଙ୍ଗେ ସଙ୍ଗେ ତରବାରୀ ଓ ବାଡ଼ିଖେଳ ଦେଖାଇ ବହୁ ଲୋକଙ୍କର ମନ ମୁଗ୍ଧ କରନ୍ତି ।

କେନ୍ଦୁଝରର ଗ୍ଲେଟରାଇଟ ତଥା ଭଞ୍ଜ ପ୍ରକାଶନୀର ଚେୟାରମ୍ୟାନ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ଏହି ପଥରର କିମ୍ବଦନ୍ତୀ ଉପରେ ଆଲୋକପାତ କରିଛନ୍ତି ।

ସ୍ୱର୍ଗତ କୃପାସିନ୍ଧୁ ମିଶ୍ର ତାଙ୍କର ଓଡ଼ିଶା ଇତିହାସ, ସ୍ୱର୍ଗତ ଜଗବନ୍ଧୁ ସିଂ ତଥା ଆମର ଏ ଯୁଗର ଜଗନ୍ନାଥପ୍ରେମୀ 'ମହାପ୍ରଭୁ ଜଗନ୍ନାଥ' ପୁସ୍ତକରେ ସୂଚନା ଦେଇଛନ୍ତି ।



# ମକର ମେଳା

ମକର ମେଳା ସାଧାରଣତଃ ଶୀତ ଋତୁର ଶେଷ ଭାଗରେ ହୁଏ । ଏ ମେଳା ଯେ କେବଳ ଓଡ଼ିଶାରେ ପାଳନ କରାଯାଏ ତାହା ନୁହେଁ ଏହାକୁ ମଧ୍ୟ ଭାରତର ବିଭିନ୍ନ ଅଞ୍ଚଳର ଲୋକମାନେ ପାଳନ କରନ୍ତି । ମକର ମେଳା ଦିନ ସୂର୍ଯ୍ୟଙ୍କର ଗତି ଉତ୍ତରାୟଣ ହୁଏ ଓ ବିବାହ, ବ୍ରତ ଇତ୍ୟାଦି ଶୁଭକାର୍ଯ୍ୟ ଆରମ୍ଭ ହୁଏ । ଏହି ଦିନଠାରୁ ସୂର୍ଯ୍ୟଙ୍କର କିରଣ ପ୍ରଖର ହୁଏ । ଏହି ମେଳାରେ ସଦାଶିବ ପ୍ରସନ୍ନ ଥାଆନ୍ତି । ଏହାଙ୍କର ପୂଜା ସବୁ ଶିବ ମନ୍ଦିରରେ ପାଳନ କରାଯାଏ । ଏହି ମେଳାର ତାତ୍ପର୍ଯ୍ୟ ଖୁବ୍ କମ୍ ଲୋକ ବୁଝନ୍ତି । ଆଦିବାସୀବହୁଳ ସ୍ଥାନମାନଙ୍କରେ ଏହି ପର୍ବରେ ଲୋକମାନେ ଭୁଷ କାମ ସାରି ମନ ଖୁସିରେ ଥାଆନ୍ତି । ଆଜିକାଲି ଦେବ ପୂଜା ତ ଏ ରାଜ୍ୟରେ ଦୂରର କଥା ପେଟ ପୂଜାରେ ହିଁ ସମସ୍ତେ ମଜଗୁଲ ଥାଆନ୍ତି । ହଜାର ହଜାର ଅଣ୍ଡିରା ଛାଗମାନଙ୍କର ଆତିଥ୍ୟ ସତ୍କାର ହୁଏ । ସାଙ୍ଗରେ ଥାଏ ନାଲିପାଣି ଅର୍ଥାତ୍ ମଦ—ଏହି ଦୁଇଟା ଜିନିଷରେ ସେହି ଆଦିବାସୀ ଅଞ୍ଚଳର ଲୋକମାନେ ଛୁଆଠାରୁ ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ବୁଡ଼ି ରହନ୍ତି ।

କିନ୍ତୁ କେତେକ ଭକ୍ତି ପରାୟଣ ବ୍ୟକ୍ତି ତଥା ବ୍ରାହ୍ମଣମାନେ କେବଳ ଶିବ ମନ୍ଦିରରେ ନୁହେଁ, ବିଷ୍ଣୁ ମନ୍ଦିରରେ ମଧ୍ୟ ମକର ଚାଉଳ ପ୍ରସ୍ତୁତ କରି ଦିଅଁଙ୍କ ଲାଗି କରନ୍ତି । ଏ ମକର ଚାଉଳ ପାଇ ଅନେକଙ୍କ ମନରେ ପବିତ୍ରତା ଆଣିଦିଏ । ଏହି ମକର ଚାଉଳର ଏକ ମହାତ୍ମ୍ୟ ଅଛି । ପୁରାଣରେ ଏହି ମକର ଚାଉଳକୁ ଅମୃତ ମଣୋହି ବୋଲି ବର୍ଣ୍ଣନା କରାଯାଇ ଅଛି । ଏହା ସଦାଶିବଙ୍କର ଅତି ଆଦରଣୀୟ ।

ଅଧୁନା କଳିର ପ୍ରଭାବରେ ମୋହାଚ୍ଛନ୍ନ ହୋଇ ପବିତ୍ରତା ବା ଧର୍ମ ଲୋକମାନଙ୍କ ମନରୁ ପୋଛି ହୋଇଗଲାଣି । ଏ ମକର ମେଳାକୁ ଆଜିକାଲିକା ଲୋକମାନେ ଅନ୍ୟ ଅର୍ଥରେ ମଦ ଓ ମାଂସ ଭକ୍ଷଣ ଭିତରେ ନିଜକୁ ହଜାଇ

ଦେଉଛନ୍ତି; କିନ୍ତୁ ମୁଷ୍ଟିମେୟ ଜନପ୍ରାଣକୁ ଏ ମେଳାର ପବିତ୍ରତା ସ୍ପର୍ଶ କରୁଛି । ଏହାର ଅର୍ଥ ନୁହେଁ ମଣିଷମାନଙ୍କ ମଧ୍ୟରେ ଧର୍ମ ଲୁଚିଗଲାଣି । ଏହାର ଏକମାତ୍ର ଅର୍ଥ କାଳର ସ୍ରୋତରେ ସବୁ ଛିନ୍ନଭିନ୍ନ ହୋଇଯାଉଛି ।

କବିଙ୍କ ଭାଷାରେ—ମକରେ ମେଳାରେ ବୁଡ଼ ଦେଉଥିଲେ
ଗଙ୍ଗା ସ୍ନାନ ଫଳ ମିଳେ
ମୁମୂର୍ଷୁ ବେଳରେ ହରିନାମ କଲେ
ହରି ଦିବ୍ୟ ବସ୍ତୁ ମିଳେ ॥

ସବୁ ମକର ମେଳା ପୀଠର ମହାତ୍ମ୍ୟ ବର୍ଣ୍ଣନା କରିବା ମୋ ପକ୍ଷରେ ସମ୍ଭବ ନୁହେଁ । କେନ୍ଦୁଝର ଜିଲାରେ ନିମ୍ନଲିଖିତ ଐତିହାସିକ ପୀଠ ଶିବ ମନ୍ଦିରରେ ଏହି ମେଳା ତଥା ଯାତ୍ରା ରୂପରେ ପାଳିତ ହୁଏ ।

## କେଶରୀ କୁଣ୍ଡ—

କେଶରୀ କୁଣ୍ଡ ବୈତରଣୀ ନଦୀ ଗର୍ଭରେ ଅବସ୍ଥିତ ।

ବୈତରଣୀର ଏପାରିରେ କେନ୍ଦୁଝର ଜିଲାର ଚମ୍ପୁଆ ଅଣ୍ଡୁ ଅଞ୍ଚଳରେ ସରେଇ ଗ୍ରାମ ଅବସ୍ଥିତ । ଏହି ଗ୍ରାମରେ ଅନ୍ୟୂନ ୨୫୦୦ ଲୋକ ବାସ କରନ୍ତି । ଗୋଟିଏ ବ୍ରାହ୍ମଣ ଶାସନ ମଧ୍ୟ ଗ୍ରାମ ମଣ୍ଡନ କରେ । ଏହି ଶାସନ ମଧ୍ୟରେ ବରାହନାରାୟଣଙ୍କ ମୂର୍ତ୍ତି ମନ୍ଦିର ମଧ୍ୟରେ ଜାଜ୍ୱଲ୍ୟମାନ ହୁଏ । ଏହି ସରେଇ ଗ୍ରାମସ୍ଥିତ ବରାହନାରାୟଣ ଏକ ପ୍ରସ୍ତର ଖୋଦିତ ମୂର୍ତ୍ତି । ଅନୁମେୟ ହୁଏ ବହୁ ପୁରୁଣା କାଳରୁ ଏ ମୂର୍ତ୍ତି ଏଠାରେ ସଂରକ୍ଷିତ । ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ବରାହ ତଥା ବସୁଦେବଙ୍କର ସ୍ଥାନ ଦ୍ୱାପର ଯୁଗ ଶ୍ରୀକୃଷ୍ଣ ଜନନୀଙ୍କ ନିକଟରେ ବିଦ୍ୟମାନ । ଶ୍ରୀକୃଷ୍ଣ ଜନନୀ ଯଶୋଦାଙ୍କ ମୂର୍ତ୍ତି ମଧ୍ୟ ସେହି ଶିଳାଲିପିରେ ଦଧି ମନ୍ଥନରତା । ଜନନୀଙ୍କର କଷ୍ଟ ସହ୍ୟ କରି ନ ପାରି ଶ୍ରୀକୃଷ୍ଣ ନିଜେ ମା'ଙ୍କଠାରୁ ଖୁଆଦଣ୍ଡ ଛଡ଼ାଇ ଖୁଆ ଦହିଡ଼ି ଧରି ମନ୍ଥନରତ—ଏକ ବିରଳ ସମାବେଶ ମଧ୍ୟରେ ଦୃଶ୍ୟ । ନିକଟରେ ପ୍ରସ୍ତର ଖୋଦିତ ନବଗ୍ରହ ମୂର୍ତ୍ତି ବିଦ୍ୟମାନ । ଅନ୍ୟ କୋଠରୀ ସଦାଶିବଙ୍କର ଲିଙ୍ଗ ମଣ୍ଡନ କରେ; କିନ୍ତୁ ମନ୍ଦିର ନିର୍ମାଣ ଅତି ଆଧୁନିକ ଧରଣର । ବରାହନାରାୟଣଙ୍କ ନିକଟରେ ଶିବ, ବିଷ୍ଣୁ, ଶ୍ରୀକୃଷ୍ଣ ତଥା ନବଗ୍ରହଙ୍କର ସମାବେଶ ଏକ ଅତ୍ୟାଶ୍ଚର୍ଯ୍ୟ ଦର୍ଶନ ।

ମୋର ଏକମାତ୍ର ଲକ୍ଷ୍ୟ ଜନ୍ମଦାତ୍ରୀ ବହୁଳ କେନ୍ଦୁଝରକୁ ଏ ସ୍ଥାନର ଶିଳାଲିପି ବରାହନାରାୟଣଙ୍କ ବିରାଟ ନିକଟରେ ଦ୍ୱାପରର ଯଶୋମତୀ ଓ

ନବଗ୍ରହଙ୍କ ସ୍ଥିତିସାଫଲ୍ୟ ମଣ୍ଡିତ କରିବ । ବିରଞ୍ଚିନାରାୟଣଙ୍କ ପବିତ୍ର ପୀଠରେ ପ୍ରତିବର୍ଷ ପାଲି ଗାୟକମାନଙ୍କର ଏକ ସମ୍ମେଳନ ହୁଏ । ଏବର୍ଷ ମିଳନୀ ସାହିତ୍ୟ ସଂସଦ, କେନ୍ଦୁଝର ଆନୁକୂଲ୍ୟରେ ଏହି ପବିତ୍ର ପୀଠରେ ସ୍ଥାନୀୟ ବିଧାନସଭା ସଦସ୍ୟଙ୍କ ଆତିଥ୍ୟତାରେ ମିଳନୀ ସଭାପତିଙ୍କ ଦ୍ୱାରା ୧୨ ଜଣ ସୁଗାୟକଙ୍କୁ ମାନପତ୍ର ଦିଆଯାଇଥିଲା । କେନ୍ଦୁଝର ଜିଲ୍ଲାର କେତେକ ପାଲିଗାୟକଙ୍କ ବ୍ୟତୀତ ସରେଇ ଗ୍ରାମ ତଥା ଆଖପାଖ ଗ୍ରାମର ଅନେକ ଶିକ୍ଷିତ ଅଶିକ୍ଷିତ ଗୁଣଗ୍ରାହୀ ବା ରସଗ୍ରାହୀ ଲୋକମାନେ ଉପସ୍ଥିତ ଥିଲେ । ସ୍ୱର୍ଗୀୟ ଗଣକବି ବୈଷ୍ଣବ ପାଣିଙ୍କ ଜୟନ୍ତୀ ମହାସମାରୋହରେ ପାଳନ କରାଯାଇଥିଲା । ପାଣି ସାହିତ୍ୟ ଉପରେ ମଧ୍ୟ ମିଳନୀ ସାହିତ୍ୟ ସଂସଦର ସଦସ୍ୟମାନେ ଆଲୋକପାତ କରିଥିଲେ । ସ୍ଥାନୀୟ ଶ୍ରୀ ଆନନ୍ଦ ପତି, କୃଷ୍ଣଚନ୍ଦ୍ର ନନ୍ଦଙ୍କର ସାହିତ୍ୟ ପ୍ରୀତି ମନୋଭାବ ସମସ୍ତଙ୍କୁ ଆକୃଷ୍ଟ କରିଥିଲା । ଢେଙ୍କିଶାଳେ ଢେଙ୍କାନାଳ କଥା ଚର୍ଚ୍ଚା ହେବାଭଳି କେଶରୀ କୁଣ୍ଡର ମେଳା ବିଷୟ ବର୍ଣ୍ଣନା କରୁ କରୁ ବିରଞ୍ଚିନାରାୟଣଙ୍କ ପ୍ରେମରେ ପଡ଼ି ଯାଇଥିଲି । ତେଣୁ କ୍ଷମା ଦେବେ ।

ଏହାର ଅନତି ଦୂରରେ ପୁଣ୍ୟତୋୟା ବୈତରଣୀ ପ୍ରବାହିତ । ନଦୀ ଗର୍ଭରେ ଗୋଟିଏ ସ୍ଥାନରେ ଗୋଟିଏ ପଥରର କୁଣ୍ଡ ଏପରି ଭାବରେ ବିଦ୍ୟମାନ ଯେ ଜଣେ କେହି ସେହି ସ୍ଥାନରେ ବୁଡ଼ିଲେ ୨୦।୨୫ ହାତ ଦୂରରେ ନଦୀ ଗର୍ଭରେ ବାହାରିବ । କିମ୍ବଦନ୍ତୀ ଅଛି : ନିଷ୍ପାପୀ କେବଳ ଏହି କୁଣ୍ଡରେ ବୁଡ଼ିଦେଇ ନଦୀ ଗର୍ଭରେ ବିନା କ୍ଷୟକ୍ଷତିରେ ବାହାରି ପାରିବ । କେଶରୀ କୁଣ୍ଡ ନିକଟରେ ନଦୀ ଗର୍ଭରେ ପ୍ରତିବର୍ଷ ମକର ମେଳା ହୁଏ । ବହୁ ଜନସମାଗମରେ ଏ ସ୍ଥାନ ମୁଖରିତ ହୁଏ । ଏହି କୁଣ୍ଡରେ ସ୍ନାନସାରି ପରପାରିରେ ଥିବା ସଦାଶିବଙ୍କ ଦର୍ଶନ ପରେ ଲୋକମାନେ ନିଜ ନିଜ ଗନ୍ତବ୍ୟ ପଥରେ ଚାଲି ଯାଆନ୍ତି । ମକର ଯାତ୍ରାଦିନ ସକାଳଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ଏ ସ୍ଥାନରେ ହଜାର ହଜାର ଲୋକଙ୍କର ସମାଗମ ହୁଏ । ଏହାର ନିକଟତମ ସରେଇ ଗ୍ରାମର ଜଣେ ଗ୍ରାମବାସୀଙ୍କ ବାଡ଼ିରୁ ଗୋଟିଏ ତାମ୍ରଲିପି ଆମର କେନ୍ଦୁଝର ଜିଲ୍ଲାର କଲଚରାଲ ଅଫିସର ଶ୍ରୀଯୁକ୍ତ ମହାକୁଡ଼ ଉଦ୍ଭାବନ କରିବାକୁ ସକ୍ଷମ ହୋଇଛନ୍ତି ।

ଏହି ସ୍ଥାନ ଭଳି ନ ହେଲେ ବି ଚମ୍ପୁଆ ସବ୍‌ଡିଭିଜନର ରାମତୀର୍ଥ, ଚନ୍ଦ୍ରଶେଖର, ଆନନ୍ଦପୁର ବୈତରଣୀ କୂଳରେ ଥିବା ଝାଡ଼େଶ୍ୱର, ଉତ୍ତରେଶ୍ୱର, ହାବଳେଶ୍ୱର, କୁଶେଇ କୂଳରେ ଥିବା କୁଶଳେଶ୍ୱର, ସଦର ସବ୍‌ଡିଭିଜନରେ ଗୋନାସିକା, ଧାନବେଣୀ, ବାର୍‌ହାଟିପିରି ମହାଦେବ ମନ୍ଦିର ପ୍ରାଙ୍ଗଣରେ ମକର

ମେଳା ୩ ଦିନରୁ ୭ ଦିନ ଧରି ପାଳନ କରାଯାଏ । ଦୂର ଜାଗାମାନଙ୍କରୁ ଲୋକମାନେ ଆସି ମହାଦେବଙ୍କ ଦର୍ଶନ ଲାଭକରି ଫେରି ଯାଆନ୍ତି । ଆଦିବାସୀମାନେ ଏହାକୁ ଅନ୍ତରର ସହିତ ପାଳନ କରନ୍ତି । ଏହା କେନ୍ଦୁଝର ଜିଲ୍ଲାରେ ଏକ ବଡ଼ ପର୍ବ । ଏ ପର୍ବରେ ଆଦିବାସୀମାନଙ୍କର ପ୍ରତ୍ୟେକ ଝିଅପିଲା ନୂତନ ବସ୍ତ୍ର ପରିଧାନ କରି ପିଠାପଣାରେ ମଜଗୁଲ ହୋଇ କୁକୁଡ଼ା ଓ ଛେଳି ବଳି ନିପାତ କରନ୍ତି । ହାଣ୍ଡିଆ ବା ଅରଖି ଆଦିବାସୀମାନଙ୍କ ଘରେ ସୋଜର ଆସର ଜମାଇ ଆବାଳ-ବୃଦ୍ଧ-ବନିତା ଆନନ୍ଦର ସହିତ ଭୋଗ କରନ୍ତି ଓ ଭୋଳାନାଥ ସଦାଶିବଙ୍କ ସଦୃଶ ମଜଗୁଲ ହୋଇ ନିଶା ଭୋଳରେ ଠାଏ ଠାଏ ଚଙ୍ଗୁ ନାଚ, କୋହ୍ଲ ନାଚ, ଦକ୍ଷିଣୀ ନାଚ, ଅପେରା ଓ କଣ୍ଢେଇ ନାଚରେ ବୁଡ଼ି ରହନ୍ତି । ଏହି ମକର ପର୍ବଟି ଏମାନଙ୍କ ନିକଟରେ ଦିନ ଓ ସ୍ୱତ ସମାନ ହୋଇଉଠେ ।



# ବୈତରଣୀ

ଗୋନାସିକା ପର୍ବତକୁ ଆଗରୁ ବର୍ଣ୍ଣନା କରାଯାଇଛି (ସେ ଯୁଗରେ ସମଗ୍ରଭ କ୍ଷେତ୍ର) କେନ୍ଦୁଝରର ଦର୍ପଣୀ ସ୍ୱରୂପ । କେନ୍ଦୁଝର ଜଲ୍ଲାରେ ଏପରି ସ୍ଥାନରେ ପ୍ରତିଫଳିତ ଯେ ଏହାର ଆକୃତି ଗୋଟିଏ ଶଙ୍ଖ ସଦୃଶ । ଏହାର ମସ୍ତକରେ ଗନ୍ଧମାଦନ ଓ ଗୋନାସିକା କେନ୍ଦୁଝରର ଶ୍ରୀମୁଖମଣ୍ଡଳ ମଣ୍ଡନ କରୁଛି । ଏହି ଗୋନାସିକା ଉଚ୍ଚ ପର୍ବତର ମଧ୍ୟ ଭାଗରୁ ଦୁଇଟି ଧାରରେ (ଗୋଟିଏ ବାଲି ଝରଣା ଓ ଅନ୍ୟଟି ଜଳ ଝରଣା) ଏକ ଗାଈ ମୁଣ୍ଡର ନାକ ପୁଡ଼ାରୁ ବାହାରିବାରୁ କେନ୍ଦୁଝରର ଦର୍ପଣୀ ରୂପେ ବର୍ଣ୍ଣନା କରାଯାଇଛି । ଏହି ଗୋନାସିକା ବହୁ ଯୁଗ ପୂର୍ବରୁ ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ତଥାକଥିତ ଋଷିପୁତ୍ର ଜୁଆଙ୍ଗମାନେ ଏହି ରାଜ୍ୟର ଆଦିମ ଅଧିବାସୀ ଥିଲେ । ଏହାର ଆକାର ଗନ୍ଧମାଦନଠାରୁ ଶ୍ରେଷ୍ଠ । ଏହାର ଉଚ୍ଚତା ୩୬୧୯ ଫୁଟ; କିନ୍ତୁ ଏହାର ମସ୍ତକ ଦେଶରୁ ବୈତରଣୀ ବାହାରି ଗୁପ୍ତ ହୋଇ ପୁଣି ବ୍ରହ୍ମେଶ୍ୱର ମହାଦେବ ଗୋନାସିକା ଗ୍ରାମର ଶେଷ ଭାଗରେ ବାହାରିଥିବାରୁ ଗୋନାସିକା ପର୍ବତର ପ୍ରାଧାନ୍ୟ ଯୁଗେ ଯୁଗେ ବହୁ ମୁଖରେ ପ୍ରଚାରିତ ।

ବୈତରଣୀର ପ୍ରକୃତ ଜନ୍ମ ଜାଣିବା କଷ୍ଟସାଧ୍ୟ । ତେବେ ଏହା ପୁଣ୍ୟତୋୟା ଗଙ୍ଗାଠାରୁ ବାର ବର୍ଷ ବଡ଼ । ଗଙ୍ଗାକୁ ଭଗୀରଥ ବିଷ୍ଣୁଙ୍କର ନଖ କୋଣରୁ ବହୁ ତପସ୍ୟା ଓ କଷ୍ଟ ସାଧନ କରି ପୃଥିବୀ ପୃଷ୍ଠକୁ ଆଣି ପାରିଥିଲେ; କିନ୍ତୁ ତା' ପୂର୍ବରୁ ନିଜେ ବ୍ରହ୍ମା ବିଷ୍ଣୁଙ୍କୁ ସନ୍ତୁଷ୍ଟ କରି ଯଜ୍ଞ ଉଦ୍ଦେଶ୍ୟରେ ବିଷ୍ଣୁଙ୍କ ପାଦପଦ୍ମରୁ ବୈତରଣୀକୁ ଆଣିଥିଲେ ।

କିମ୍ବଦନ୍ତୀ ବହୁଳ ଗୋଟିଏ ଗାଈ ନାକପୁଡ଼ାରୁ ବୈତରଣୀ ନିଃସୃତ ହୋଇଛନ୍ତି । ୫/୬ କି.ମି. ବହି ଆସିବା ପରେ ବୈତରଣୀ ଗୁପ୍ତ । ଫଳରେ ବୈତରଣୀର ଅନ୍ୟ ନାମ ଗୁପ୍ତଗଙ୍ଗା । ଏହା ହେଉଛି ଆଗରୁ ଜନ୍ମ ବୋଲି ପ୍ରମାଣ କରିବାକୁ ହେଲେ ଆମକୁ ଫେରି ଯିବାକୁ ପଡ଼ିବ ଯଯାତିଙ୍କ ରାଜତ୍ୱ

କାଳରୁ । ତା' ପୂର୍ବରୁ ବିରଜାଙ୍କ ପୀଠ ସ୍ଥାପନା ଓ ଦାନବୀର ବଳିଙ୍କର ପାତାଳ ଯିବା କଥା । ଏହା ବ୍ୟତୀତ ଦ୍ୱାପର ଯୁଗରେ ପାଣ୍ଡବମାନଙ୍କ ବନବାସ ଓ ଅଜ୍ଞାତ ବନବାସର ପୁଣ୍ୟତୋୟା ଏହି ବୈତରଣୀ ପ୍ରମାଣ ଦେଇଛି । ବୈତରଣୀ ଗୁପ୍ତ ହେବା କଥା ବ୍ରହ୍ମାଙ୍କ ସ୍ତ୍ରୀ ସାବିତ୍ରୀ ଜାଣିପାରି ବ୍ରହ୍ମାଙ୍କୁ କହିଲେ—"ଏହା ଗୁପ୍ତ ହେବାର ଏକମାତ୍ର କିମ୍ବଦନ୍ତୀ ବିଦିତ । ତାହାହେଲା ସେ କାଳର ଆଦିମ ଅଧିବାସୀ (ଅନାର୍ଯ୍ୟ) ଜୁଆଙ୍ଗ (ଯାଯାବର) ମାନେ ଗାଈ କାଟି ନେଇ ମୁଣ୍ଡ ଫିଙ୍ଗି ଦେଇଗଲେ । ଗାଈର ମୁଣ୍ଡ ଲାଗି ବୈତରଣୀ ଅପବିତ୍ର ହେଲେ । ବ୍ରହ୍ମାଙ୍କର ଯଜ୍ଞ ଅପବିତ୍ର ଜଳରେ ସମ୍ଭବପର ହେବନାହିଁ । ସେଥିପାଇଁ ବୈତରଣୀ ଗୁପ୍ତ ହେଲେ ।" ବ୍ରହ୍ମା ସାବିତ୍ରୀଙ୍କଠାରୁ ଶୁଣି ବିଷ୍ଣୁଙ୍କୁ ପ୍ରାର୍ଥନା କରି ଜଣାଇଲେ । ବିଷ୍ଣୁ ବ୍ରହ୍ମାଙ୍କୁ କହିଲେ—କୈଳାସ ପତିଙ୍କର ପଦ ଲାଗିଲେ ବୈତରଣୀ ଜଳ ପବିତ୍ର ହେବ । ତେଣୁ ଆପଣ କୈଳାସ ପତି ଶଙ୍କରଙ୍କ ନିକଟକୁ ଯାଆନ୍ତୁ । ବ୍ରହ୍ମା ବିଷ୍ଣୁଙ୍କ ନିର୍ଦ୍ଦେଶରେ କୈଳାସ ପର୍ବତକୁ ଯାଇ ଶଙ୍କରଙ୍କୁ ସ୍ତୁତି କଲେ । ଶଙ୍କର ବ୍ରହ୍ମାଙ୍କର ସ୍ତବଗାନରେ ସନ୍ତୁଷ୍ଟ ହୋଇ ଗୋନାସିକାରେ ତାଙ୍କର ଗୋଟିଏ ରୂପ ସ୍ଥାପନା କରିବାକୁ ସ୍ୱୀକୃତି ଦେଲେ । ଶକ୍ତିମୟୀ ଆଦି ଜନନୀଙ୍କୁ ଶଙ୍କର ସାଙ୍ଗରେ ନେଇ ଗୋନାସିକାରେ ଉପସ୍ଥିତ ହୋଇ ବୈତରଣୀଙ୍କୁ ସ୍ପର୍ଶ କରିବାରେ ବୈତରଣୀ ଆନନ୍ଦ ବିଭୋର ହୋଇ ଶଙ୍କର ଶଙ୍କରୀଙ୍କ ପାଦ ଧୌତ କରି ନିମ୍ନଗାମୀ ହେଲେ । ଯେଉଁଠାରେ ବୈତରଣୀ ଶଙ୍କରଙ୍କ ପାଦ ସ୍ପର୍ଶ କଲେ ସେହି ସ୍ଥାନ ଅଦ୍ୟାବଧି ବ୍ରହ୍ମେଶ୍ୱର ପୀଠ ରୂପେ ବିଦିତ ଓ ବୈତରଣୀର କୁଣ୍ଡ ବ୍ରହ୍ମେଶ୍ୱର କୁଣ୍ଡ ରୂପେ କୋଟି ମୁଖରେ ପରିଚିତ ।

ବ୍ରହ୍ମେଶ୍ୱର ଓ ଆଦ୍ୟାଶକ୍ତିଙ୍କର ଆବିର୍ଭାବ ପରେ ବ୍ରହ୍ମା ସାବିତ୍ରୀଙ୍କୁ ନେଇ ଯଜ୍ଞ କଲେ । ବିଷ୍ଣୁ ଅନ୍ୟ ଦେବାଦେବୀଙ୍କୁ ନେଇ ଯଜ୍ଞ ସ୍ଥାନରେ ଉପସ୍ଥିତ ହେଲେ । ସେହି ପ୍ରାଚୀନ ଯୁଗରୁ ବୈତରଣୀ ଜନ୍ମଲାଭ କରି ବ୍ରହ୍ମେଶ୍ୱରଙ୍କ ପଦ ଧୌତ କରି ପୁଣ୍ୟତୋୟା ଓ ଗୁପ୍ତଗଙ୍ଗା ରୂପେ ପରିଚିତା । ଶ୍ରୀ ବ୍ରହ୍ମେଶ୍ୱରଙ୍କର ଇଙ୍ଗିତରେ ବ୍ରହ୍ମା ବୈତରଣୀ କୂଳେ କୂଳେ ପ୍ରତି କୋଶ ବ୍ୟବଧାନରେ ଗୋଟିଏ ଲେଖାଏଁ ଶିବଲିଙ୍ଗ ସ୍ଥାପନା କଲେ । ଦକ୍ଷ ଯଜ୍ଞରେ ଶଂକର ଦକ୍ଷ ପ୍ରଜାପତିଂକ ସ୍ତ୍ରୀ ଦ୍ୱାରା ଅଭିଶପ୍ତ ହୋଇ ସବୁ ସ୍ଥାନରେ ଲିଙ୍ଗରେ ପରିଣତ ହୋଇ ଏ ଯାବତ୍ ପୂଜା ପାଇ ଆସୁଛନ୍ତି । ପରିଶେଷରେ ବୈତରଣୀ ଯେଉଁ ଜାଗାରେ ବଙ୍ଗୋପସାଗରରେ ମିଶିଯାଇଛି, ଯେଉଁଠାରେ ଶ୍ରୀ ଶଂକର ଆଖଣ୍ଡଳମଣି ଭାବେ ପୂଜା ପାଉଛନ୍ତି ।

ଏହି ବୈତରଣୀ ଶଙ୍ଖାକୃତ କେନ୍ଦୁଝର ମଣ୍ଡଳ କଲେ ମଧ୍ୟ କେନ୍ଦୁଝର ଉପକଣ୍ଠ ଦେଇ ଯାଇନାହିଁ । ଏଥିପାଇଁ କେନ୍ଦୁଝରର ରାଜା ସ୍ୱର୍ଗୀୟ ଗଦାଧର ଓ ସ୍ୱର୍ଗୀୟ ଧନୁର୍ଜ୍ଜୟ ଭଞ୍ଜ ବହୁ ଚେଷ୍ଟା କରି ମଧ୍ୟ ବୈତରଣୀକୁ କେନ୍ଦୁଝର ଉପକଣ୍ଠ ଦେଇ ନେଇପାରି ନାହାନ୍ତି । ଅଜକାଲି ଯୁଗର ବାଂଶପାଳ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟାଳୟ ନିକଟରେ ପଖାଳଭୁଞ୍ଜା ଗ୍ରାମରେ ବୈତରଣୀର ଖୋଳା କାର୍ଯ୍ୟ ବନ୍ଦ କରାଇ ମାଛ କାନଣା ଜୋର କେନ୍ଦୁଝର ଉପକଣ୍ଠ ଦେଇ ନେବାକୁ ଚେଷ୍ଟା କରିଥିଲେ । ଯାହା ଫଳରେ ୧୮୯୧ ମସିହାରେ କେନ୍ଦୁଝରରେ ଗଣ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଏହି ପଖାଳଭୁଞ୍ଜାରେ ସେ ବେଳର ଆଦିବାସୀମାନେ ନ ଖାଇ ନ ପିଇ ନିର୍ଯ୍ୟାତନାରେ ପ୍ରପୀଡ଼ିତ ହୋଇ ବେଠି ଖଟୁଥିଲେ । ରାଜା ନିଜେ ସେଇଠାରେ ପଖାଳ ଖାଇ ଜୀବନ କଟାଇ ଥିବାରୁ ଏ ଗ୍ରାମର ନାମ ପଖାଳଭୁଞ୍ଜାରେ ନାମିତ ହୋଇଅଛି । ଏହି ବୈତରଣୀ କେନ୍ଦୁଝରର ଶେଷ ସୀମା ହାବଲେଶ୍ୱର, ତା'ପରେ ଯାଜପୁର ଅଣୁବାଣ୍ଡରେ ପଶି ଆଖୁଆପଦା (ଭୁଡ଼ିଆ) ନିକଟରେ ଆଉ ଗୋଟିଏ ଉପନଦୀ ସୃଷ୍ଟି କରି ବିରଜା କ୍ଷେତ୍ର ଯାଜପୁର କଟକ ଜିଲ୍ଲା ପରେ ବାଲେଶ୍ୱର ଜିଲ୍ଲାର ବହୁ ଗ୍ରାମ ଅତିକ୍ରମ କରି ପ୍ରଳୟଙ୍କରୀ ଶ୍ରୀଶଂକର ଆଖଣ୍ଡଳମଣୀଂକର ପଦଧୌତ କରି ବଙ୍ଗୋପସାଗରରେ ନିଜକୁ ହଜାଇ ଦେଉଅଛି ।

ଏହି ବୈତରଣୀ ନିମ୍ନଗାମୀ ହେଲାବେଳେ ବହୁ ପର୍ବତ କୋଟର ପଡ଼ି ଜଙ୍ଗଲ ଭୂମି ନଷ୍ଟ କରି ମୟୂରଭଞ୍ଜ ଜିଲ୍ଲାର କେତେକ ଗ୍ରାମ ମଧ୍ୟ ଦେଇ ଗତି କରି ପାରିଛି । ବୈତରଣୀ କୂଳରେ କାତକେଶ୍ୱରଙ୍କ ମନ୍ଦିର ଅନ୍ୟତମ । କାତକେଶ୍ୱରଙ୍କ ନିକଟରେ ବୈତରଣୀର ପରପାର୍ଶ୍ୱରେ ଜ୍ୟୋତିପୁରରେ କେନ୍ଦୁଝରର (ଯମଗରଭ କ୍ଷେତ୍ର) ଆଦିରାଜା ଜ୍ୟୋତି ସିଂ ପ୍ରଥମେ ରାଜସିଂହାସନ ହୋଇଥିଲେ । ଆଦି ସିଂ ତଥାକଥିତ ଆଦି ଭଞ୍ଜଙ୍କୁ ମୟୂରଭଞ୍ଜର ରାଜା ରୂପେ ଭୂୟାଁମାନେ ମାନି ନେଇଥିଲେ । ବୈତରଣୀର ଦୁଇ କୂଳରେ ଜ୍ୟୋତିପୁର ଗ୍ରାମର ଶେଷ ସୀମାରେ ଦୁଇଟି ବୃହତ୍ ଶିଳା ଏହାର ପ୍ରମାଣ ସ୍ୱରୂପ ଏବେ ସୁଦ୍ଧା ଦଣ୍ଡାୟମାନ । ଏହାପରେ କେନ୍ଦୁଝର ଜିଲ୍ଲାର ସୁଆମ ପାଟଣାଠାରୁ ୭ ମାଇଲ ଦୂରରେ ବୈତରଣୀ ଗର୍ଭରେ ଭୀମକୁଣ୍ଡ ନାମରେ ଗୋଟିଏ ବୃହତ୍ କୁଣ୍ଡ ବିଦ୍ୟମାନ । ଏଠାରେ ବୈତରଣୀ ନଦୀ ମଧ୍ୟ ଗୁପ୍ତ । କୁଣ୍ଡ ଭିତରେ ଜଳ ପ୍ରବାହିତ ହେବା ପୂର୍ବରୁ ଏକ ପଥରର ବନ୍ଧ ଅତିକ୍ରମ କରି ବୈତରଣୀ ପ୍ରବାହିତ ହୋଇଅଛି । ଏହାର ଅପର ପାର୍ଶ୍ୱରେ ମୟୂରଭଞ୍ଜ ଜିଲ୍ଲାର କେତେକ ଶ୍ରେଷ୍ଠ ବଡ଼ ଗ୍ରାମ ଅବସ୍ଥିତ । ଏଠାରେ ବୈତରଣୀ କୂଳରେ ଘଞ୍ଚଜଙ୍ଗଲ ଏ ଯାବତ୍

ଦୃଷ୍ଟିଗୋଚର ହୁଏ । କମ୍ବଦନ୍ତୀ ଅଛି : ଏଠାରେ ଭୀମ କୀଚକକୁ ଗୋଡ଼ରେ ମାରି ଦୁଇଫାଳ କରି ଫାଡ଼ି ଦେଇଥିବାରୁ ବୈତରଣୀ ଭୀମଂକ ପଦାଘାତରେ ଏଠାରେ ପାତାଳଫୁଟ ହୋଇ ଅନ୍ତର୍ଦ୍ଧାନ ହୋଇ ଯାଇଅଛି । ବ୍ରହ୍ମାଂକ ତପସ୍ୟାବଳରେ ମହାଦେବ ସନ୍ତୁଷ୍ଟ ହୋଇ ବୈତରଣୀକୁ କିଛିଦୂର ଶଳ୍ପରେ ପ୍ରାକୃତିକ ସ୍ରୋତରେ ବହିବାରେ ସାହାଯ୍ୟ କରିଛନ୍ତି । ଏଠି ମଧ୍ୟ ବ୍ରହ୍ମେଶ୍ୱରଂକ ଆଉ ଗୋଟିଏ ମୂର୍ତ୍ତି ଚତୁର୍ମୁଖ ବ୍ରହ୍ମା ସ୍ଥାପନା କରିଛନ୍ତି । ଏହାପରେ ବୈତରଣୀ ସମତଳ ଭୂମିରେ ପ୍ରବାହିତ ହୋଇଅଛି । ବୈତରଣୀ କୂଳର ଅନତି ଦୂରରେ ଭଗ୍ନାବଶେଷ ବିରାଟଗଡ଼, ଏହାର ପ୍ରମାଣ ସ୍ୱରୂପ ବିଦ୍ୟମାନ । ଏହି-ଠାରେ ହିଁ ପାଣ୍ଡବମାନେ ତାଂକର ଅଜ୍ଞାତ ବନବାସ କଟାଇଥିଲେ ବୋଲି ବହୁ ପ୍ରବୀଣ ଲୋକଂକର ମତ ।

ଏହି ପୁଣ୍ୟତୋୟା ବୈତରଣୀ କୂଳରେ ଯାଜପୁର (ଯଯାତିଗ୍ରାମ) ଅବସ୍ଥିତ । ଏଠାରେ ସପ୍ତମାତୃକାଙ୍କର ମନ୍ଦିର ବିଦ୍ୟମାନ । ଦଶାଶ୍ୱମେଧ ଘାଟରେ ଏହି ସପ୍ତମାତୃକା ବୈତରଣୀ କୂଳ ମଣ୍ଡନ କରୁଛନ୍ତି । ଏହା ବିରଜା କ୍ଷେତ୍ର ରୂପେ ବିଦିତ । ଅବଶ୍ୟ ବୈତରଣୀ କୂଳରେ ବିରଜା ପୀଠ ନ ହୋଇଲେ ବି ୨।୩ ମାଇଲ ଦୂରରେ ଅବସ୍ଥିତ । ବିରଜା କ୍ଷେତ୍ରରେ ସତୀଙ୍କର ନାଭିକମଳ ବିଷ୍ଣୁଙ୍କ ସୁଦର୍ଶନ ଚକ୍ର ଦ୍ୱାରା କଟାଯାଇ ଏହି ସ୍ଥାନରେ ପଡ଼ିଥିଲା । ସେଇ ନାଭିକମଳରୁ 'ମା' ବିରଜାଙ୍କର ଆବିର୍ଭାବ ହୋଇଅଛି । ପୌରାଣିକ ମତରେ ଗୟାସୁରର ନାଭିକମଳ ଏ ସ୍ଥାନରେ ପଡ଼ି ଏ ପୀଠ ନାଭିଗୟା ଭାବେ ପରିଚିତ । ଏ କ୍ଷେତ୍ରରେ ଲୋକମାନେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେଇ ପାପ ପଥରୁ ଉଦ୍ଧାର କରନ୍ତି । ଏହା ନାଭିଗୟା—ପଦ୍ମ କ୍ଷେତ୍ର ଭାବେ ପରିଚିତ । ବୈତରଣୀ କୂଳରେ ବରାହରୂପୀ ନାରାୟଣଙ୍କୁ ରାଜା ଯଯାତିକେଶରୀ ପ୍ରତିଷ୍ଠା କରିଥିଲେ । ଏ କ୍ଷେତ୍ରରେ ୩୩ କୋଟି ଦେବତା ସ୍ଥଳେ ଗୋଟିଏ ଊଣା ହେବାରୁ ଏହା ଶଙ୍ଖକ୍ଷେତ୍ର ନ ହୋଇ ପଦ୍ମକ୍ଷେତ୍ରରେ ପରିଣତ ହୋଇଅଛି । ହିନ୍ଦୁଧର୍ମ ପ୍ରଥାନୁଯାୟୀ ଏହି କ୍ଷେତ୍ର ଦର୍ଶନ ନ କଲେ ତୀର୍ଥଯାତ୍ରା ମୂଲ୍ୟହୀନ ହୁଏ । ପୁଣ୍ୟତୋୟା ବୈତରଣୀ କୂଳରେ ପ୍ରତିକୋଣ ଅନ୍ତରରେ ଶିବ-ପାର୍ବତୀଙ୍କର ପଦଧୌତ କରି ଧାମରା ନିକଟରେ ସଂସାରର ସମସ୍ତ ମାୟା ବନ୍ଧନ ଛିନ୍ନ କରି ବ୍ରାହ୍ମଣୀ ସାଙ୍ଗରେ ମିଶି ଅତି ଆଦରରେ ଶ୍ରୀ ଆଖଣ୍ଡଳବାସୀଙ୍କର ପଦଧୌତ କରି ଭକ୍ତିରେ ଅନୁପ୍ରାଣିତ ହୋଇ ସାଗର ଗର୍ଭରେ ନିଜକୁ ହଜାଇ ଦେଇ ନିଜର ଗୌରବ ବୃଦ୍ଧି କରୁଛି ।

( 'ବୈତରଣୀ' ପତ୍ରିକାରେ ଏହି କବିତାଟି ପ୍ରକାଶିତ ହୋଇଥିଲା )

# ବୈତରଣୀ

କେତେ କାଳ ତଟିନୀ                    କଳ୍ପ ପଯ୍ୟର ଗୁଣି
ଗୁପତ ଥିଲୁ ଗିରି କୋଳେ,
କମଳ ଯୋନି ବେଦ—                    କର୍ଣ୍ଣେ ଧ୍ୱନ୍ତେ ଶବ୍ଦ
ତନ୍ଦ୍ରା ତେଜିଲୁ ମଠ ଖେଳେ,
ଦେଖିଲୁ ଖୋଲି ବେନି ଡୋଳେ,
କେତେ ଆଦରେ ତୋତେ                    ବ୍ରହ୍ମା ଡାକଲେ ଆଗ୍ରେ
ଯଜ୍ଞ-ଯାଗବେ ତୋର ଜଳେ ।୧।
କର୍ଣ୍ଣ ଗହ୍ୱରେ ତୋର                    ବାଦ୍ୟ ହେଲା ଗୋଚର
ତେଜିଲୁ ଗିରି ଶୃଙ୍ଗ ବଳେ,
କରମ ଦୁର୍ବିପାକେ                    କୁଆଙ୍ଗ ଦେଖି ଥୋକେ
ଧାଡି 'ଗୋ ମୁଣ୍ଡ' ଥାପିଦେଲେ,
ଗୁପତ ହେଲୁ ବାଦ୍ୟ ଖେଳେ,
ଶିତିକଣ୍ଠ କରୁଣା                    ନୋହିଲା ତୋତେ ଊଣା
ବହିଲୁ ଦୁଇଧାରେ ହେଳେ ।୨।
କାଳେ ତୋହର କଳେ                    ଯଜ୍ଞ ଶିବ ବଙ୍ଗଳେ
କନ୍ଦର୍ପ ପିତା ଚନ୍ଦ୍ର ବଳେ,
କୋଣକରେ ଗୋଟିଏ                    ଏକ ଊଣା କୋଟିଏ
ଲିଙ୍ଗ ଥାପିଲେ ତୋର କୂଳେ
ଶଙ୍କର ପଦ ଧୋଇ ଜଳେ
କଥା ଏ ଯାଏ ଅଛି                    ତୋ' କୂଳ ଅଧିବାସୀ
ବୃଦ୍ଧ ପୂଜିଲେ ଗଙ୍ଗା କୋଳେ ।୩।
କନ୍ଦର ଗୋନାସିକା                    ତୋ' ନାମେ କଣାବକା
କରି ଜାଗତ ସଦାକାଳେ
କେନ୍ଦୁଝର ଅଗତେ                    ଯମ ଗରଭ ଖେଦେ
ବହତ ଥିଲା ମହୀତଳେ
ଭଞ୍ଜ ଗ୍ରଜଦ୍ଧି ସେତେବେଳେ

କର୍ଣ୍ଣଧାର ପାଇକ    ହୋଇ ଯୁଦ୍ଧରେ ରଙ୍କ
ଅଙ୍କା ତୋ' ଦେହେ କାଳେ କାଳେ ।୪।
କାର୍ତ୍ତିଭଞ୍ଜ ବଂଶର    କୋଟି ମୁଖେ ମୁଖର
ଜଣା ଅବଧି ରବ ତଳେ
କୀଚକେଶ୍ୱରୀ ବଳେ    କୀଚକ ବାହୁ ବଳେ
ଜଣା ତ ଥିଲା ତୋର କୋଳେ
କିନ୍ତୁ ସହ୍ୱାର ଖ୍ୟାମ ବଳେ
କରୁଣା କଲେ ହର    ଗୁପତ ପରହାର
କର ଚଳିଲୁ ଶଙ୍କାକୁଳେ ।୫।

କମ୍ବୁ ସଦ୍ଗୁଣ କେନ୍ଦ୍ର—    ଝରଇ ହୋଇ ଇନ୍ଦ୍ର
କୋଟି ବୀରଙ୍କୁ ଘେନ କୋଳେ
କୂଳେ ଆର୍ଯ୍ୟ ସଭ୍ୟତା    ତୋ' କୂଳେ ଅଗଣତା
ଶଇବ ବୁଦ୍ଧ ଜୈନ ମେଳେ
ଯଯ ଗ୍ରାମର ଭେଟ ବେଳେ
କମଳଜ ଯଜ୍ଞରେ    କମ୍ବୁଧର କମ୍ବୁରେ
ଯଜ୍ଞ ସାରିଲେ ତୋର ଜଳେ ।୬।
କେତେ ମୟୂରଭଞ୍ଜେ—    ବାଲେଶ୍ୱରରୁ ପୁଞ୍ଜେ
ଯଯ ଗ୍ରାମରେ ଦେଖାଦେଲେ
କମ୍ବୁରେ ଜଳ ତୋର    ଟେକିଲେ ଦାନବୀର
ସ୍ୱପିଲେ ବିଷ୍ଣୁ ମହା ଜଳେ
ଆଦରି ନେଲୁ ତାଙ୍କୁ କୋଳେ
କୋଉଶଲ୍ୟାଙ୍କ ସୁତ    ପୂଜିଲେ ଆଦମାତ
ତୋହର ଶୁଦ୍ଧ ପୂତ ଜଳେ ।୭।
କରୁଣାମୟୀ ଉମା    ଜାଣି ତୋର ମହିମା
ପ୍ରତିଷ୍ଠା ହେଲେ ତୋର ଜଳେ
ସପ୍ତମାତୃକା ସଙ୍ଗେ    ବହିଣ ନାନା ରଙ୍ଗେ
ଯଯ ଗ୍ରାମକୁ ଶ୍ରେଷ୍ଠ କଲେ,
ପାଗ୍ରେଟି ନେଲୁ କୋଟି ହେଲେ
କୋଟି ସଭ୍ୟତା ଶିର    ଚଳିଲୁ ବକ୍ଷେ ଧରି
ଭେଟିବା ଆଶେ ସିନ୍ଧୁ ଜଳେ ।୮।

କୋଟି ତପ ଆଚରି ତୋ' ଜଳେ ପାପ ପାଇ
ତଙ୍କା ସମାନ ସମ ଫଳେ
କମ୍ବୁଧର ପସ୍ତରେ ମିଳିଲେ ସାନନ୍ଦରେ
ଯକ୍ଷ ରାକ୍ଷସ ଦିବ୍ୟ ବଳେ
ଭଲ ନାଦିନୀ ଶୁଦ୍ଧ ଜଳେ
ଆଖଣ୍ଡଳବାସୀଙ୍କ ଦଶା ହେଲା ନରଙ୍କ
ଯା' ପଦ ତୋ' ତନୁ ପଖାଳେ ।୯।
କୋଳେ ତୋର ତଟିନୀ କେତେ ଋଷି ବଳ୍ମୀ
ତର୍ଚ୍ଚାରେ ଧରି ଜଣୁଥିଲେ
କୁଳଦୀପ ସଦ୍‌ଗୁଣ— ଜଳ ହେଲେଣି ଶେଷ
ବୋଇତ ମେଲି ସିନ୍ଧୁ ଜଳେ
ଶତ୍ରୁଘ୍ନ ଜନ୍ମି ତୋର କୂଳେ
କଟାଇ ଦୁଃଖ ଦିନ ଶେଷେ କଞ୍ଜ ଚରଣ
ମୁକତ ମାଗେ ପୂଜି କୋଳେ ।୧୦।



କେନ୍ଦୁଝର ଜିଲ୍ଲାରେ ଗୋଲନ୍ଦୀ ଶିମିଳିପାଳ ପାହାଡ଼ରୁ, କୁଶେଇ ମେଘନାଦ ପାହାଡ଼ରୁ, ଅରଡ଼େଇ ଓ ମାଛକାନ୍ଦଣା ବାଗିଆ ପାହାଡ଼ରୁ, ମୁଷଣୀ ରେବଣା ପାହାଡ଼ରୁ, ସୀତା ସାରୁ ପାଟରୁ, କୁକୁରକଟା ସହରମୁଣ୍ଡା ଓ ରେବ ନନ୍ଦପଦା ଜଙ୍ଗଲରୁ ବାହାରି ବୈତରଣୀ ପୁଷ୍ଟି ବର୍ଦ୍ଧନ କରୁଛନ୍ତି । ରେମାଳ କାଳହତାର ଗୋଟିଏ ଜଙ୍ଗଲରୁ, ଯାମାକୋଇ ଗନ୍ଧମାଦନ ପର୍ବତରୁ ବାହାରି କୁଶେଇ ତଥା ବ୍ରାହ୍ମଣୀ ନଦୀର ପୁଷ୍ଟି ବର୍ଦ୍ଧନ କରୁଛନ୍ତି ।

(କ୍ଷେତ୍ରମୋହନ ମିଶ୍ରଙ୍କ କେନ୍ଦୁଝର ଇତିହାସରୁ ସଂଗୃହୀତ)

# ସୀତାବିଞ୍ଜି

ଖଣିଜ ସମ୍ପଦ ସମ୍ପନ୍ନା କେନ୍ଦୁଝର, କେବଳ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ନୁହେଁ ତାହାର ବକ୍ଷରେ ବିପୁଳ ଲୌହ, ମାଙ୍ଗାନିଜ, କ୍ରୋମାଇଟ୍ ତଥା ସୁବର୍ଣ୍ଣ ସମ୍ପଦ ଭରି ରହିଛି । ଯେଉଁ ସମ୍ପଦ ଲଭିକରି କେନ୍ଦୁଝର ଆଜି ଦେଶ ବିଦେଶରେ ବିଦିତ । ଏହାର ମସ୍ତକ ମଣ୍ଡନ କରି ଗନ୍ଧମାଦନ ଲୁହା ସମ୍ପଦ ଅଲୁଣ୍ଠିତ ଚିତ୍ତରେ ଯାଚି ଦେଉଛି ଏବଂ ବାମ ସ୍କନ୍ଧ ଦେଶରୁ ଯୋଡ଼ା, ବଡବିଲ ବିପୁଳ ଲୁହାର ସମ୍ପଦ ଯୋଗାଇ ପାରୁଛି । ପାଦଦେଶରୁ ବଉଳା କ୍ରୋମାଇଟ୍ ଦେଇପାରୁଛି । ନସ୍କାକୋଟଠାରୁ ସମାକୋଇ ନଦୀ ଧାରେ ଧାରେ ସୁବର୍ଣ୍ଣ ଭଣ୍ଡାର ସାଇତି ରଖିଛି । ଟମକା ପାହାଡ଼ରୁ କ୍ରୋମାଇଟ, ମାଙ୍ଗାନିଜ ଉତ୍ପାଦିତ ହୋଇ ବିଦେଶକୁ ମଧ୍ୟ ରପ୍ତାନି କରାଯାଉଛି । ଗୋନାସିକା କନ୍ଦ୍ରୁ କେନ୍ଦୁଝର ମାଆର ବିପଣୀ ରୂପେ ମଣ୍ଡନ କରି ପୁଣ୍ୟତୋୟା ବୈତରଣୀରୁ ସମଗ୍ର କେନ୍ଦୁଝରକୁ ଜଳଦାନ କରି ବାଲେଶ୍ୱର କଟକ ଜିଲ୍ଲାର ଅନେକ ଶ୍ରେଷ୍ଟବଡ଼ ଗ୍ରାମମାନଙ୍କୁ ଜଳଦାନ କରି ପାରୁଛି ।

ଖଣିଜ ସମ୍ପଦ ଛଡା ବହୁ ପ୍ରାକୃତିକ ସୌନ୍ଦର୍ଯ୍ୟ କେନ୍ଦୁଝରର ଶିର ମଣ୍ଡନ କରୁଛି । ସେହି ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟରେ ଐତିହାସିକ ପୀଠ ସୀତାବିଞ୍ଜ ଅନ୍ୟତମ । ଏହା କେନ୍ଦୁଝର-ଯାଜପୁର ରୋଡ଼ ରାସ୍ତାର ୧୫ ମାଇଲ୍ ପରେ କନ୍ଧାବେଡ଼ାଠାରେ ଆଉ ଏକ ଗ୍ରାମ୍ୟ ରାସ୍ତାରେ ୬ କି:ମି: ଗଲାପରେ ତାଙ୍କ ଆପଣି ଗ୍ରାମରେ ଅବସ୍ଥିତ । ସୀତାବିଞ୍ଜର ବିଶେଷତ୍ୱ ପ୍ରକାଶ ପାଉନି ଆଜି ଆମରି ଦେଶ ବା ରାଜ୍ୟରେ । ଏହା ଗୋଟିଏ ଐତିହାସିକ ସ୍ଥାନ ହିସାବରେ କୋଟି ମୁଖରେ ପରିଚିତ ।

ଐତିହାସିକ ପୀଠ—ସୀତାବିଞ୍ଜରେ ରାବଣଗ୍ରସ୍ତା ଯେତିକି ଚିତ୍ତାକର୍ଷକ ତା'ଠାରୁ ଅଧିକ ଚିତ୍ତାକର୍ଷକ ସୀତାଙ୍କର ଗର୍ଭାଧର । ରାବଣ ଛାୟାର ବିଶେଷତ୍ୱ

ଏହି ଯେ ଦୁଇଟି ବଡ଼ ପଥର ଉପରେ ଗୋଟିଏ ବଡ଼ ପଥର ଡାକ୍ତୁଣୀ ସଦୃଶ କେଉଁ କାଳରୁ ଡାକି ହୋଇଅଛି କେହି କହି ପାରିବେ ନାହିଁ । ଏହି ପଥର ୨ଟିର ଉଚ୍ଚତା ୧୪୦।୧୫୦ ଫୁଟରୁ କମ୍ ନୁହେଁ । ଏହି ଗୋଟିକିଆ ଡାକ୍ତୁଣୀ ପଥର ଦେହରେ କୌଣସି ଏକ ପୂର୍ବ ଭୂମିର ତୈଳଚିତ୍ର ଅଦ୍ୟାବଧି ପରିଷ୍ଫୁଟ । କେତେକ ଗବେଷକଙ୍କ ମତରେ ଆଦିମ ଯୁଗରେ କେତେକ ସୈନ୍ୟ ସାମନ୍ତ ତାଙ୍କର ଚଲାପଥରେ ଏହି ଜାଗାରେ ଆଶ୍ରୟ ନେଉଥିଲେ । ତାଙ୍କ ଭିତରୁ କେହି ଜଣେ ବା ଦୁଇଜଣ କଳାକାର ଏହି ତୈଳଚିତ୍ରଗୁଡ଼ିକ ତିଆରି କରି ଯାଇଥିଲେ ଯାହା ଏ ଯୁଗରେ ରାବଣ ଛାୟା ରୂପେ ବିଦିତ । ତା' ଛଡ଼ା ଏହି ସ୍ଥାନ ଏକ ବୌଦ୍ଧପୀଠ ରୂପେ ପରିଚିତ । ଏହି ରାବଣ ଛାୟାର ତୈଳ-ଚିତ୍ର ବୁଦ୍ଧ ଯୁଗର କଳାକାରଙ୍କର କୃତ ବୋଲି କେତେକଙ୍କର ମତ । ଏହାର ପ୍ରମାଣ ସ୍ୱରୂପ ରାବଣଛାୟାଠାରୁ କିଛିଏ ଦୂରରେ ପଥରରେ ଖୋଦିତ ହୋଇ ପାଲିଲିପି ଅଦ୍ୟାବଧି ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରେ । ଏହି ପାଲି-ଲିପିର ଅନୁବାଦ ବିଷୟରେ ସ୍ୱର୍ଗୀୟ କବି ବିନାୟକ ମିଶ୍ର ଲେଖି ଯାଇଛନ୍ତି । ଯାହାକି ଆଜି ଭୁବନେଶ୍ୱରର ମ୍ୟୁଜିୟମରେ ସଂରକ୍ଷିତ । ଏହି ପାଲିଲିପି ଲେଖାରୁ ଜଣାପଡ଼େ ରାଜବଂଶର ମତ ଦୀସ ଭଞ୍ଜଙ୍କର ସୈନ୍ୟମାନେ ତାଙ୍କର ଚଲାପଥ ଉଦ୍ଧର୍ଶୀ କାଳରେ ଏହି ତୈଳଚିତ୍ର ଆଙ୍କିଥିଲେ । ଏହି ଦୀଶଭଞ୍ଜ କେନ୍ଦୁଝରର ରାଜା ଥିଲେ ସତ; କିନ୍ତୁ ଜ୍ୟୋତି ଭଞ୍ଜଙ୍କଠାରୁ ବଳଭଦ୍ର ଭଞ୍ଜ ରାଜବଂଶ ମଧ୍ୟରେ ନ ଥିଲେ । ଦୀଶଭଞ୍ଜ ବିନ୍ଧ୍ୟାଟବୀରେ ନାଗବଂଶର ଶେଷ ରାଜା । ଏ ରାଜା ସୀତାବିଞ୍ଜରେ ଗୋଟିଏ ଚତୁର୍ମୁଖୀ ଶିବଲିଙ୍ଗ ନିର୍ମାଣ କରାଇ ପାଖରେ ଭକ୍ତମାନଙ୍କ ପାଇଁ ପାନ୍ଥଶାଳା ନିର୍ମାଣ କରାଇ ଥିଲେ । ଏହାଙ୍କ ବିଷୟରେ ବିନ୍ଧ୍ୟାଟବୀ ପ୍ରବନ୍ଧରେ ବିଶଦ ଆଲୋକପାତ କରାଯାଇଛି ।

ଏହି ସୀତାବିଞ୍ଜ ଉପରେ ସାହିତ୍ୟ ଏକାଡେମୀର ଡକ୍ଟର ଅର୍ଜୁନ ଯୋଶୀ ଏକ ଥେସିସ୍ ଲେଖି ସାରିଛନ୍ତି । ଏହି ରାବଣ ଛାୟା ଉପରେ ମୁଁ ବିଶେଷ ପ୍ରାଧାନ୍ୟ ନ ଦେଇ ସୀତାଙ୍କ ଗନ୍ଧାଘର ଓ ସୀତାଙ୍କ ଏନ୍ତୁଡ଼ିଶାଳ ଉପରେ ପ୍ରାଧାନ୍ୟତା ଦେବାକୁ ମନସ୍ଥ କରି ଲେଖିବାକୁ ଆରମ୍ଭ କରୁଛି । ଏବେ ମଧ୍ୟ ସେହି ସ୍ଥାନରୁ କେତେକ ବୃଦ୍ଧ ବ୍ୟକ୍ତି ଏହା ଉପରେ ମତବ୍ୟକ୍ତ କରିଛନ୍ତି ।

ସୀତା ଗନ୍ଧାଘରର ଉଚ୍ଚତା ଆନୁମାନିକ ୨୫୦ ଫୁଟରୁ ଅଧିକ । ଦୂରରୁ ଦେଖିଲେ ଏହାର ବିଶେଷତ୍ୱ ପ୍ରତିପାଦନ ହୁଏ । ଏହା ଗୋଟିଏ ପଥରରେ

ଡଥାଣ । ଏହାର ସାମ୍ନା ପଟରେ ଆମର ଗାଉଁଲି ଘର କବାଟର କଳଣୀ ପଦ୍ଧତି କଳଣୀ ଅଛି ଏବଂ ଗୋଟିଏ ପଥରର ବୃଷ ଝୁଲୁଛି । ଏହା ଆକୃତ ଏକ ଶିଭ୍ଲିକ ସଦୃଶ । ଜଣେ ସନ୍ନ୍ୟାସୀଙ୍କ ସଂସ୍ପର୍ଶରେ ଆସି ଶୁଣିବାକୁ ପାଇଥିଲି ଯେ ଏ ଗନ୍ତାଘର ଯେଉଁ ମୁହୂର୍ତ୍ତରେ ଖୋଲିବ ସେ ମୁହୂର୍ତ୍ତରେ କେବଳ କେନ୍ଦୁଝର ନୁହଁ ଅନେକ ରାଜ୍ୟ ଧ୍ୱସ୍ତ ବିଧ୍ୱସ୍ତ ହୋଇଯିବ । ଏହା ଭିତରେ ମଧ୍ୟ କେଉଁ ପଦାର୍ଥ ଗଚ୍ଛିତ ରହିଛି ତାହା କେହି କହିବାକୁ ସକ୍ଷମ ନୁହନ୍ତି । ଅବଶ୍ୟ ଏହା ଉପରେ ଗବେଷଣା କରିବାକୁ ବହୁ ଦୂରଦର୍ଶୀ ବୈଜ୍ଞାନିକମାନେ ଆସି ବିଫଳ ମନୋରଥ ହୋଇ ଫେରି ଯାଇଛନ୍ତି । ଏହାର ତଥ୍ୟ ସଂଗ୍ରହ କରିବାକୁ ଆହୁରି ମଧ୍ୟ ଅନେକ ଜ୍ଞାନୀ ଲୋକମାନେ ଆସି ତାଙ୍କର ପରିଶ୍ରମର ପୁରସ୍କାର ପାଇବେ ବୋଲି ଆଶା କରାଯାଏ । କେନ୍ଦୁଝର ଶ୍ରେଷ୍ଟବ୍ୟକ୍ତିଙ୍କ ସଂଗୃହୀତ ଏକ ବିବରଣୀରୁ ଜଣାପଡ଼େ ଯେ ଏହା ବୌଦ୍ଧ ସନ୍ନ୍ୟାସୀ ପଦ୍ମସମ୍ଭବଙ୍କ ସମାଧି ।

କମ୍ବଦନ୍ତୀ ଅଛି ସେହି ଗ୍ରାମର ଲୋକମାନେ ଦରକାର ଅନୁଯାୟୀ କଂସା ଓ ପିତ୍ତଳର ବାସନ ନେଇ କାମ କାର୍ଯ୍ୟ ଯାନିଯାତ୍ରା କାମରେ ଲଗାଇ ଫେରାଇ ଦେଉଥିଲେ; କିନ୍ତୁ କେତେକଙ୍କର ଦୁର୍ବୁଦ୍ଧି ବଶତଃ ମିଳୁଥିବା ଜିନିଷ ନ ଫେରାଇବାରୁ ଲୋକମାନେ ସେ ଉପକାରରୁ ବଞ୍ଚିତ ହୋଇ ଅଛନ୍ତି । ଏହି ଶିଭ୍ଲିକାକୃତ ସୀତା ଗନ୍ତାଘର ବ୍ୟତୀତ ଆଉ ଗୋଟିଏ ଆକର୍ଷଣୀୟ ବଡ଼ଘର ସଦୃଶ ଡନୋଟି ପଥର ଅଛି ।

କମ୍ବଦନ୍ତୀ ଅଛି ଏହି ପଥରକୁ କାଖକରି କୌଣସି ବନ୍ଧ୍ୟାରମଣୀ ସେହି ପଥରର ଗୃହ ପାଖରେ ୭ ଥର ବୁଲିପାରିଲେ ସେ ପୁତ୍ରବତୀ ହୁଏ । ଏହି କଳ୍ପନା ବା କମ୍ବଦନ୍ତୀ ନେଇ ବନ୍ଧ୍ୟା ସ୍ତ୍ରୀମାନେ ସେହି ପଥର ଧରି ୭ ଭେଢ଼ା ବୁଲି ପୁତ୍ରବତୀ ହେବାର ପ୍ରବଳ ଇଚ୍ଛା ନେଇ ବହୁ ଜନସମାଗମ ହୁଏ । ଏହାଛଡ଼ା ପ୍ରତିବର୍ଷ ରଜସଂକ୍ରାନ୍ତି ଦିନ ଏହି ସ୍ଥାନରେ ଏକ ବିରାଟ ମେଳା ହୁଏ । ଯେଉଁଥିରେ ହଜାର ହଜାର ଲୋକଙ୍କର ସମାଗମ ହୁଏ; କିନ୍ତୁ ଏହି ଉପରୋକ୍ତ ବିଷୟରେ ବହୁତ ଆଲୋଚକ, ସମାଲୋଚକ, ଗବେଷକ ଏହାକୁ ସୀତାଙ୍କର ଏନ୍ତୁଡ଼ିଶାଳ, ସୀତାଙ୍କ ଗନ୍ତାଘର ବା ରାବଣଗୁମ୍ଫା ବୋଲି ଅସ୍ୱୀକାର କରନ୍ତି । ମାତ୍ର ରାବଣଗୁମ୍ଫା ଏହି ସ୍ଥାନର ପ୍ରାଧାନ୍ୟତା ବେଶୀ ପ୍ରକାଶ କରେ । ବିଦେଶରୁ ଲୋକମାନେ ଏହାର ସତ୍ୟତା ଅନୁସନ୍ଧାନ କରିବା ସଙ୍ଗେ ସଙ୍ଗେ ଏ ସ୍ଥାନର ତାତ୍ପର୍ଯ୍ୟ ଜାଣିବାକୁ ଇଚ୍ଛୁକ ।

ମୁଁ ଯେତକ ଜାଣିଛୁ ବା ସଂଗ୍ରହ କରିଛୁ ଏହି ସୀତାବିଞ୍ଜି ଗୋଟିଏ ପଥର ଚଟାଣ ତଳେ ଅଧିଷ୍ଠିତ । ଏହି ପଥର ଚଟାଣ କୋଡ଼ପଣା ନୂଆଙ୍ଗ ଗ୍ରାମଠାରୁ ଆରମ୍ଭ କରି ବାର୍ହାଟିପିରି ଶିବମନ୍ଦିର (ନୀଳକଣ୍ଠେଶ୍ୱର) ପର୍ଯ୍ୟନ୍ତ ବିସ୍ତୃତ ବୋଲି କେତେକ ଗବେଷକଙ୍କର ମତ । ଏହାର ଗବେଷଣାରୁ ଗବେଷକମାନେ ଏ ଯାବତ୍ ନିବୃତ୍ତ ହୋଇ ନାହାନ୍ତି । ଏହି ତଥାକଥିତ ସୀତାବିଞ୍ଜି କେତେକ ଗବେଷକଙ୍କ ମତରେ ଗୋଟିଏ ବୌଦ୍ଧପୀଠ ରୂପେ ପରିଚିତ । କେନ୍ଦୁଝରର ତଥ୍ୟ ସଂଗ୍ରାହକ ଶ୍ରୀ ବଂଶୀଧର ମିଶ୍ର ଏହାକୁ ମଧ୍ୟ ବୌଦ୍ଧ ପୀଠ ରୂପେ ବର୍ଣ୍ଣାଇଛନ୍ତି । ସ୍ୱର୍ଗୀୟ କବି ବିନାୟକ ମିଶ୍ର ତାଙ୍କ ଲେଖାରେ ମଧ୍ୟ ଏହି ମତ ବାଢ଼ିଛନ୍ତି । ପାଲିଭାଷାରେ ଖୋଦିତ ପ୍ରସ୍ତରମାନଙ୍କରୁ ଜଣାଯାଏ ଏହା ଏକ ବୌଦ୍ଧପୀଠ । ସୀତାବିଞ୍ଜି ଯାବତ୍ ଦୂରରେ ବହୁ ପ୍ରାଚୀନକାଳର କେତେଗୁଡ଼ିଏ ଇଟା ମଧ୍ୟ ସଂଗ୍ରହ କରାଯାଇ ଦର୍ଶକମାନଙ୍କର ହୃଦୟ ଆକର୍ଷଣ କରିବାପାଇଁ ରଖାଯାଇ ଅଛି । ଏଇ ପୀଠର ମହାତ୍ମ୍ୟ ଉପରେ ବର୍ଣ୍ଣନା କଲେ ଏହା ସୀତାଙ୍କର ଏକାନ୍ତବାସ ବୋଲି କୁହାଯାଇ ପାରେ । ଏହି ପୀଠଦେଇ ଗୋଟିଏ ସୀତା ନାମରେ ଶ୍ରେଷ୍ଠ ନଦୀ ପ୍ରବାହିତ ହୋଇଅଛି ।

ପୂର୍ବ ଭାରତରେ ସୀତାନୀ ଅବସ୍ଥିତ ହୋଇ ଓ୍ୟାଡ଼େଲେ ପଦ୍ମସମ୍ଭବ ମତ ଦେଇଥିଲେ । ଡାକ୍ତର ବାଗ୍‌ଚୀ ଓ ଅନ୍ୟମାନଙ୍କ ମତରେ ପଶ୍ଚିମ ଭାରତର 'ଜାହୋର' ଉପତ୍ୟକା ମଧ୍ୟରେ ସୀତାବିଞ୍ଜି 'ସୀତାନୀ' ନାମରେ ପରିଚିତ । ଖ୍ରୀଷ୍ଟପୂର୍ବରୁ କୁଶାଣ ମୁଦ୍ରା ମଧ୍ୟ ସୀତାବିଞ୍ଜିରେ ଏଯାଏ ରକ୍ଷିତ । ବହୁ ପୁରୁଣା ଯୁଗର ଗୁପ୍ତ ମିଶା ଇଟାଖଣ୍ଡ ଏ ଜାଗାରେ ମିଳୁଥିବାରୁ ଜନମତରେ ଏହା ସେହି ବୌଦ୍ଧ ଯୁଗରେ ବୌଦ୍ଧବିହାର ରୂପେ କଥିତ ଥିଲା । କେବଳ ସୀତାବିଞ୍ଜିରେ ଏ ଧରଣର ଇଟା ଦୃଷ୍ଟିଗୋଚର ହୁଏନାହିଁ—ଏହା ପିପିଲିଆ ଗ୍ରାମରେ ମଧ୍ୟ ଦୃଶ୍ୟ ହୁଏ । ଖ୍ରୀ: ପୂ: ୪ରେ ଡାକ୍ତର ଏନ୍. କେ. ସାହୁ ଆମର କେନ୍ଦୁଝର ସଦର ସବ୍‌ଡିଭିଜନର ପିପିଲିଆ ଗ୍ରାମକୁ ବୌଦ୍ଧପରିବ୍ରାଜକ ପିପିଲି ନାମାନୁଯାୟୀ ପିପିଲିଆକୁ ନାମିତ କରିଛନ୍ତି । ଏଥିରୁ ସ୍ପଷ୍ଟ ଜଣାପଡ଼େ ବୌଦ୍ଧପରିବ୍ରାଜକ ଏହି କେନ୍ଦୁଝରରେ ବସତି ସ୍ଥାପନ କରିଥିଲେ । କେ୍ୟାତିଭଞ୍ଜଙ୍କ କ୍ରମରୁ ଅଷ୍ଟମ ରାଜା ପନ୍ଥ ଭଞ୍ଜ ଜଣେ ବୌଦ୍ଧ ଶିଷ୍ୟ ଓ ତାନ୍ତ୍ରିକ ରାଜା ହିସାବରେ କେନ୍ଦୁଝର ରାଜ୍ୟରେ ଅବିଦିତ ନୁହଁନ୍ତି ।

ସୀତାଙ୍କ ଗର୍ଭାଧାରକୁ ବୌଦ୍ଧଗୁରୁ ପଦ୍ମସମ୍ଭବଙ୍କ ସମାଧି ପୀଠ ଭାବେ ଚିତ୍ରଣ କରାଯାଉଛି; କିନ୍ତୁ ଏହା ବିଶ୍ୱାସଯୋଗ୍ୟ ନୁହେଁ କାରଣ ଏହାର ଉଚ୍ଚତା

ଓ ପରିଧି ଏତେବଡ଼ ଯେ ୨୦୦୦ ଜଣଙ୍କଠାରୁ ଅଧିକ ଲୋକ ଏକ ସଙ୍ଗରେ-ଗୋଟାଏ ପଥର ଟେକି ସ୍ଥାନାନ୍ତରିତ କରି ପାରିବେ ନାହିଁ—କିମ୍ବା ଏକକାଳୀନ ୨୫।୩୦ଟା ହାତୀ ଏ ପଥରକୁ ଟାଣି ଗୋଟାଏ ଜାଗାରେ ଠିଆ କରାଇବା ସମ୍ଭବପର ନୁହେଁ । ପୁରାଣ କଥିତ ତ୍ରେତୟା ଯୁଗର ଇତିହାସ ଖୋଲି ଦେଖିଲେ ସୀତା ହରିରଥୀ କୂଳରେ ବାଲ୍ମୀକି ଋଷି ଆଶ୍ରମରେ ଲବ-କୁଶଙ୍କୁ ଜନ୍ମ ଦେଇଥିଲେ । ଏଣୁ ଏହା ଲୋକମତରେ ସୀତାଙ୍କର ଆଶ୍ରମ ହୋଇ ନ ପାରେ; କିନ୍ତୁ ବିଶେଷ ତଥ୍ୟ ଏହି ବିଷୟରେ ସୁପ୍ତ । ଲୋକମାନଙ୍କ ମନ ଭିତରେ ଦୃଢ଼ ବିଶ୍ୱାସ ଆଣି ଦେବାପାଇଁ ସୀତାଙ୍କ ଏନ୍ତୁଡ଼ିଶାଳରେ ଲବ-କୁଶଙ୍କୁ ଧରି ସାତ ଥର ଭ୍ରମଣ କରିପାରିଲେ ବନ୍ଧ୍ୟା ସ୍ତ୍ରୀ ପୁତ୍ରବତୀ ହୁଏ । ଏହା ଏକ ଅପପ୍ରଚାର ନ ହେଲେ ମଧ୍ୟ ସତ୍ୟ ବୋଲି ମାନିନେବା ଉଚିତ ମଧ୍ୟ ନୁହେଁ । ମୋର କ୍ଷୁଦ୍ର ମତରେ ଏହାର ପୁଙ୍ଖାନୁପୁଙ୍ଖ ଗବେଷଣା ହେଲେ ଏହି ପୀଠର ପ୍ରକୃତ ତଥ୍ୟ ମିଳି ପାରିବ ।

ଜମାଇକମ୍ ପ୍ରଭୃତିରୁ ମିଳେ ଯେ ଶାକ୍ତ ତଥା ସନ୍ଥ ଭକ୍ତ ଏହି ସ୍ଥାନରେ କିଛିକାଳ କଟାଇଥିଲେ; କିନ୍ତୁ ପରେ ସେ ବେଶୀ ସମୟ ପଦ୍ମସମ୍ଭବଙ୍କ ଶିଷ୍ୟତ୍ୱ ଗ୍ରହଣ କରି ସନ୍ଥେଇ ହୁଡ଼ରେ କାଳ କାଟୁଥିଲେ । ଏହା ବୌଦ୍ଧପୀଠର ପ୍ରମାଣ ଅସମ୍ଭବ ନୁହେଁ ଯେହେତୁ ଏଠାରେ କେତେକ ତାମ୍ର ମୁଦ୍ରା ରକ୍ଷିତ ଅଛି ଯାହାକି କନିଷ୍କ ଯୁଗର ତାମ୍ର ମୁଦ୍ରା ସଦୃଶ । ଆଉ ଗୋଟିଏ ଆଶ୍ଚର୍ଯ୍ୟର ବିଷୟ ସୀତାବିଞ୍ଜି ପାହାଡ଼ ଉପରେ ଗୋଟିଏ ପଥରରେ ଗୋଟିଏ ଡମ୍ବରୁ ଖୋଦିତ । ଏଥିରୁ ଅନୁମିତ ହୁଏ ଶୈବ ଧର୍ମାବଲମ୍ବୀମାନେ ବୌଦ୍ଧମାନଙ୍କୁ ତଡ଼ି ଶୈବଶକ୍ତିର ପୂଜା କରୁଥିଲେ ।



# ଖଣ୍ଡାଧାର

ଯୁଗ ବଦଳିଯାଏ । ଏ ମାନବ ସୃଷ୍ଟିର ଅବସାନ ହୋଇ ପୁନର୍ଜନ୍ମ ହୁଏ; କିନ୍ତୁ ଧରଣୀ—ତଥା ମାଟି ମା' ସେହିପରି ପଡ଼ିଥାଏ କଳ୍ପ ଶେଷ ପର୍ଯ୍ୟନ୍ତ ଅର୍ଥାତ୍ ଜଳାର୍ଣ୍ଣବ ପର୍ଯ୍ୟନ୍ତ । ପ୍ରାକୃତିକ ସୌନ୍ଦର୍ଯ୍ୟ ତା'ର ସୌନ୍ଦର୍ଯ୍ୟ ବୃଦ୍ଧି କରେ । ସେହି ଧରଣୀ ବକ୍ଷରେ କେନ୍ଦୁଝର ଗୋଟିଏ ରାଜ୍ୟ ରୂପେ ଦିନେ ଜନମୁଖରେ ପରିଚିତ ଥିଲା । ଆଜି କିନ୍ତୁ ରାଜା ବନ୍ଧନରେ ଏହା ରାଜ୍ୟ ନ ହୋଇ ସବୁଠାରୁ ଶ୍ରେଷ୍ଠ ଜିଲ୍ଲାରେ ପରିଚିତ । ସୌଭାଗ୍ୟର ବିଷୟ ଏହି ବଣ ପାହାଡ଼ଘେରା କେନ୍ଦୁଝର ଖଣିଜ ସମ୍ପଦରେ ଭରପୂର । ଫଳରେ ଏହା ପୃଥିବୀରେ କେଉଁଠି ଅବିଦିତ ନୁହେଁ । ଏହି ଜିଲ୍ଲାର ଲୁହାଖଣି ଦେଶ ବିଦେଶକୁ ଲୁହା ଯୋଗାଇ ପରିଚିତ । ଏହି ବଣ ପାହାଡ଼ଘେରା କେନ୍ଦୁଝର ଜିଲ୍ଲାଟି ମୋଗଲବନ୍ଦୀ ଅଞ୍ଚଳ ଭଳି ଶସ୍ୟଶ୍ୟାମଳା ନ ହେଲେ ମଧ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ ଏବଂ ଅନେକ ନଦୀ ଉପନଦୀ ବେଷ୍ଟିତା । ଏ ଜିଲ୍ଲାର ନଦୀ ଉପନଦୀ ଭିତରେ ପୁଣ୍ୟତୋୟା ବୈତରଣୀ ଶ୍ରେଷ୍ଠ ଓ ଚିରସ୍ରୋତା । ନଦୀ ଉପନଦୀ ମଧ୍ୟରେ ଚିରସ୍ରୋତା ନ ହେଲେ ମଧ୍ୟ ମୂଷଳ, ସୀତା, କାଲଞ୍ଜର, ସାମାକୋଇ, ଅରଡ଼େଇ, କୁଶେଇ, ମାଛକାନ୍ଦଣା, ଦେ ଓ ଆହି କେତେଗୁଡ଼ିଏ ଶାଖାନଦୀ ଶ୍ରୀସମ୍ପନ୍ନା । ଏ ଜଳସ୍ରୋତ, ସ୍ରୋତାଙ୍କ ବ୍ୟତୀତ ୩ଟି ଜଳପ୍ରପାତ କେନ୍ଦୁଝର ସଦର ଅଣୁବିଭାଗ ମଧ୍ୟରେ ଅବସ୍ଥିତ । ଏହି ତିନୋଟି ଜଳପ୍ରପାତ ମଧ୍ୟରେ ଖଣ୍ଡାଧାର ବୃହତ୍ତମ । ବଡଘାଗରା ଓ ସାନଘାଗରା ପ୍ରପାତ ଦୁଇଟି ଯୋଡ଼ିଆ ପାହାଡ଼ର ଶ୍ରୀବର୍ଦ୍ଧନ କରି ପାର୍ବତ୍ୟ ଅଞ୍ଚଳ ତଥା ଶ୍ରେଷ୍ଠ ବଡ଼ ଗ୍ରାମମାନଙ୍କୁ ଜଳ ଯୋଗାଇ ପୁଷ୍ଟି ସାଧନ କରୁଛନ୍ତି ।

## ବଡ଼ଘାଗରା ଜଳ ପ୍ରପାତ—

ଏହି ଜଳ ପ୍ରପାତଟି ଖଣ୍ଡାଧାର ଜଳ ପ୍ରପାତ ସଦୃଶ ନ ହେଲେ ବି ଏହା ଚିରସ୍ରୋତା । ଏହି ପ୍ରପାତଟି ପରେ ମାଛକାନ୍ଦଣା ନଦୀ ରୂପରେ ପ୍ରବାହିତ । ଏହା ବାର୍ହା ରୂପ ପର୍ବତରୁ ବାହାରି କେନ୍ଦୁଝର ସଦର ମହକୁମାର ପାର୍ବତ

ଓ ସମତଳ ଅଞ୍ଚଳ ପ୍ଳାବିତ କରି ଅରଡେଇ ନଦୀରେ ମିଶି ବୈତରଣୀ ନଦୀର ପୁଷ୍ଟି ସାଧନା କରୁଅଛି । ଏହି ପ୍ରପାତଟି ପ୍ରଥମେ ଗୋଟିଏ ବଡ଼କୁଣ୍ଡ ସୃଷ୍ଟି କରି ନିମ୍ନଗାମୀ ହୋଇଯାଇଛି । ଏହି ନଦୀକୁ ଗଡଜାତ ରାଜାଙ୍କ ସମୟରେ ଜୋର ବୋଲି କୁହା ଯାଉଥିଲା । ଏହି ଜୋରକୁ ମହାରାଜା ଧନୁର୍ଜ୍ଜୟ ଭଞ୍ଜଙ୍କ ସମୟରେ ଖୋଲାଯାଇ ରାଜାଙ୍କ ଉଆସ (ବାସଗୃହ) ଦେଇ ଗତ କରିବାକୁ ଚେଷ୍ଟା କରିବା ବେଳେ ୧୮୯୧ ଖ୍ରୀଷ୍ଟାବ୍ଦରେ ଗୋଟିଏ ବଡ଼ ଧରଣର ଭୂୟାଁ ମେଳି ତଥା ଗଣ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଜାତୀୟ ସରକାର ଏହି ଜଳପ୍ରପାତର କୁଣ୍ଡରୁ ଜଳଶୋଧନ କରି କେନ୍ଦୁଝର ସଦର ମହକୁମାରେ ସବୁରି ଘରକୁ ଜଳ ଯୋଗାଣ ବ୍ୟବସ୍ଥା କରାଇ ପାରିଛନ୍ତି ।

## ସାନ ଘାଗରା—

ଏହି ଜଳ ପ୍ରପାତ ମଧ୍ୟ ସୃଷ୍ଟି କରି ମାଛକାନ୍ଦଣା ପ୍ରବାହିତ । ସାନ ଘାଗରା ଗୋବରା ପାହାଡ଼ର ପରପାଖରେ । ଏହି ଜଳ ପ୍ରପାତ ଯୋଡ଼ିଆ ପାଟିର ସେ ପାଖରେ କେତେଗୁଡ଼ିଏ ପଥରର ଶଯ୍ୟା ଦେଇ ନିମ୍ନଗାମୀ ହେବା ଫଳରେ ଅନେକଗୁଡ଼ିଏ କମନୀୟ ଦୃଶ୍ୟ ଉଦ୍ଭାବନ କରି ଆଗେଇ ଯାଇଛି । ସେହି କମନୀୟ ଦୃଶ୍ୟ ଆଜିକାଲି ଜଗତରେ ବହୁଜନ ମାନସରେ ଏକ କମନୀୟ ଦୃଷ୍ଟିପାତ ସୃଷ୍ଟି କରି ପାରିଛି ।

ଏହି ଦୁଇଟି ପ୍ରପାତ ଖଣ୍ଡାଧାର ଭଳି ସୌନ୍ଦର୍ଯ୍ୟ ସମ୍ପନ୍ନା ନ ହେଲେ ମଧ୍ୟ ଏହାର ଉପକାରିତା ଲୋକମାନେ ଉପଲବ୍ଧି କରି ପାରୁଛନ୍ତି । କେନ୍ଦୁଝର ସଦର ମହକୁମାରେ ଏ ଉନୋଟି ପ୍ରପାତ ଛଡ଼ା ହରିଚନ୍ଦନପୁର ଗୋଷ୍ଠୀ ଉନ୍ନୟନ ଅଞ୍ଚଳରେ ଗୁଣ୍ଡିଚ୍ଚ ଘାଗି ଜଳସ୍ରୋତ ଚିତ୍ତାକର୍ଷକ । ଏହା ପ୍ରପାତ ନ ହେଲେ ମଧ୍ୟ ପ୍ରପାତ ସଦୃଶ । ଏହା ଚିରସ୍ରୋତା, ପ୍ରକୃତ, ସୌନ୍ଦର୍ଯ୍ୟ ସମ୍ପନ୍ନା । ଏଗୁଡ଼ିକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଗିରିବର୍ଦ୍ଧନ କରି ଜନମନ ହରଣ କରୁଛି । ଏହି ପ୍ରପାତଗୁଡ଼ିକର ଜଳରେ ଆଜିକାଲି ଆଦିବାସୀମାନେ ଉନ୍ନତ ଧରଣର ପନିପରିବା ଉତ୍ପାଦନ କରି ନିଜର ଜୀବନ ନିର୍ବାହ କରି ପାରୁଛନ୍ତି ।

ଖଣ୍ଡାଧାର କେନ୍ଦୁଝର ସଦର ମହକୁମାଠାରୁ ୪୦ ମାଇଲ୍ ଅର୍ଥାତ୍ ୬୪ କି· ମି· ଦୂରରେ ଗନ୍ଧମାଦନର ଶେଷ ପାଦରେ ଅବସ୍ଥିତ । ଏହା ବାଂଶପାଳ ଗୋଷ୍ଠୀ ଉନ୍ନୟନର କାଦକଳା (ଭୂୟାଁପୀଢ଼) ମୌଜାର ଶ୍ରୀମଣ୍ଡନ କରି ଜନମନ ହରଣ କରୁଅଛି । ଏ ଜଳ ପ୍ରପାତ ୨୨୮ ଫୁଟ ଉଚ୍ଚ ପର୍ବତରୁ ଡାଖ ଧାରରେ ଜଳବର୍ଷଣ କରି ଖଣ୍ଡାଧାର ନାମରେ ନାମିତ । ଏହା ଦକ୍ଷିଣ ପଶ୍ଚିମମୁଖୀ ।

ଆମର ଉତ୍କଳ ମାଟିରେ ଅନ୍ୟ ପ୍ରପାତମାନଙ୍କ ମଧ୍ୟରେ ସମ୍ବଲପୁର ଜିଲ୍ଲାର ଦେଓଗଡ଼ରେ ପଧାନପାଟ ଜଳ ପ୍ରପାତ ଶ୍ରେଷ୍ଠ । କେନ୍ଦୁଝରର ଏହି ଖଣ୍ଡାଧାର କିନ୍ତୁ ୨୬୮ ଫୁଟ ଉଚ୍ଚରୁ ଜଳ ନିଃସୃତ କରି ଅନ୍ୟତମ । ଏ ପ୍ରପାତ ପ୍ରାକୃତିକ ସୌନ୍ଦର୍ଯ୍ୟ ସମ୍ପନ୍ନା । ଏହାର ଗୋଟିଏ ପାଖରେ ଛୁଡ଼ା ହେଲେ ଦର୍ଶକବୃନ୍ଦ ଜଳର ସ୍ପର୍ଶ ଅନୁଭବ କରନ୍ତି । କିମ୍ବଦନ୍ତୀ ବହୁଳ ଏହି ଜଳସ୍ପର୍ଶରୁ ବଞ୍ଚିତ ହେବା ଦର୍ଶକମାନେ ପାପୀ, ଅଧର୍ମୀରେ ଗଣ୍ୟ ହୁଅନ୍ତି । ଏହାର ଦୁଇ ପାଖ ଘଞ୍ଚ ଜଙ୍ଗଲରେ ଆବୃତ । ଏହା ବନ୍ୟଜନ୍ତୁମାନଙ୍କର ବାସସ୍ଥଳୀ । ଏହାର ଉଚ୍ଚତା ହେତୁ କେହି ଦର୍ଶକ ପ୍ରପାତର ଉପରକୁ ଯାଇ ଏହାର କମନୀୟତା ହୃଦୟଙ୍ଗମ କରିପାରିବା କଷ୍ଟସାଧ୍ୟ । ଏହି ଖଣ୍ଡାଧାର ପ୍ରବାହିତ ଜଳରାଶି ଦୂରରୁ ଅନିଳରେ ଦୋଳାୟିତ ହୋଇ ଗୋଟିଏ ସୂତାଖିଅ ଭଳି ପରିଲକ୍ଷିତ ହୁଏ ।

ସୌନ୍ଦର୍ଯ୍ୟର ବିଷୟ କେନ୍ଦୁଝରର ପ୍ରାକୃତିକ ପୀଠଗୁଡିକ ଦେବା-ଦେବୀଙ୍କର କ୍ରୀଡ଼ାସ୍ଥଳୀ ରୂପେ ବିଦିତ । କେହି ବ୍ୟଙ୍ଗ କରି କହିପାରେ ଏହା ଲେଖକର ଛଟା ବା ସ୍ତୁତି; କିନ୍ତୁ ସିଦ୍ଧପୁରୁଷମାନଙ୍କଠାରୁ ଏହିଭଳି ପ୍ରାକୃତିକ ପୀଠରେ ଦେବାଦେବୀଙ୍କର କ୍ରୀଡ଼ାସ୍ଥଳର ବର୍ଣ୍ଣନା ଶୁଣି ଆଶ୍ଚର୍ଯ୍ୟ ମନେ କରିବେ । ଜଣେ ସିଦ୍ଧପୁରୁଷ କହୁଥିଲେ ଯେ ରାତି ୪ଟା ଅର୍ଥାତ୍ ବ୍ରାହ୍ମ ମୂହୂର୍ତ୍ତ ପୂର୍ବରୁ ସେ ଦେବାଦେବୀଙ୍କର ସ୍ନାନ ଦେଖିଛନ୍ତି ଏବଂ ଏହି ଖଣ୍ଡାଧାର ଜଳଭଣ୍ଡାର ମଧ୍ୟରେ ତର୍ପଣ ଶୁଣିବାକୁ ପାଇଛନ୍ତି । ସେହି ସିଦ୍ଧପୁରୁଷ ଦେବାଦେବୀଙ୍କର ସାନ୍ନିଧ୍ୟ ମଧ୍ୟ ଲାଭ କରିଛନ୍ତି ।

"ଯାହା ନ ଦେଖିବ ବେନି ନୟନେ
ପରତେ ନ ଯିବ ଗୁରୁ ବଚନେ ।"

ଏହି ପଦକୁ ପ୍ରତିପାଦନ କରି ଆଧୁନିକ ଜଗତରେ କେହି ଏହା ବିଶ୍ୱାସ କରି ପାରିବେ କି ନାହିଁ କିମ୍ବା ଏ କଥାରେ ଗୁରୁତ୍ୱ ଦେବେ କି ନାହିଁ ମୁଁ ଜାଣେନା; କିନ୍ତୁ ଏ ପ୍ରପାତର ନିମ୍ନଦେଶ ଏପରି କମନୀୟ ଯେ କେହି ଦର୍ଶକ ଦେଖିଲେ ସହଜରେ ଏ ସ୍ଥାନ ଛାଡ଼ିଯିବାକୁ ଇଚ୍ଛା କରିବ ନାହିଁ । ଏହାର ଜଳଭଣ୍ଡାର ଅତି ଗଭୀର । ସାଧାରଣ ଲୋକମାନଙ୍କ ପକ୍ଷରେ ମଧ୍ୟ ଏ ଜଳଭଣ୍ଡାରରେ ପଶି ଗାଧୋଇବା କଷ୍ଟସାଧ୍ୟ ହେବ । ଏହାର ଦୈର୍ଘ୍ୟ ଓ ପ୍ରସ୍ଥ ୧୦୦" x ୫୦" ଅଟେ । ଏହାକୁ କେହି ଥରେ ଦେଖିଲେ ସେ କେବେ ଭୁଲି ପାରିବ ନାହିଁ । ଗୋପବନ୍ଧୁଙ୍କ ଭାଷାରେ—

"ହାଣ୍ଡିଶାଳେ ଘୋଣା ଧାନ ବିଲେ ଚଷା
ଶୁଣେ ଉପେନ୍ଦ୍ର ସଙ୍ଗୀତ ।"

ମୋ ଭାଷାରେ— ହରିନାମ ଭଜି ସଂକୀର୍ତ୍ତିନ କରି
ଦେଖିଲେ ଏହି ପ୍ରପାତ
ପ୍ରାକୃତିକ ଗାଥା ଦେଖି ଦେହ ବ୍ୟଥା
ହାରିବେ ଗାଇ ନାମ ତ
ଅବଗୁଣୀ ହେବେ ହତ
ଗୁଣ ଦେଖି ଗୁଣୀ ଚକ୍ଷୁ କର୍ଣ୍ଣେ ଭଣି
ବଳେ ହୋଇବେ କୃପତ ।

ପ୍ରପାତର ମସ୍ତକ ଦେଶ କେବଳ ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ନୁହେଁ ସେଠାରେ କଦଳୀ, ପଣସ ଆଦି ଫଳବୃକ୍ଷ ମଧ୍ୟ ଭରି ରହିଅଛି । ଏହି ପ୍ରପାତଟି ଗୋଟିଏ ଆଦିବାସୀ ବହୁଳ ଅଞ୍ଚଳରେ ଅବସ୍ଥିତ । ଏହି ଆଦିବାସୀ ଅଞ୍ଚଳର ପ୍ରବୁଦ୍ଧ ଲୋକମାନଙ୍କଠାରୁ ଶୁଣିବାକୁ ମିଳେ ଯେ ଜଣେ ସାଧୁ ସମସ୍ତ ସମୟରେ ତଳକୁ ଆସି ଏମାନଙ୍କଠାରୁ ଖାଦ୍ୟ ପଦାର୍ଥ ସଂଗ୍ରହ କରି ସେହି ଉଖ ପାହାଡ଼ର ମଧ୍ୟ ଦେଶକୁ ଚାଲିଯାନ୍ତି । ସେ ସାଧୁ ଅନେକ ବର୍ଷ ଧରି ସେହିଠାରେ ହିଁ ବାସ କରୁଛନ୍ତି । ଦେଖିଥିବା ଲୋକମାନେ ତାଙ୍କର ବର୍ଷ କଳନା କରିପାରୁ ନାହାନ୍ତି । ସେ ଦେବାଦେବୀଙ୍କର ଜଳକ୍ରୀଡ଼ା ଖଣ୍ଡାଧାର ପ୍ରପାତରେ ଦେଖିବାର ସୁଯୋଗ ପାଇଛନ୍ତି ବୋଲି ଜାଦକଳା—ଖଣ୍ଡାଧାର ପାଦଦେଶର ଅତି ବୟସ୍କ ଲୋକ-ମାନଙ୍କଠାରୁ ଶୁଣିବାକୁ ମିଳେ । ଏବେ କିନ୍ତୁ ଏହି ପ୍ରପାତର ଜଳ ଏ ଅଞ୍ଚଳର କୃଷି କାର୍ଯ୍ୟରେ ନିୟୋଜିତ ହୋଇ ପାରୁଅଛି । ନିମ୍ନଗାମୀ ଜଳସ୍ରୋତର ଜଳ ବ୍ୟବହାର କରି ଆଦିବାସୀମାନେ ଉନ୍ନତ ଧରଣର ରବି ଫସଲ, ପନିପରିବା ଆମଦାନୀ କରି ଉପକୃତ ହେଉ ଅଛନ୍ତି । ଫଳରେ ପ୍ରପାତର ନିମ୍ନଭାଗ ଏ ଯୁଗରେ ଶସ୍ୟଶାମଳା ହୋଇ ଜନମନ ହରଣ କରିପାରୁଛି ।

କେନ୍ଦୁଝରରେ ଏଭଳି ଏକ ଚିରନ୍ତନ ଜଳପ୍ରପାତ କୌଣସି ବିଦ୍ୟୁତ୍ ସରବରାହ ପାଇଁ ନିୟୋଜିତ ହୋଇ ପାରିନାହିଁ । ଏହାର ପ୍ରକୃତ ଅନୁସନ୍ଧାନ ହୋଇ ପାରିଲେ ବୋଧହୁଏ ବିଦ୍ୟୁତ୍ ସରବରାହପୋଯୋଗୀ ହୋଇପାରନ୍ତା । ମୋର ଜୀବନକାଳ ମଧ୍ୟରେ ମୁଁ ଅନେକ ଦର୍ଶନୀୟ ସ୍ଥାନ ଦେଖିବାର ସୁଯୋଗ ପାଇଛି; କିନ୍ତୁ ଏହିଭଳି ଏକ ଶାନ୍ତିପୀଠ ଓ କମନୀୟ ସ୍ଥାନ କମ୍ ଦେଖିଛି । ପ୍ରତ୍ୟେକ ସ୍ଥାନର କିଛି ନା କିଛି ମହତ୍ତ୍ୱ ଥିବାବେଳେ ଖଣ୍ଡାଧାର ଅଙ୍ଗରେ

ଅଧିକ କମନୀୟତା ଦୃଷ୍ଟିଗୋଚର ହୁଏ । ସମୟେ ସମୟେ କେନ୍ଦୁଝର ଗଡ଼ରୁ କର୍ମଚାରୀମାନେ ଆସି ଏହି ପ୍ରପାତର ନିମ୍ନ ଦେଶରେ ଭୋଜି କରନ୍ତି ଏବଂ ସେମାନେ ଏହାର କମନୀୟତା ଦର୍ଶନ କରିବାର ସୁଯୋଗ ପାଇ ପାରନ୍ତି ।

ସୁଖର ବିଷୟ ଜିଲ୍ଲା ଗ୍ରାମ ଉନ୍ନୟନ ସଂସ୍ଥା ଏହି ପ୍ରପାତର ଜଳଭଣ୍ଡାରରୁ କେନାଲ ତିଆରି କରି ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଜଳ ଯୋଗାଇ ଉନ୍ନତ ଧରଣର ଚାଷ କରାଇ ବହୁ ଆଦିବାସୀମାନଙ୍କୁ ପନିପରିବା, ଧାନ ଓ ରବି ଫସଲ ପାଇଁ ସାହାଯ୍ୟ କରି ପାରିଲେଣି ।

## ପୋଡ଼ାସିଙ୍ଗିଡ଼ି—

ଆନନ୍ଦପୁର ଅଣୁ ଅଞ୍ଚଳର ପୋଡ଼ାସିଙ୍ଗିଡ଼ି ଗ୍ରାମ ତଥା ଜଙ୍ଗଲ ଭିତରେ ଜୈନ ଭଙ୍ଗା ପ୍ରଜା ମୂର୍ତ୍ତି ଏବେ ମଧ୍ୟ ବିରାଜମାନ । ଯୋଗୀଛିଦ ନାମକ ସ୍ଥାନରେ ହାଟଚଣ୍ଡୀ ନାମକ ଏକ ମୂର୍ତ୍ତି ବିଦ୍ୟମାନ ହୋଇ ଆଖପାଖ ଅଞ୍ଚଳର ଆଦିବାସୀମାନଙ୍କର ଦେବୀରୂପେ ପୂଜା ପାଉଛନ୍ତି ।

## ବୈଦାଖିଆ—

ଆନନ୍ଦପୁର ଅଣୁ ଅଞ୍ଚଳର ବୈଦାଖିଆ ବୋଉଲା ପାହାଡ଼ର ପାଦଦେଶରେ ଅବସ୍ଥିତ । ଏହି ଗ୍ରାମର ନିକଟବର୍ତ୍ତୀ ଜଙ୍ଗଲ ଭିତରେ ବୌଦ୍ଧ ମୂର୍ତ୍ତି ତଥା ବିଗ୍ରହ ଏଣେତେଣେ ପଡ଼ିରହିଛି । ସେଥିମଧ୍ୟରୁ କେତେଗୁଡ଼ିଏ ଉଦ୍ଧାର ହୋଇ ଆମର ଜାତୀୟ ସରକାରଙ୍କ ମିଉଜିୟମରେ ସଂରକ୍ଷିତ । ଏହି ସ୍ଥାନର ମହତ୍ତ୍ୱ ସନ୍ଥ ଭଞ୍ଜଙ୍କ ରାଜତ୍ୱ କାଳରେ ଉପଲବ୍ଧି କରାଯାଉଥିଲା । ବୋଉଲା ପାହାଡ଼ରୁ କ୍ରୋମାଇଟି ଓ ଅଭ୍ରକ ଉତ୍ପାଦନ ହୋଇ ରପ୍ତାନି ହେଉଛି ।

## ଲୁହାଖଣି—

ଗନ୍ଧମାଦନ ଓ ଠାକୁରାଣୀ ପର୍ବତର ନିକଟ ତଥା ପାଦଦେଶ ଲୌହଖଣିରୁ ଲୁହା ନିଷ୍ପାଦନ ହୋଇ ବିଦେଶକୁ ରପ୍ତାନି କରାଯାଉଛି । ଖଣି ଅଞ୍ଚଳମାନଙ୍କରେ ବହୁ ଆଦିବାସୀ ଦୈନିକ ଶ୍ରମିକ ଭାବରେ ଖଟି ନିଜ ନିଜର ପରିବାର ଚଳାଇ ଆସୁଛନ୍ତି ।



# ସନ୍ଥେଇହୁଡ଼

ବହୁ ପ୍ରାଚୀନ କାଳର କଥା । ଯେତେବେଳେ ବୌଦ୍ଧଧର୍ମାବଲମ୍ବୀ ପଦ୍ମସମ୍ଭବ, ଦଲେଇଲାମା ଓ ଲାମାଇନାମା କେନ୍ଦୁଝର ତଥା ଯମଗରର କ୍ଷେତ୍ରର କେତେକ ସ୍ଥାନରେ ବୌଦ୍ଧ ଧର୍ମର ପ୍ରସାର କରି ବୌଦ୍ଧକୀର୍ତ୍ତି ରଖି ଯାଇଥିଲେ ସେତେବେଳେ ବୌଦ୍ଧ କୀର୍ତ୍ତି କେବଳ ସୀତାବଞ୍ଜରେ ସୀମିତ ହୋଇ ନ ଥିଲା । ଲାମାଇଜମ୍ ଓ ଦଲାଇଲାମାଙ୍କ ଇଂରାଜୀ ଭାଷା ଲିଖିତ ପୁସ୍ତକରେ ବର୍ଣ୍ଣିତ । ସୀତାମାରୁ ସୀତାବଞ୍ଜ, ବୌଦ୍ଧଖିଅରୁ ବୈଦାଖିଆ ଭଳି କେତେକ ସ୍ଥାନରେ ଏଯାଏ ଗଚ୍ଛିତ ଅଛି । କେନ୍ଦୁଝରର ପଶ୍ଚିମ ଦିଗରେ କେନ୍ଦୁଝରଠାରୁ ୯ ମାଇଲ ଦୂର ପଳାଶପଙ୍ଗା ଗ୍ରାମ ନିକଟରେ ଗୋଟିଏ ଶ୍ରେଷ୍ଠ ହୁଡ଼ି ବିଦ୍ୟମାନ—ସେହି ହୁଡ଼ି କେନ୍ଦୁଝରର ଜ୍ୟୋତି ଭଞ୍ଜଙ୍କଠାରୁ ଅଷ୍ଟମ ରାଜା ନାମାନୁସାରେ ସନ୍ଥେଇ ହୁଡ଼ି ନାମରେ ନାମିତ ହୋଇଅଛି । କେନ୍ଦୁଝରର ଅଷ୍ଟମ ରାଜା ସନ୍ଥ ଭଞ୍ଜ ଏହି ହୁଡ଼ିକୁ ଏକ ସାଧନାପୀଠ ରୂପେ ପରିଣତ କରାଇ ସେଠାରେ ସେ ସାଧନାରତ ରହୁଥିଲେ । ସେ ମହୋଦୟ କେନ୍ଦୁଝର ରାଜ୍ୟରେ ୧୨୩୬ ଖ୍ରୀ: ଅ: ପର୍ଯ୍ୟନ୍ତ ରାଜୁତି କରିଥିଲେ ।

ତାଙ୍କରି ରାଜତ୍ୱ ଭିତରେ ସେ ଅସବର୍ଣ୍ଣ ବିବାହ କରି ସେ ଯୁଗରେ ଜଣେ ମହାନ୍ ମାନବ ହିସାବରେ ପରିଚିତ ହୋଇଥିଲେ । ପଦ୍ମସମ୍ଭବ (ବୌଦ୍ଧଗୁରୁ) ମଧ୍ୟ ମନ୍ଦରବାକ୍ସ ବିବାହ କରି ଏହି ସନ୍ଥେଇହୁଡ଼ି ସାଧନା ପୀଠରେ କେତେକ ସମୟ ଯାପନ କରିବା ପରେ ସ୍ତ୍ରୀଜନାର ଉନ୍ନତିକୁ ଧର୍ମର ପ୍ରସାରରେ ସାଧନା କରୁଥିଲେ । ତାଙ୍କର ସହକର୍ମୀ ଲାମାଇନାମା ଅନେକ ଦିନ ଧରି ସନ୍ଥ ଭଞ୍ଜଙ୍କ ସାଙ୍ଗରେ ଏହି ସନ୍ଥେଇହୁଡ଼ିରେ ସାଧନା କରୁଥିଲେ । ବୌଦ୍ଧ ପ୍ରବ୍ରଜକ ପଦ୍ମସମ୍ଭବଙ୍କ ନାମାନୁଯାୟୀ ସନ୍ଥେଇହୁଡ଼ି ନିକଟ ପଦ୍ମପୁର ଗ୍ରାମ ଅଦ୍ୟାବଧି ପରିଚିତ । ସନ୍ଥ ଭଞ୍ଜ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିଲେ ।

ସେ ମଧ୍ୟ ସେ ଯୁଗରେ ଜଣେ ତାନ୍ତ୍ରିକ ରାଜା ହିସାବରେ ପରିଚିତ ହୋଇ-ଥିଲେ । ତାଙ୍କର ଅଳ୍ପକାଳ ରାଜତ୍ୱ ସମୟରେ ସେ ଢେଙ୍କାନାଳ ରାଜ୍ୟରୁ କେତେ ଖଣ୍ଡ ଗ୍ରାମ ଜୟ କରି କେନ୍ଦୁଝରରେ ମିଶାଇ ପାରିଥିଲେ । ସେ ଜଣେ ସାଂସ୍କୃତିକ ପଣ୍ଡିତ ଏବଂ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଭୂମ୍ପୂରୂପା ରୂପେ ପରିଚିତ ହୋଇଥିଲେ । ସନ୍ଥେଇଦୁହୁଡ଼ର ଆଖପାଖ ୪୦ଖଣ୍ଡ ଗ୍ରାମର ଲୋକମାନେ ଆଜି ସୁଦ୍ଧା ସନ୍ଥେଇଦୁହୁଡରେ ଗୋଟିଏ ବୌଦ୍ଧ କୀର୍ତ୍ତିକୁ ଠାକୁରାଣୀ ରୂପେ ପୂଜା କରି ଆସୁଛନ୍ତି ।

ସାଧାରଣତଃ ବୌଦ୍ଧ ଧର୍ମର ଶେଷ ପର୍ଯ୍ୟାୟରେ ଶିବ ଓ ଶକ୍ତି ଉପାସକମାନେ ଭାରତ ବର୍ଷର ଅଧିକାଂଶ ରାଜ୍ୟରେ ଶକ୍ତି ଓ ଶିବଙ୍କର ପୂଜା କରିବାର ମଧ୍ୟ ପ୍ରମାଣ ମିଳେ । ଲାମାଇଜମ୍‌ଙ୍କ ଲେଖାରୁ ଜଣାପଡ଼େ ବୌଦ୍ଧ ଯୁଗର ଶେଷ ପାଦରେ ସେମାନେ ଶକ୍ତିର ଉପାସକ ହୋଇ ଶକ୍ତିପୂଜା କରୁ-ଥିଲେ । ସନ୍ଥେଇଦୁହୁଡ ତାହାର ଜ୍ୱଳନ୍ତ ପ୍ରମାଣ ଅଟେ । ଏହି ସନ୍ଥେଇଦୁହୁଡ ଆୟତନରେ ଶ୍ରେଷ୍ଠ ହେଲେ ମଧ୍ୟ କ୍ଷୁଦ୍ର ପର୍ବର ବିଷ ଉତ୍କଣ୍ଠତର ପରିପ୍ରେକ୍ଷୀର ମହାମ୍ୟରେ ଅତି ଉଚ୍ଚ ସ୍ଥାନରେ ବିଦ୍ୟମାନ । ଏହି ଦୁହ ଉପରେ ପଡ଼ିଥିବା ଅକର୍ମ ଶିଳା ପଥରର ମଧ୍ୟ ମହତ୍ତ୍ୱ ପ୍ରତିପାଦିତ ହୁଏ । ଏହି ପଥରର ବିଶେଷତ୍ୱ ଏହି ଯେ ଗୋଟିଏ ପଥରରେ ଅନ୍ୟ ଗୋଟିଏ ପଥରର ସଂଘର୍ଷରେ କାଂସ୍ୟ ଶବ୍ଦ ପ୍ରତୀୟମାନ ହୁଏ । ପୁରାତନ ଲୋକ ମତରେ ଏହି ଦୁହ ଉପରେ ସନ୍ଥେଶ୍ୱର ମହାଦେବ ମଣ୍ଡନ କରୁଥିଲେ । ଏ ସ୍ଥାନରେ ପ୍ରତିବର୍ଷ ଲୋକମାନେ ମାନସିକ ବଳିଦାନ କରି ଫଳପ୍ରଦ ହେଉଥିଲେ । ଏଇ ଦୁହଡ଼ରେ ଥିବା ପୋଖରୀ ମଧ୍ୟରୁ ଲୋକମାନେ ଖାଲି କଂସାବାସନ ନୁହେଁ, ନିଜର ଆବଶ୍ୟକ ଅନୁଯାୟୀ ବିବାହ, ବ୍ରତ ଉପଲକ୍ଷେ ଭୋଜିଭାତର ସମସ୍ତ ସରଞ୍ଜାମ ମଧ୍ୟ ପାଇ ପାରୁଥିଲେ । ବ୍ୟକ୍ତିବିଶେଷର ଅନୁରୋଧକ୍ରମେ ରାତି ପାହିଲା ବେଳକୁ ଚାଉଳ ପରିବା ବି ଧୂଆ ହୋଇଯାଇ ପାରୁଥିଲା । ବୟସ୍କ ଲୋକଙ୍କଠାରୁ ଖବର ମିଳେ ଏ ଦୁହଡ଼ରେ ଏବେ ମଧ୍ୟ ଗୋଟିଏ ବହୁ ବୟସ୍କ ବ୍ୟାଘ୍ର ଜୀବିତ । ଦୁହ ଉପରେ କୌଣସି ଦେବାଦେବୀଙ୍କ ମନ୍ଦିର ନ ଥିଲେ ମଧ୍ୟ ପୋଖରୀ ମୁଣ୍ଡରେ ଗୋଟିଏ ଗଛ ମୂଳରେ ଏକ ବୌଦ୍ଧ ମୂର୍ତ୍ତିକୁ ଠାକୁରାଣୀ ହିସାବରେ ପୂଜା କରି ଶ୍ରାବଣ ମାସର ଆରମ୍ଭରେ ଯାତ୍ରା ଦେଇ ଆଖପାଖ ୪୦ଖଣ୍ଡ ମୌଜାରେ ଲୋକମାନେ ଧାନ ଫସଲ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଫସଲ ନିର୍ବିଘ୍ନରେ ପାଇ-ପାରୁଛନ୍ତି; କିନ୍ତୁ ଏ ଜଙ୍ଗଲରେ ରହିଥିବା ବାଘ କାହାର କ୍ଷତି କରେନାହିଁ

କଥା ଜନମୁଖରେ ପ୍ରଚଳିତ ହୁଏ । ଏହି ସନ୍ଥେଇହୁଡ଼ଠାରୁ (ପାଳଲହଡ଼ା) ପର୍ଯ୍ୟନ୍ତ ଏକ ଗୁପ୍ତ ସୁଡ଼ଙ୍ଗ ଅଛି—ସେହି ସୁଡ଼ଙ୍ଗ ଭିତରେ ଏବେ ମଧ୍ୟ ଅଗଣିତ ସାପ ଭର୍ତ୍ତି ରହିଛନ୍ତି ବୋଲି ଲୋକଙ୍କର ବିଶ୍ୱାସ; କିନ୍ତୁ ଅଶ୍ଚର୍ଯ୍ୟର ବିଷୟ ଲୋକମାନେ ହାତରେ ଧରି ଏ ସାପମାନଙ୍କୁ ଆଡ଼େଇ ଦେଇ ଚାଲି ଯାଉଥିଲେ । ସେମାନେ କାହାରି କିଛି ଅନିଷ୍ଟ କରୁ ନ ଥିଲେ । ଏ ହୁଡ଼ରେ ବେଳେବେଳେ ସାଧୁ ସନ୍ନ୍ୟାସୀ ଅସ୍ୱାଭାବିକ ଭାବରେ ଦେଖାଦେଇ ପୁଣି କେଉଁଆଡ଼େ ଅଦୃଶ୍ୟ ହୋଇଯାନ୍ତି କେହି ଜାଣି ପାରନ୍ତି ନାହିଁ । ସେ ସମୟର ରାଜାମାନେ ଏହି ସୁଡ଼ଙ୍ଗ ଦେଇ ଗନ୍ଧମାଦନ ପର୍ବତ ଯାଇ ଶତ୍ରୁ କବଳରୁ ରକ୍ଷା ପାଇ ପାରୁଥିଲେ ବୋଲି କିମ୍ବଦନ୍ତୀ ଅଛି ।

ଏହି ହୁଡ଼ରେ ସାଧନା କରୁଥିବା କେନ୍ଦୁଝରର ରାଜା ସନ୍ଥ ଭଞ୍ଜ ଗୋଟିଏ Miracle କହିଲେ ଅତ୍ୟୁକ୍ତି ହେବନାହିଁ । ଏ ରାଜା ମନ୍ତ୍ର ମାଧ୍ୟମରେ କେତେକ ଗ୍ରାମ ତଥା ରାଜ୍ୟ ଜୟ କରିଥିବାର ପ୍ରମାଣ ମିଳେ । ସେହି ସନ୍ଥ ଭଞ୍ଜ ନାଳନ୍ଦା ବିଶ୍ୱବିଦ୍ୟାଳୟରୁ ସେ ସେଯୁଗର ଜଣେ ପଣ୍ଡିତ ହିସାବରେ ଭୂଷୁକୁପା ପଦରେ ଭୂଷିତ ହୋଇ ସାରା ଉତ୍କଳ ମାଟିରେ ପରିଚିତ ଥିଲେ; କିନ୍ତୁ ଶୁଣିବାକୁ ମିଳେ ଏବଂ ଇତିହାସରୁ ମଧ୍ୟ ମିଳେ ସେ ଜଣେ ବିଜ୍ଞ ଓ ପଣ୍ଡିତ; କିନ୍ତୁ ତାଙ୍କର ଜ୍ଞାନ ଓ ଗବେଷଣା ମଠରେ ବୃତ୍ତି ବ୍ୟଙ୍ଗ ସାହିତ୍ୟରେ ପାରଦର୍ଶିତା ଲାଭ କରିଥିଲେ । ସେ କେନ୍ଦୁଝର ରାଜବଂଶରେ ଜଣେ ଗୁଣୀ, ମେଧାବୀ, ପଣ୍ଡିତ, ବୀର, ତର୍କ ବାଗୀଶ ଓ ସୁଶାସକ ଥିଲେ । ସେ ବୌଦ୍ଧ ଧର୍ମର ପ୍ରଚାରକ ଓ ବିଜ୍ଞଜନ ହିସାବରେ ଆଦର୍ଶର ନିଦର୍ଶନ ଅଟନ୍ତି । ଏହି ସନ୍ଥେଇହୁଡ଼ରେ ସେ ଜଳେ ସିଦ୍ଧିଲାଭ କରି ତାଙ୍କ ନାମାନୁସାରେ ହୁଡ଼କୁ ନାମିତ କରି ଯାଇଛନ୍ତି ।

ଏ ଯୁଗରେ ଅନେକ ଗବେଷଣାରତ ବିଦ୍ୱାନ ଲୋକମାନେ ମଧ୍ୟ ଏହି ସନ୍ଥ ଭଞ୍ଜଙ୍କୁ କୋହାର ରାଜ୍ୟର ଶାନ୍ତିଦେବ ଭାବେ ସୂଚାଇ ଯାଇଥିବା ମନେହୁଏ । ପ୍ରମାଣ ସ୍ୱରୂପ ଚର୍ଯ୍ୟାଗୀତିକାରେ ଡାକ୍ତର ଶ୍ରୀ ଖଗେଶ୍ୱର ମହାପାତ୍ର ଶାନ୍ତିଦେବଙ୍କ ବିଷୟରେ ତାଙ୍କ ପୁସ୍ତକରେ ଉଲ୍ଲେଖ କରିଛନ୍ତି । ସ୍ୱର୍ଗତ ଡାକ୍ତର ନବୀନ କୁମାର ସାହୁ-ସମ୍ବଲପୁର, ଛାଇସ୍ ଚାନ୍ସେଲର୍ଙ୍କ ସାଙ୍ଗରେ ଥରେ ସାକ୍ଷାତକାରରେ ସେ କେନ୍ଦୁଝରର ଅଷ୍ଟମ ରାଜା ସନ୍ଥ ଭଞ୍ଜ ସେହି ଶାନ୍ତିଦେବ ନୁହନ୍ତି ବୋଲି ଗବେଷଣାରତ; କିନ୍ତୁ ଇତିହାସ କହେ ସନ୍ଥ ଭଞ୍ଜ ଜଣେ ବୌଦ୍ଧ ଓ ବୌଦ୍ଧଧର୍ମ ଯାଜକ ପଦ୍ମସମ୍ଭବଙ୍କ ଶିଷ୍ୟ ଓ ସନ୍ଥେଇହୁଡ଼ର ସାଧକ ତଥା କୋହାର ରାଜ୍ୟର ରାଜକୁମାର ।

●

# ଚନ୍ଦତୀର୍ଥ

କେନ୍ଦୁଝର ଜିଲାସ୍ଥ ଆନନ୍ଦପୁର ସବ୍‌ଡିଭିଜନ ଅନ୍ତର୍ଗତ ଭାଠକଟା ଏକ ଶ୍ରେଷ୍ଠ ଗ୍ରାମ । ଏହି ଗ୍ରାମ କନ୍ଦ୍ରୁ ବଉଳା ପର୍ବତର କିୟଦ୍ ଅଂଶ ଦ୍ୱାରା ପରିବେଷ୍ଟିତ । ଏହି ପର୍ବତର ନିମ୍ନ ବା ଶେଷାଂଶରେ ଚନ୍ଦତୀର୍ଥ ବିଦ୍ୟମାନ । ଏ ତୀର୍ଥରେ ମଧ୍ୟ ବର୍ଷକରେ ଥରେ ଯାତ୍ରା ହୁଏ । ଏହି ଚନ୍ଦତୀର୍ଥର ବିଶେଷତ୍ୱ ବହୁ ଯୁଗ ପୂର୍ବେ କୌଣସି ଏକ ରାକ୍ଷସ କାହାଦ୍ୱାରା ନିହତ ହୋଇ ପଡିଥିଲା । କାଳକ୍ରମେ ତାହାର ପାଟିରୁ ଗୋଟିଏ ଝରଣା ନିଃସୃତ ହୋଇ ଏ ଯୁଗରେ ଜନମୁଖରେ ପରିଚିତ । ଯେଉଁଠାରେ ଚନ୍ଦତୀର୍ଥର ଯାତ୍ରା ହୁଏ, ଏହି ପାହାଡ଼ର ଶେଷପାଦରେ ଠାଏ ଠାଏ ଝରଣା ଗର୍ଭରେ ଗୋଟିଏ ଦୁଇଟି ଜଳକୁଣ୍ଡ ବିଦ୍ୟମାନ । ସୌଭାଗ୍ୟକ୍ରମେ ଏହି କୁଣ୍ଡ ମୋର ଆନନ୍ଦପୁରରେ ରହିବା ସମୟରେ ଶ୍ରୀଯୁକ୍ତ କେ. ଶ୍ରୀନିବାସନ୍, ଆଇ. ଏ. ଏସ୍. ପୂର୍ବତନ ଅଣୁବିଭାଗ ଅଧିକାରୀଙ୍କ ସାଙ୍ଗରେ ଗୋଟାଏ ଦିନ ଗସ୍ତରେ ଦେଖିବାର ସୁଯୋଗ ପାଇଥିଲି ।

ଏ ସ୍ଥାନଟି ଘଞ୍ଚଜଙ୍ଗଲ ଘେରା ଏକ ଉଚ୍ଚ ସ୍ଥାନ, ଯେଉଁଠାରେ ଅସୁରର ମୁଣ୍ଡ ସଦୃଶ ଗୋଟିଏ ବଡ଼ ପଥର ପରିଦୃଷ୍ଟ । ଏହି ପଥରର ମଧ୍ୟ ଭାଗରେ ଝରଜଳର ନିଃସୃତ । ଆଶ୍ଚର୍ଯ୍ୟର ବିଷୟ ଏହି ଝର ଗର୍ଭରେ ଥିବା କୁଣ୍ଡଗୁଡିକ ଶ୍ରେଷ୍ଠ ବଡ଼ ମାଛଙ୍କ ଦ୍ୱାରା ପରିପୂର୍ଣ୍ଣ । ଯେଉଁ ମାଛର ରୂପ ବର୍ଣ୍ଣନାତୀତ । କାହୁଅ ଜାଗା ନ ହେଲେ ବି ଧଥୁରିଆ ଜାଗା ମଧ୍ୟ ନୁହେଁ । ତଥାପି ମାଛଗୁଡିକର ରଙ୍ଗ ଲାଲ, ନୀଳ, ହଳଦିଆ, ଧବଳ, ସବୁଜ ବର୍ଣ୍ଣ ଇତ୍ୟାଦି । ସେହି ଝରଣା ନିକଟରେ ଥିବା ଗ୍ରାମବାସୀଙ୍କ ସାଙ୍ଗରେ ମୁଁ ଓ ସେ ବେଳର ଅଣୁ ବିଭାଗର ଅଧିକାରୀ ଆଳାପ କରି ଜାଣିଥିଲୁ ଯେ ଏହି ମାଛମାନଙ୍କୁ କେହି ଲୋକ ଧରି ନେବାର ବା ଖାଇବାର କେହି ଦେଖି ନାହାନ୍ତି । ଏହି ମାଛଗୁଡିକ ଏତେ କୌତୁକପୂର୍ଣ୍ଣ ଯେ କେହି ଦର୍ଶକ ଦେଖିଲେ ତାଙ୍କର ଆକର୍ଷଣ ଦର୍ଶକଙ୍କର ମନ ଧ୍ୟାନ ଆନୟନ କରେ । ଶୁଣିବାକୁ ପାଇଲୁ ଏହି ସ୍ଥାନରେ ସିଦ୍ଧ ପୁରୁଷ ଅନେକ ଦିନ ଧରି

ଧ୍ୟାନରତ ଥିଲେ  ଏବେ ମଧ୍ୟ ଜଣେ ସନ୍ନ୍ୟାସୀ ଏ ସ୍ଥାନରେ  ବାସ କରନ୍ତି । ଏ ସ୍ଥାନ ଆନନ୍ଦପୁରଠାରୁ ମାତ୍ର ୧୦ ମାଇଲ  ଦୂର  । ଏହା  ଏକ  ବନକୁସୁମଭରା ହୃଦୟସ୍ପର୍ଶୀ ସ୍ଥାନ । ଏହା ଦର୍ଶନ କଲେ ବାସ୍ତବିକ୍ ଯେ କୌଣସି ମଣିଷ ନିଜର ନିଜତ୍ୱ ଭୁଲିଯାଇ ସେହି ଶ୍ରେଷ୍ଠବଡ଼  ରଙ୍ଗରଙ୍ଗିଆ  ମାଛ ସାଙ୍ଗରେ  ଖେଳିବାକୁ କୁଣ୍ଠାବୋଧ କରିବନି  ।  ବଡ଼ ଆଶ୍ଚର୍ଯ୍ୟର ବିଷୟ ବଡ଼ ବର୍ଷା ହେଲେ ମଧ୍ୟ ଏହି ମାଛଗୁଡ଼ିକ ପାଣି ସୁଅରେ ଭାସି ଯାଆନ୍ତି ନାହିଁ ।



# କାଞ୍ଜିପାଣି

—୧—

ପ୍ରାକୃତିକ ସୌନ୍ଦର୍ଯ୍ୟ ସମ୍ପନ୍ନା କେନ୍ଦୁଝର କୋଳରେ ଆଜି ଗୋଟିଏ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କରିବାର ପ୍ରବଳ ଇଚ୍ଛାକୁ ବାଦଦେଇ ନ ପାରିବାରୁ ରୂପ ଦେବାକୁ ଲେଖିଲି । ଏହା ରୂପ-ରସ-ଛନ୍ଦ ଭରା ଏକ ବନରାଜ୍ୟ । ଏହି ସ୍ଥାନର ବିଶେଷ ପ୍ରାଧାନ୍ୟତା ନ ଥିଲେ ମଧ୍ୟ କେନ୍ଦୁଝରର ଗୋଟିଏ ଉଚ୍ଚକୋଟୀର ବନରାଜ୍ୟ । ଏହା କାଞ୍ଜିପାଣି ନାମରେ ନାମିତ ।

ଲେଖିବା ବାହୁଲ୍ୟ ମାତ୍ର—ଏହି ସ୍ଥାନରେ ସ୍ୱବନାର ସୁଖ ନେଇ କେହି ଜଣେ ଗୋଟିଏ ରାତି କଟାଇ ପାରିଲେ ସେ ନିଜକୁ ଭୁଲିଯାଇ ଏଇ କାଞ୍ଜିପାଣି ବନରାଜ୍ୟ ଭିତରେ ନିଜକୁ ହଜାଇ ଦେବ । ସେହି କାଞ୍ଜିପାଣି ବଙ୍ଗୋପସାଗର ପତନଠାରୁ ୨୨୩୭ ଫୁଟ ଉଚ୍ଚରେ ଅବସ୍ଥିତ । ଏହା ଗନ୍ଧମାଦନ ପର୍ବତର ମଧ୍ୟସ୍ଥଳ । କେହି କେହି କହନ୍ତି ଏହା ଗୋନାସିକା ଓ ଗନ୍ଧମାଦନ ପର୍ବତର ପାଦଦେଶ ବା ମାଙ୍କଡ଼ ନଖ ପାହାଡ଼ ଖଣ୍ଡ । ଏହା କେନ୍ଦୁଝରଠାରୁ ୧୭ ମାଇଲ ୨୭ କି·ମି· ଦୂରରେ ଅବସ୍ଥିତ । ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ଏକାନ୍ତ ଆବଶ୍ୟକ ମନେକରି ଏହାକୁ ରୂପ ଦେବାକୁ ଅଗ୍ରସର ହେଲି ।

ଦୁଇଟି ପର୍ବତର ମଧ୍ୟ ଦେଶରେ ୨୦୦ ଫୁଟ ଲମ୍ବ ୧୩୫ ଫୁଟ ଉଚ୍ଚତାର ଗୋଟିଏ ଗହ୍ୱର ଅଛି । ଏହାର ଭିତରେ ଅନେକ ପ୍ରକାରର ବନ୍ୟ ସମ୍ପଦ ଭରି ରହିଛି । ଏହାର ଦୁଇ ଧାର ଏପରି ସ୍ତରରେ ଗଠିତ ଯେ ଏହାକୁ କେହି ଜଣେ ଦିଗନ୍ତ ବିସ୍ତାର ସ୍ୱପ୍ନପୁରୀ ବୋଲି ବର୍ଣ୍ଣନା କରିବାକୁ ଦ୍ୱିଧା ମନେ କରିବ ନାହିଁ । ନାନା ଜାତିର ଶ୍ରେଷ୍ଠ ବଡ଼ ବୃକ୍ଷ ନତମସ୍ତକରେ ପଥିକମାନଙ୍କୁ ସ୍ୱାଗତ ଜଣାଏ । ଏ ପଥର ପଥିକ ମାତ୍ର ସେହି ତଥାକଥିତ ଋଷିପୁତ୍ର ଜୁଆଙ୍ଗ ଓ ଭୂୟାଁଶ୍ରେଣୀର ଲୋକମାନେ । ଯେଉଁମାନେ ବହୁ ବର୍ଷ ଧରି ଏହି ସ୍ଥାନରେ ବସବାସ କରୁଛନ୍ତି ।

ଏମାନଙ୍କର ଗ୍ରାମର ନାମ ତଳ କାନ୍ତିପାଣି, ଉପର କାନ୍ତିପାଣି ଇତ୍ୟାଦି । ଏହାର ଉପଖଣ୍ଡ ମଧ୍ୟରେ କାନ୍ତିପାଣି ଅବସ୍ଥିତ । ଛଅ ନମ୍ବର ଜାତୀୟ ରାଜପଥ କଲିକତା ଅଞ୍ଚଳରୁ ଆସି ସମ୍ବଲପୁର ଦେଇ ଭାରତର ବହୁ ବିଶିଷ୍ଟ ସହର ବମ୍ବେ ଆଡ଼କୁ ଗତି କରିଛି । ଏହି ଜାତୀୟ ରାଜପଥ ହେବା ପୂର୍ବରୁ ଏହି ରାସ୍ତା ଦେଇ ଡେଲକୋଇ ବାଟରେ ସମ୍ବଲପୁରକୁ ଯୋଗ କରୁଥିଲା । ଏହା ପୂର୍ବରୁ ଅଙ୍କାବଙ୍କା ଘାଟୀ ରାସ୍ତାରେ ପରିଚିତ ଥିଲା ।

ଏହି ସ୍ଥାନରେ ଖରାଦିନରେ ଖୁବ୍ ଗରମ ଓ ଶୀତ ଦିନରେ ଅତ୍ୟଧିକ ଶୀତ ଅନୁଭୂତ ହୁଏ । ଏହି କାନ୍ତିପାଣି ଅଞ୍ଚଳ ତଥା ପାର୍ବତ୍ୟ ଜାଗାଟି ଅଉ କେତୋଟି ଗ୍ରେଷ୍ଠ ବଡ଼ ଆଦିବାସୀ ଗ୍ରାମ ଦ୍ୱାରା ପରିବେଷ୍ଟିତ । ଏଠାରେ କୌଣସି ଦେବାଦେବୀଙ୍କର ମନ୍ଦିର ନାହିଁ । ଏ ଗ୍ରାମରେ ବହୁ ପୁରୁଣା କାଳରେ ଶୀତ ଦିନରେ ରାଜାଙ୍କ ଜଣେ ଚହଡ଼ (ଅଣ ଅଦିବାସୀ) କାନ୍ତି ଚିଆରି କରି ଦେଇଥିବାରୁ ଏହା କାନ୍ତିପାଣି ନାମରେ ନାମିତ । କାନ୍ତିପାଣିର ନିମ୍ନ ଦେଶରେ ଓରିଆ ଗ୍ରାମରେ ତାରିଣୀ ଠାକୁରାଣୀ ଗୋଟିଏ ଗଛ ମୂଳରେ ବିଦ୍ୟମାନ । ଏହାଙ୍କୁ ଜଣେ ଯନ୍ତ୍ରୀ ଏଇଠାରେ ହିଁ ସ୍ଥାପନା କରି ଯାଇଛନ୍ତି । ଏ ଯୁଗରେ ମଧ୍ୟ ଏଠାକାର ବାସିନ୍ଦାମାନେ ଠାକୁରାଣୀଙ୍କ ନିକଟରେ ମଣିଷ ବଳି ଦେଉଥିଲେ; କିନ୍ତୁ ୧୯ ବର୍ଷ ହେଲା ଏ ବଳିପ୍ରଥା ବନ୍ଦ ହୋଇଯାଇଛି ।

ଏହି ସ୍ଥାନରେ ବର୍ଷା ଦିନରେ ଅହୋରାତ୍ର ବର୍ଷା ଲାଗି ରହିଥିବା ଭଳି ଅନୁଭୂତ ହୁଏ । ଆସାମର ଚେରାପୁଞ୍ଜି ସଦୃଶ ଏ ସ୍ଥାନରେ ବର୍ଷାକାଳର ସବୁ ସମୟରେ ବର୍ଷା ଦେଖା ଯାଇଥାଏ । ଏହି କାନ୍ତିପାଣିର କମନୀୟ ଦୃଶ୍ୟ ମୁଁ ସ୍ୱ-ଚକ୍ଷୁରେ ଦେଖି ପାରିଛି । ବର୍ଷା ଋତୁର ଆରମ୍ଭରେ ବର୍ଷା ଏମିତି ଭାବରେ ଲାଗି ରହିଥାଏ ଯେ ଏ ସ୍ଥାନରେ ଦିନରାତିର ପ୍ରଭେଦ ବାରି ହୁଏନାହିଁ । ବର୍ଷାର ଅବିଶ୍ରାମ ପ୍ରବାହ ବନ୍ଦ ହେଲେ ମଧ୍ୟ ସୂର୍ଯ୍ୟଙ୍କର କିରଣ ଏହି ସଘନ ଜଙ୍ଗଲ ଭିତରେ ଆକାଶରେ ଅଦୃଶ୍ୟ ହୁଅନ୍ତି । ଖାଲି ସେତିକି ନୁହେଁ ଖରାଦିନରେ ବହୁତ ଗରମ ଅନୁଭୂତ ହେଉଥିଲେ ମଧ୍ୟ ରାତିରେ ଖୁବ୍ ଶୀଘ୍ର ଥଣ୍ଡା ଅନୁଭୂତ ହୁଏ । ଏହାର ପାଦଦେଶରେ ସରକାରଙ୍କ କୃଷି ବିଭାଗରୁ ଗୋଟିଏ କୃଷି ଫାର୍ମ ବିଦ୍ୟମାନ । ଫାର୍ମ ଭିତର ଦେଇ ଗୋଟିଏ ଝରଣା ବହିଯାଉଛି । ଏଠାରେ ମିଳିବା ଫଳ ଭିତରେ ଲେମ୍ବୁ, କମଳା, ପିଜୁଳି ସୁସ୍ୱାଦୁ । ଏହାର ଆଖପାଖ ଗ୍ରାମମାନଙ୍କରେ ମଧ୍ୟ ଭଲ ଆମ୍ବ, ପଣସ ପ୍ରଚୁର ପରିମାଣରେ ମିଳେ । ବର୍ଷା ଓ ଶୀତ ଦିନରେ ଏହାର କମନୀୟ ଦୃଶ୍ୟ ହୃଦୟସ୍ପର୍ଶୀ । ଏଠିକାର ଡାକବଙ୍ଗଳାରେ ରହି ଏହାର

କମନୀୟ ଦୃଶ୍ୟ ଦର୍ଶନ କଲେ ସଂସାରର ସମସ୍ତ ମାୟା ମମତା ଭୁଲାଇ ଦେଇ ଏହି ପର୍ବତ ଶ୍ରେଣୀରେ ନିଜକୁ ହଜାଇ ଦେବାକୁ ଦର୍ଶକମାନେ କୁଣ୍ଠାବୋଧ କରିବେନି ।

ମୋ ଭଳି ଜଣେ ଅରସିକ ଯଦି ଏହାକୁ ରୂପ ଦେଇଥିଲି ବନଦେବୀଙ୍କ ଆବିର୍ଭାବରେ, ବର୍ଷାର ଆଗମନରେ, କେକାକେକୀଙ୍କର ନୃତ୍ୟ ସାଙ୍ଗରେ ତାଙ୍କର କଣ୍ଠ ନିଃସୃତ ଡାକ ବା ସ୍ୱାଗତିକା ବାସ୍ତବିକ ଚିତ୍ତାକର୍ଷକ । ଏହି ପାର୍ବତ୍ୟ ଅଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରନ୍ତି ଆମର ତଥାକଥିତ ଆର୍ଯ୍ୟପୁତ୍ର ଜୁଆଙ୍ଗ ଓ ଜୁଆଙ୍ଗୁଣୀମାନେ । ପହିଲି ଆଷାଢ଼ର ଅନବରତ ବର୍ଷା ଭିତରେ ମଣ୍ଡପର ମଧ୍ୟରେ ଚାଙ୍ଗୁ ନୃତ୍ୟରେ ଏମାନେ ନିଜକୁ ହଜାଇ ଦିଅନ୍ତି । ଏହି ଜୁଆଙ୍ଗମାନେ ତାଙ୍କର ସଞ୍ଚିତ ଖାଦ୍ୟ ଖୁବ୍ ଆନନ୍ଦ ମନରେ ଉପଭୋଗ କରନ୍ତି । ଆଉ ଏକ ଆଶ୍ଚର୍ଯ୍ୟର ବିଷୟ ଏମାନଙ୍କର ଘରେ କିଛି ଥାଉ ବା ନ ଥାଉ ଏମାନେ ପଛଘୁଞ୍ଚା ନ ଦେଇ ମଣ୍ଡପରେ ସଞ୍ଚିତ ଖାଦ୍ୟରେ ଅତିଥି ଅଭ୍ୟାଗତ-ମାନଙ୍କର ସତ୍କାର କରନ୍ତି ଓ ସେମାନଙ୍କୁ ଏହି ଚାଙ୍ଗୁ ନୃତ୍ୟରେ ତୃପ୍ତ କରନ୍ତି । ଏହି ସରଳପ୍ରାଣ ଜୁଆଙ୍ଗ ଜୁଆଙ୍ଗୁଣୀ (ଯୁବକ ଯୁବତୀ)ମାନେ ପହିଲି ଆଷାଢ଼କୁ ସ୍ୱାଗତ ଜଣାଇବାରେ ହୀନ ନୁହନ୍ତି । ଆଜିକାଲିକା ଯୁଗରେ ମଧ୍ୟ ଏମାନଙ୍କ ଅତିଥି ସତ୍କାର ଧନ୍ୟବାଦାର୍ହ । ଏହି ଅଞ୍ଚଳରେ ପହିଲି ଆଷାଢରେ ଏମାନେ ବଣ ଦେବୀଙ୍କୁ କୁକୁଡ଼ା ବା ଛେଳି (ବୋଦା) ବଳି ଦେଇ ବର୍ଷାକୁ ସ୍ୱାଗତ ଜଣାନ୍ତି ।



# ଶାକ୍ତପୀଠ କେନ୍ଦୁଝର

ବହୁଯୁଗ ପୂର୍ବେ ନୀଳବନଦେଶ ଘଞ୍ଚ ପର୍ବତ ମଧ୍ୟରେ କେନ୍ଦୁଝର ଅବସ୍ଥିତ ଥିଲା । ସେତେବେଳେ କିନ୍ତୁ ଏହା ଯମଗରଭ କ୍ଷେତ୍ର (ମଣ୍ଡଳ) ନାମରେ ବିଦିତ ଥିଲା—ଯେତେବେଳେ ପୁଣ୍ୟାତ୍ମା ଋଷିପୁତ୍ର ଜୁଆଙ୍ଗମାନେ ଏ ରାଜ୍ୟର ଅଧିବାସୀ ଥିଲେ । ଏହି ଜୁଆଙ୍ଗମାନେ ମଧ୍ୟ ଏସିଆରୁ ଭାରତର ପାର୍ବତ୍ୟ ଅଞ୍ଚଳରୁ ବୁଲି ବୁଲି କେନ୍ଦୁଝରର ପାର୍ବତ୍ୟ ଅଞ୍ଚଳ ଗୋନାସିକା ଓ ଗନ୍ଧମାଦନର ଶ୍ରୀ ବୃଦ୍ଧି କରୁଥିଲେ ଏବଂ କରୁଛନ୍ତି । ସେମାନେ ପୁରାଣ କଥିତ ଦେବାଦେବୀ-ମାନଙ୍କ ସାଙ୍ଗରେ ସୁ ସମ୍ବନ୍ଧ ସ୍ଥାପନ କରିଥିଲେ । ସେମାନେ ଥିଲେ ଉଲଗ୍ନ—ମଣିଷ ହେଲେ ମଧ୍ୟ ଦେବତାଙ୍କ ସଂସ୍ପର୍ଶରେ ଆସି ସେମାନେ ମହାନ୍ ଥିଲେ । ସେହି ସମୟରେ ବୈତରଣୀ ବା ଗଙ୍ଗାଙ୍କର ଜନ୍ମ ନ ଥିଲା । ତ୍ରେତୟା ଯୁଗର କଥା—ଯେଉଁ ସମୟରେ ଦକ୍ଷ ଯଜ୍ଞରେ ସତୀ ଝାସ ଦେଇଥିଲେ ଏବଂ ବିଷ୍ଣୁଙ୍କର ଚକ୍ରରେ କଟା ହୋଇ ସାରା ଭାରତରେ ଏକାବନଟି ପୀଠ ସ୍ଥାପନ ହୋଇ ଏ ଯୁଗରେ କୋଟି କୋଟି ଜନମନରେ ବନ୍ଦିତା । ସେହି ମହାମାୟୀଙ୍କର ନାଭିପଦ୍ମରୁ ବିରଜା ଉତ୍ପନ୍ନ ହେଲେ—ଯେଉଁ ପୀଠରେ ଦିନେ ବଳିରାଜା ରାଜତ୍ୱ କରୁ-ଥିଲେ । ଏହା ବାଲ୍ମୀକି ରାମାୟଣରୁ ପ୍ରମାଣିତ । ବ୍ରହ୍ମା ଶୁଦ୍ଧ ପୂତ ସ୍ନାନ ଦାନ ପାଇଁ ବିଷ୍ଣୁଙ୍କ ନିକଟରେ ତପସ୍ୟା କରି ପୁଣ୍ୟତୋୟା ବୈତରଣୀ ପାଇଥିଲେ । ସେହି ବୈତରଣୀର ଉତ୍ପତ୍ତିସ୍ଥଳ ଗୋନାସିକା ଗିରିଶୃଙ୍ଗ ମଧ୍ୟରେ ଅବସ୍ଥିତ ।

ସେତେବେଳେ ଏହି ଦେବପୁତ୍ର ଜୁଆଙ୍ଗମାନେ ଗୋନାସିକାର ଅରଣ୍ୟର ଉପକଣ୍ଠରେ ବାସ କରୁଥାନ୍ତି । ଏହି ଜୁଆଙ୍ଗମାନଙ୍କର ପୂର୍ବପୁରୁଷମାନେ ସେତେବେଳେ ଜୀବଜନ୍ତୁ ମାରି ଖାଇବା ସଙ୍ଗେ ସଙ୍ଗେ ବଣର ଫଳମୂଳ ଖାଇ ଦିନ କଟାଉଥିଲେ । ଏମାନେ ବୈତରଣୀର ଉତ୍ପତ୍ତି ସ୍ଥଳରେ ଗୋଟିଏ ଗାଈର ମୁଣ୍ଡ ବା ମସ୍ତକ ମାରି ଖାଇଦେଇ ଫିଙ୍ଗି ଦେଇଥିଲେ । ଫଳରେ ବୈତରଣୀ

ଗୁପ୍ତ ହେଲେ । ବ୍ରହ୍ମା ଧ୍ୟାନ ଯୋଗରେ ବୈତରଣୀର ସ୍ରୋତ ଖୋଜି ନ ପାଇ ରାଗରେ ପ୍ରଜ୍ୱଳିତ ହେଲେ ଏବଂ ଏମାନଙ୍କୁ ଅଭିଶାପ ଦେଲେ "ତୁମମାନଙ୍କର ଶତଜନ୍ମ ଏହିପରି ରୂପ ଓ ଲାବଣ୍ୟ ନେଇ ଭୋଗ କର" । ତା'ପରେ ଗୌମାଥଙ୍କର ଘୋର ତପସ୍ୟା ଫଳରେ ବୈତରଣୀ ଜଳ ରୂପ ନେଇ ବ୍ରହ୍ମ କୁଣ୍ଡରେ ଜନ୍ମ ନେଲେ । ବ୍ରହ୍ମେଶ୍ୱର ମହାଦେବ ପାତାଳରୁ ବାହାରି ସେହି କୁଣ୍ଡ ପାଖରେ ଦେଖାଦେଲେ ଓ ସେହିଠାରେ ବ୍ରହ୍ମା ବ୍ରହ୍ମେଶ୍ୱରଙ୍କୁ ସ୍ଥାପନା କଲେ । ବୈତରଣୀ ଗାଈ ମୁଣ୍ଡର ଗୋଟିଏ ପ୍ରଡ଼ାରୁ ବାହାରିଯାଇ କୁଣ୍ଡରେ ପତିତ ହେଲେ । ନାରାୟଣ ଅନନ୍ତ ଶୟନ ଗ୍ରହଣ ଲକ୍ଷ୍ମୀଙ୍କ ସହ ବ୍ରହ୍ମାଙ୍କର ଯଜ୍ଞରେ ଉପସ୍ଥିତ ହେଲେ । ଏ ସ୍ଥାନର ପବିତ୍ରତା ଦେଖି ସେହି ପୀଠରେ ପୂଜା ପାଇବାପାଇଁ ହର ଓ ପାର୍ବତୀ କୈଳାସ ଗ୍ରହଣ ଅକୁଣ୍ଠିତ ଚିତ୍ତରେ ଅବତରଣ କଲେ । ବ୍ରହ୍ମାଙ୍କର ଯଜ୍ଞରେ ବ୍ରହ୍ମବେତ୍ତା ବେଦବ୍ୟାସ ପୌରୋହିତ୍ୟ କଲେ । ସାବିତ୍ରୀ ମଧ୍ୟ ବ୍ରହ୍ମାଙ୍କର ସହଗାମୀ ହୋଇ ଯଜ୍ଞରେ ଆହୁତି ଦେଲେ । ନାରାୟଣଙ୍କ ଇଙ୍ଗିତରେ ବ୍ରହ୍ମେଶ୍ୱର ସ୍ଥାପନା ହେଲେ । ବ୍ରହ୍ମା ମଧ୍ୟ ନାଭି ପଦ୍ମରୁ ଜନ୍ମ ନେଇଥିବା ବିରଜାଙ୍କ ପୀଠରେ ଆଉ ଏକ ଯଜ୍ଞ ସମାପନ କରିଥିଲେ । ସେତେବେଳେ ଏହି ବିରଜା କ୍ଷେତ୍ରର ନାମ ଯଜପୁର ନାମରେ ବିଦିତ ଥିଲା ।

ଯୁଗ ପରେ ଯୁଗ ବୋହିଗଲା—ଦ୍ୱାପର ପରେ କଳି ପ୍ରବେଶ କଲେ ପୃଥିବୀ ପୃଷ୍ଠରେ । ତଥାକଥିତ ଜୁଆଙ୍ଗମାନେ ଯାଯାବର ସଦୃଶ ଏ ପାର୍ବତ୍ୟ ଅଞ୍ଚଳରୁ ଅନ୍ୟ ପାର୍ବତ୍ୟ ଅଞ୍ଚଳରେ ବସତି ସ୍ଥାପନ କଲେ । ଏବେ ବି ମଧ୍ୟ ସେହିଭଳି ସ୍ୱଭାବରେ ସେମାନେ ବିଦିତ । ପରିବର୍ତ୍ତନଶୀଳ ଦୁନିଆଁ ଭିତରେ ଏମାନଙ୍କର କିଛି ପରିବର୍ତ୍ତନ ହେଇନାହିଁ । କନ୍ଦମୂଳ ଭକ୍ଷଣ କରି, ଜୀବଜନ୍ତୁଙ୍କର ମାଂସ ଖାଇ ଏମାନେ ଯାଯାବର ଭଳି ଏହି ରାଜ୍ୟରେ ଖ୍ରୀ: ପୂ: ୬ରୁ ବସତି ସ୍ଥାପନ କରୁଛନ୍ତି; କିନ୍ତୁ ଏଇମାନେ ହିଁ ସେହି କାଳରୁ ଗୁଣି ଯାଇଛନ୍ତି ଶାନ୍ତିର ମଞ୍ଜି ବା ବିହନ—ଏହି ସମଗ୍ର କ୍ଷେତ୍ରରେ ଯାହାକି ଆଜି କୋଟି ମୁଖରେ ଏହା କେନ୍ଦୁଝର ରୂପେ ପରିଚିତ । ଏଇ ଜାତିର ବଂଶଧରମାନେ ଆଜି ବି ମହାଦେଶର ପାର୍ବତ୍ୟ ଅଞ୍ଚଳ ମଧ୍ୟ ମଣ୍ଡନ କରୁଛନ୍ତି । ଜଣେ ଇଂରେଜ ଲେଖକ ଏମାନଙ୍କୁ Central Assiatic ସ୍ୱଭାବରେ ନାମିତ କରିଛନ୍ତି । Dr. N. Pattnaik ଏମାନଙ୍କୁ Central Assiatic Austro ବୋଲି ତାଙ୍କର Integrated Tribal Development Agency Reportରେ ବର୍ଣ୍ଣାଇଛନ୍ତି ।

ଆଉ ଜଣେ କବି ଏହାପରେ ବ୍ରିଟିଶ ଶାସନ କାଳରେ ମଗଧରୁ ଆସିଥିବା ଯାଯାବରଙ୍କର ବର୍ଣ୍ଣନା କରିଛନ୍ତି । ସେମାନେ ଭୌମ ବଂଶରୁ ଉତ୍ପନ୍ନ ବା ସେଇମାନେ ଏହି ଜୁଆଙ୍ଗମାନଙ୍କଠାରୁ ବଳବାନ୍ । ଜୁଆଙ୍ଗମାନଙ୍କୁ ଢେଙ୍କାନାଳ ଜିଲ୍ଲା ଓ ସମ୍ବଲପୁର ଜିଲାର ପାର୍ବତ୍ୟ ଅଞ୍ଚଳକୁ ଠେଲି ଦେଇ ସେମାନେ ଏହି କେନ୍ଦୁଝରର ଅଧିବାସୀ ହେଲେ । ଏହି ଅଧିବାସୀଙ୍କ ବିଷୟରେ ବ୍ୟାସକବି ଫକୀରମୋହନ ତାଙ୍କ ଜୀବନୀରେ କିଛି ଚର୍ଚ୍ଚା କରିଛନ୍ତି । ଏହି ଭୂୟାଁମାନେ ଭୌମବଂଶରୁ ଉତ୍ପନ୍ନ ହୋଇ ଖ୍ରୀ. ପୂ. ୭ରେ ଯମଗରଭ କ୍ଷେତ୍ରରେ ଅଧିଷ୍ଠିତ ହେଲେ—ଯାହାକି ରାମପ୍ରସାଦ ଚନ୍ଦ ତାଙ୍କର ଗୋଟିଏ ବହିରେ ସୂଚାଇ ଦେଇଥିଲେ । ଏହି ଭୂୟାଁମାନେ ବହୁଦିନ ଧରି ଏ ରାଜ୍ୟ ମଣ୍ଡନ କରି ଆସୁଛନ୍ତି । ଏମାନେ ପାର୍ବତ୍ୟ ଅଞ୍ଚଳରେ ବସତି ସ୍ଥାପନ କଲେ । ଏମାନେ ଜୁଆଙ୍ଗ ମାନଙ୍କଠାରୁ ଉନ୍ନତ ଧରଣର । ଫଳରେ ଜୁଆଙ୍ଗମାନେ ଲୁଚିଛପି ପର୍ବତ କନ୍ଦରରେ ଓ ଢେଙ୍କାନାଳ ଜିଲ୍ଲା ମାଳଗିରି ଅଞ୍ଚଳରେ ବସତି ସ୍ଥାପନ କଲେ । ଏମାନେ ଗୋଟିଏ ଜାଗାରେ ୩।୪ ବର୍ଷରୁ ଅଧିକ ରହୁ ନ ଥିଲେ । ୧୧୬୮ ଖ୍ରୀଷ୍ଟାବ୍ଦର ମଧ୍ୟ ଭାଗରେ ଏହି ରାଜ୍ୟରେ ଭୂୟାଁମାନେ ଭଞ୍ଜବଂଶ ପ୍ରତିଷ୍ଠା କରାଇଥିଲେ । ସେତେବେଳେ ଭୂୟାଁମାନେ ସୁଦୂର ମୟୂରଭଞ୍ଜରୁ ଜ୍ୟୋତିସିଂଙ୍କୁ ନେଇ ଆଣି ଜ୍ୟୋତିପୁରରେ ରାଜା ରୂପେ ଅଧିଷ୍ଠିତ କରାଇଥିଲେ । ବନଦେବୀ ଯମଗରଭ କ୍ଷେତ୍ର ଉପକଣ୍ଠରେ ଗୋବରା ଏବଂ ଚନ୍ଦ୍ରଆର ପାଦଦେଶରେ ଗୋଟିଏ କେନ୍ଦୁଗଛ ମୂଳେ ଗୋଟିଏ ଝରଣା ପ୍ରବାହିତ ହେବାର ଦେଖି ଏହି ସ୍ଥାନକୁ କେନ୍ଦୁଝର ରୂପରେ ପରିଚିତ କରାଇଥିଲେ । ଜନମୁଖରେ ଶୁଣାଯାଏ ଏହି କେନ୍ଦୁଝରର ସିଂହାସନ ତଳେ ଲକ୍ଷ ଶାଳଗ୍ରାମ ମୂର୍ତ୍ତି ସିଏ କି ନୀରବ ନିସ୍ପନ୍ଦରେ ଆଖି ମିଟି ମିଟି କରି ଚାହିଁ ରହିଆନ୍ତି । ସେହି ସିଂହାସନରେ ଜ୍ୟୋତିସିଂଙ୍କୁ ଗାଦିସୀନ କରାଇ ଭୂୟାଁମାନେ ରାଜାଙ୍କୁ ଭଞ୍ଜ ଉପାଧିରେ ଭୂଷିତ କରାଇଥିଲେ । ଏହି କେନ୍ଦୁଝର ସେହିଦିନରୁ ଏକ ଶାକ୍ତପୀଠ ରାଜ୍ୟ ରୂପେ ପରିଚିତ ।

ଏହାର ଭିତରେ ୮୭୭ ବର୍ଷ ବିତି ଯାଇଅଛି; କିନ୍ତୁ ମୂକସାକ୍ଷୀ ରୂପେ ମଣ୍ଡୁଅଛି ଗନ୍ଧମାଦନ ଓ ଗୋନାସିକା କେନ୍ଦୁଝରର କଣ୍ଠ ଓ ବଦନ ସଦୃଶ । ପୁଣ୍ୟତୋୟା ବୈତରଣୀ ନିଜ ଗନ୍ତବ୍ୟ ପଥରେ ମହା ସମୁଦ୍ର ବକ୍ଷରେ ମିଶିଯିବାକୁ ନିର୍ବିକାର ମନରେ ଚାଲିଅଛି ! କୂଳେ କୂଳେ ମଣ୍ଡୁଛନ୍ତି କାଶୀବାସୀଙ୍କ ଲିଙ୍ଗ ପ୍ରତି କୋଣକରେ ରହି । କେନ୍ଦୁଝର ଉପକଣ୍ଠରେ

ବଳଦେବ ମଣ୍ଡୁଛନ୍ତି—ଗୋବରର ପାଦଦେଶରେ ସିଦ୍ଧକାଳୀ ଶ୍ୟାମ-ଶ୍ୟାମା ମଣ୍ଡନ କରୁଛନ୍ତି । ମହାମହିମାମୟୀ ମା' 'ତାରିଣୀ' ଭକ୍ତମାନଙ୍କ ଭକ୍ତିରେ ପ୍ରୀତ ହୋଇ ଘଟଗାଁ ମଣ୍ଡନ କରୁଛନ୍ତି । ରଘୁନାଥଜୀଉ ବୈତରଣୀ କୂଳରେ ବୀର ଗୋବିନ୍ଦପୁର ଶାସନ ମଧ୍ୟରେ ମଣ୍ଡନ କରୁଛନ୍ତି । ପରିବର୍ତ୍ତନଶୀଳ ଦୁନିଆଁ ଭିତରେ କେତେ କେତେ ବୀର ବୀରା, ମହାରାଜା ପ୍ରଜାଙ୍କ ସହିତ ଭୂୟାଁଙ୍କୁ ଚଡ଼ିଦେଇ ଦ୍ରାବିଡ଼ର ଅଧିବାସୀ କେଉଁକାଳ କେନ୍ଦୁଝର କୋଳ ମଣ୍ଡନ କରୁଥିଲେ । କାଳର କରାଳ ଚକ୍ରରେ ସବୁକିଛି ଲିଭିଯାଇଛି । ବୁଦ୍ଧଙ୍କର ବୈଦାଖିଆ, ଅସନପାଟ ଆଉ ସୀତାବିଞ୍ଜି ପାଟଡ୍ୟାଞ୍ଚଳମାନଙ୍କରେ ବୌଦ୍ଧକୀର୍ତ୍ତି ମାତ୍ର ପଡ଼ିରହିଛି । ଖଣ୍ଡାଧାର—ଖଣ୍ଡାଧାରରେ ଜଳ ସିଞ୍ଚି ଏକ ବିରାଟ ପ୍ରପାତ ସୃଷ୍ଟି କରି କେନ୍ଦୁଝରର ଉତ୍ତର ପଶ୍ଚିମ ଅଞ୍ଚଳରେ ଶୋଭା ପାଉଅଛି । ଆନନ୍ଦପୁରର ଦଧିବାମନଜୀଉ ଏ ଯାବତ୍ ଦବ୍ୟ ନୈବେଦ୍ୟରେ ୪ ଜାତି ଓ ୩୬ ପାଟକଙ୍କୁ ସୃଷ୍ଟିଛନ୍ତି । ପୁଣ୍ୟତୋୟା ବୈତରଣୀ କୂଳ ପୁଣ୍ୟପୀଠରେ ଚନ୍ଦ୍ରଶେଖର ମଣ୍ଡି ଭକ୍ତମାନଙ୍କୁ ଆଶୀର୍ବାଦ ଦେଉଛନ୍ତି । ମଫସଲ ଅଞ୍ଚଳରେ କେତେ ଦେବାଦେବୀ ଜନଗହଳ ମଧ୍ୟରେ ମଣ୍ଡୁଛନ୍ତି । ଆଉ ଏକ ବନଦେବୀ ତେଲକୋଇ ଓ କାଳିଆ ହତାରେ ଘଟ୍ଟତାରିଣୀ ନାମରେ ମଣ୍ଡନ କରୁଛନ୍ତି । ଆଜି କିନ୍ତୁ ପ୍ରଶ୍ନ ହୁଏ କାହିଁକି ଏ କେନ୍ଦୁଝର ସବୁରି ପାଖରେ ଏକ ଶାନ୍ତ ପୀଠ ସମ ବିରାଜମାନ କରୁଛି । ଏ ଯୁଗର ଭେଜାଲ ମଧ୍ୟରେ ବୁଢ଼ି ପଛକୁ ଫେରି ସୃଷ୍ଟିଲେ ଯେ କେହି ବୁଝିପାରିବ ଏ ରାଜ୍ୟରେ ଲୋକମାନଙ୍କ ମଧ୍ୟରେ କଳିତକରାଳ ନ ଥିଲା । ଏ ରାଜ୍ୟର ମଧ୍ୟସ୍ଥଳରେ ଆଦ୍ୟାଶକ୍ତି ମା' 'ତାରିଣୀ'ଙ୍କ ସଙ୍ଗେ ସଦାଶିବ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରି ଶ୍ରୀଜଗନ୍ନାଥ ଯୁଗ ଯୁଗ ଧରି ମଣ୍ଡନ କରି ଆସୁଛନ୍ତି ।

ଅବଶ୍ୟ ଘଞ୍ଚବନାନୀଘେରା କେନ୍ଦୁଝର ଉତ୍କଳରେ ଲୁହା, ମାଙ୍ଗାନିଜ, କ୍ରୋମାଇଟ୍ ଖଣିଜ ସମ୍ପଦ ଧରି ପରିଚିତ । ନାନାଆଡ଼ୁ ଏହି ରାଜ୍ୟରେ ଲୋକମାନେ ଆସି ବସତି ସ୍ଥାପନ କଲେଣି । ଏ ରାଜ୍ୟର ଲୋକମାନେ ଉଚ୍ଚ ବା ଲୋଭୀ ନୁହନ୍ତି । ଏତେ ଦାରିଦ୍ର୍ୟ ଅବସ୍ଥାରେ ଥାଇ ମଧ୍ୟ ସେମାନେ କେହି ସେହି ଅଦୃଶ୍ୟ ଦେବତାଙ୍କୁ ଛାଡ଼ିପାରୁ ନାହାନ୍ତି । ମାତ୍ର କେହି କେବେ ଅକାଳରେ ପଡ଼ି କଷ୍ଟ କମ୍ବା କାରାଦଣ୍ଡ ଭୋଗେ; କିନ୍ତୁ ଲୋକମାନେ କେହି ସଂକୀର୍ଣ୍ଣମନା ନୁହନ୍ତି । ଏହି ଭୂୟାଁମାନଙ୍କର ପୂର୍ବପୁରୁଷମାନେ ବୌଦ୍ଧ ଧର୍ମାବଲମ୍ବୀ ଥିଲେ । ତାହାର ପ୍ରମାଣ ଖାଲି ସୀତାବିଞ୍ଜି ଏକା ଦେଉନାହିଁ—ଆନନ୍ଦପୁରର ବୈଦାଖିଆ ଓ ଚମ୍ପୁଆର ଅସନପାଟ ମଧ୍ୟ ଏ ରାଜ୍ୟର ଶାନ୍ତ ପୀଠର ଜ୍ୱଳନ୍ତ ପ୍ରମାଣ ଦେଉଅଛି ।

ଆଉ ଏକ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଏ ରାଜ୍ୟ ଥରେ ସାଧୁସନ୍ଥଙ୍କର ପୀଠସ୍ଥଳୀ ଥିଲା । ଏ ରାଜ୍ୟର ସରଳପ୍ରାଣ କୁଆଙ୍ଗ ଓ ଭୂୟାଁମାନେ ହେଉଛନ୍ତି ଏ ପୀଠର ଶାନ୍ତିର ପ୍ରତୀକ । ଝୋଲରେ ରହିଲେ ମଧ୍ୟ ସେମାନେ ଦ୍ୱାର ଦ୍ୱାର ବୁଲି ମୂଠେ ମାଗିବେନି । ଅନ୍ନ କଷ୍ଟରେ ବି ଶ୍ରେଣ କରିବେନି; କିନ୍ତୁ ଜଙ୍ଗଲର ଫଳମୂଳ ଆହାର କରି ତାଙ୍କର ସରଳପ୍ରାଣ ନିର୍ବାହ କରନ୍ତି । ଏମାନଙ୍କ ମନ ମଧ୍ୟରେ କେବେ ସୌଖିନ୍‌ର ସ୍ଥାନ ପାଇନାହିଁ । ଜନ୍ମମାଟି ଛାଡ଼ି ଯେଉଁମାନେ ଆସି ଏଠି ବାସ କରୁଛନ୍ତି ସେମାନେ ଶାନ୍ତି ପୀଠର ମନୋବୃତ୍ତି ନେଇ ଗନ୍ତବ୍ୟ ପଥରେ ପଥିକ ହୋଇ ଚାଲିଛନ୍ତି । କାଁ ଭାଁ କାହିଁ କେଉଁଠି ଅନ୍ୟାୟର ବଶବର୍ତ୍ତୀ ହେଲେ ବି କେବେ ଯେବେ ଏମାନଙ୍କ ପାଦ ଖସୁଥାଏ ତେବେ ସେମାନେ ନିଜର ଧୃଷ୍ଟତା ବୁଝିପାରନ୍ତି ଏବଂ ଗଲା ଧକ୍କା ଖାଇ ନିଜର ଗନ୍ତବ୍ୟ ବା ଧର୍ମ ପଥକୁ ଫେରି ଆସନ୍ତି ।

କିମ୍ବଦନ୍ତୀ କହେ ଏ ରାଜ୍ୟର ବନଗିରି ପାହାଡ କନ୍ଦରରେ ଦ୍ୱାପର ଯୁଗରେ ଧର୍ମରାଜ ଯୁଧିଷ୍ଠିର ଭାଇଙ୍କ ଗହଣରେ ରହୁଥିଲେ । ବିରାଟ ଗଡ଼ ଓ କୀଚକେଶ୍ୱରୀଙ୍କ ମନ୍ଦିର ବୈତରଣୀର ପର ପାରରେ । ଏମାନଙ୍କର ବିରାଟ ଗଡ଼ରେ ଅଜ୍ଞାତ ବନବାସ କଟାଇବାର ଅନେକ ଭଗ୍ନାବଶେଷ ଇଟା ପଥର ଜ୍ୱଳନ୍ତ ପ୍ରମାଣ ଦେଉଅଛି । ଏହି ଆଧୁନିକ ମଧ୍ୟ ଯୁଗରେ ଏ ରାଜ୍ୟର ବନଦେବୀ ଘଣ୍ଟିଗ୍ରାମଠାରେ ମା' 'ତାରିଣୀ' ରାତିରେ ବ୍ରହ୍ମେଶ୍ୱର ଆଉ ଗୋନାସିକାଠାରୁ ରାମକୁଣ୍ଡ ପର୍ଯ୍ୟନ୍ତ ଅନ୍ୟ ଦେବାଦେବୀଙ୍କ ଗହଣରେ ବୁଲୁଥାନ୍ତି । ଗୋନାସିକା ପୀଠ ଓ ଖଣ୍ଡାଧାର ଜଳାଧାରରେ ଦେବାଦେବୀମାନେ ନିଘ ରାତିର ନିଃଶବ୍ଦତା ମଧ୍ୟରେ କ୍ରୀଡ଼ା କରି ନିଜକୁ ହଜାଇ ଦିଅନ୍ତି । ତାଙ୍କର ଏ କ୍ରୀଡ଼ା କେତେଜଣ ତପସ୍ୱୀ ସାଧୁଙ୍କୁ ଛାଡ଼ିଦେଲେ ଖୁବ୍ କମ୍ ଏମାନଙ୍କୁ ଦେଖିବାର ସୁଯୋଗ ପାଇଛନ୍ତି । ଫଳରେ ଶାନ୍ତି ପୀଠ କେନ୍ଦୁଝରରେ ଅନ୍ୟ ରାଜ୍ୟର ଲୋକମାନେ ବାସିନ୍ଦା ହେବାକୁ ସ୍ୱତଃପ୍ରବୃତ୍ତ ଇଚ୍ଛୁକ ହୁଅନ୍ତି ।



# କେନ୍ଦୁଝରର କଚେରୀ

ବଣପାହାଡ଼ଘେରା କେନ୍ଦୁଝରରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଭରି ରହିଛି । ସେ ପ୍ରାକୃତିକ ସୌନ୍ଦର୍ଯ୍ୟଗୁଡ଼ିକ ମାନବ ଗଢ଼ା ନୁହେଁ । କେନ୍ଦୁଝର ସଦର ମହକୁମାର ପ୍ରାଚୀର ସଦୃଶ ଘେରି ରହିଛି ଯୋଡ଼ଆ, ଚ୍ଲିଆ, ଗୋଗସ୍ ପାହାଡ଼-ପୁଞ୍ଜ । କେନ୍ଦୁଝର ଉଆସ ତଳୁ ବହିଯାଇଛି ଏକ ଚିରସ୍ରୋତା ଝରଣା । ପାହାଡ଼ର ତଳଦେଶରୁ ରାଜବାଟି, ରାଜା ଉଆସ ପରେ ପରେ ଶ୍ରେଷ୍ଠ ବଡ଼ ଘର ରାସ୍ତା ଦୁଇ କଡ଼ରେ ମୁଣ୍ଡ ଟେକି ନୀରବ ନିସ୍ପନ୍ଦ ଭାବରେ ବହୁଦିନ ଧରି ଛିଡ଼ା ହୋଇ-ଛନ୍ତି । ସହରର ଉପକଣ୍ଠ ନ ହେଲେ ବି ପୁରୁଣା ଉଆସର ଅନତି ଦୂରରେ ଶ୍ରୀ ବଳଦେବଜୀଉଙ୍କ ମନ୍ଦିର କେନ୍ଦୁଝରର ଶ୍ରୀ ବର୍ଦ୍ଧନ କରି କୋଟି ଜନତାର ହୃଦୟ ଓ ମନ ହରଣ କରୁଛି । ସେହି ଗଡ଼ଜାତର ରାଜାଙ୍କ ଅମଳର ପୁରୁଣା କଥା—କୋଣାର୍କ ପରି ଏକ କାରୁକାର୍ଯ୍ୟ ଗଢ଼ା ସୂର୍ଯ୍ୟ ମନ୍ଦିର ଏବେ ବି କୋଟି କୋଟି ମନହରଣ କରିପାରୁଛି । ତା'ର ସମକକ୍ଷ ନ ହେଲେ ବି ପୁରୁଣା କାଳରେ ନୁହେଁ ଏ ଯୁଗରେ କେତେ ବଢ଼େଇ ଲାଗି ଏହି କେନ୍ଦୁଝର ଉପକଣ୍ଠରେ ଗୋଟିଏ କାର୍ଯ୍ୟାଳୟ ତିଆରି କରି ଯାଇଛନ୍ତି—ଯାହାକି ରାଜାଙ୍କର ଦିନେ କଚେରୀ ରୂପରେ ବିଦିତ ହୋଇଥିଲା । ଏହି କାର୍ଯ୍ୟାଳୟର ନିର୍ମାଣ କାର୍ଯ୍ୟ ବୋଧହୁଏ ୧୯୬୦ ମସିହାରେ ତିଆରି ହୋଇଥିଲା । ସେ ବେଳର ପଲିଟିକାଲ ଏଜେଣ୍ଟ **Lt. E.B. Coblen Rausay, I. C. S.** ଙ୍କ ଦ୍ୱାରା ଶିଳାନ୍ୟାସ କରାଯାଇଥିଲା । କେନ୍ଦୁଝର ସଦର ମହକୁମାରେ ଏହି କଚେରୀ ଘରଟି ଅନେକ ଦିନ ଧରି ଦର୍ଶକମାନଙ୍କର ମନ ଓ ହୃଦୟ ଅପହରଣ କରି ମୁଣ୍ଡଟେକି ଠିଆ ହୋଇଛି ଓ ହୋଇଥିବ ।

ଏ କାର୍ଯ୍ୟାଳୟର ଦରବାର ହଲ ବୋଧହୁଏ ସାରା ଉତ୍କଳ ମାଟିରେ ପ୍ରଥମ, କମନୀୟ ଓ ଆକର୍ଷଣୀୟ । ଦରବାର ହଲକୁ ଲାଗି ଅନେକଗୁଡ଼ିଏ କୋଠରୀ ତିଆରି କରାଯାଇଛି । ଏହାର ନିର୍ମାଣ ଏତେ ଚମକପ୍ରଦ ଯେ କେହି ଜଣେ ନବାଗତ ଗୋଟିଏ କୋଠରୀ ଭିତରୁ ବାହାରି ପୁଣି ସେହି ସ୍ଥାନକୁ

ଫେରି ଆସିବାକୁ କଷ୍ଟବୋଧ କରିବ । ଏହି କାର୍ଯ୍ୟାଳୟର ଉପରି ଭାଗ ଏ ଯୁଗର R. C. Slab ନୁହଁ ବା ଟାଇଲ୍‌ରେ ଗଢ଼ା ନୁହଁ । ଏହାର ଛାତ ପୁରୁଣା-କାଳିଆ ଶ୍ରେଣୀଗଣ୍ଡ ଟାଇଲ୍‌ରେ ଗଢ଼ା ହେଲେ ବି ଏ ଯୁଗରେ ସେଥିରୁ ଖଣ୍ଡେ ବଦଳାଇ ଆଉ ଖଣ୍ଡେ ସେହିପରି ଟାଇଲ୍ ଦେଇ ହେଉନାହିଁ । ଏହାର ପ୍ରତ୍ୟେକ ହଲ୍ ଓ ରୁମ୍‌ରେ Sky light ଏପରି ଭାବରେ ଖଞ୍ଜା ଯେ ଦିନବେଳେ ସୂର୍ଯ୍ୟଙ୍କର ରଶ୍ମି ସବୁ କୋଠରୀ ଭିତରେ ପଦାର୍ପଣ କରି କୋଠରୀ ବା ହଲ୍‌ଗୁଡ଼ିକ ସଦାସର୍ବଦା ଆଲୋକିତ ହୁଏ । ଏ ଯୁଗରେ ଏହି ସ୍କାଇ ଲାଇଟ୍‌କୁ ପରିବର୍ତ୍ତନ କରାଇ ନୂଆ ସ୍କାଇ ଲାଇଟ୍ ଦେଲେ ଏହାର ସୌନ୍ଦର୍ଯ୍ୟ ବ୍ୟାହତ ହେବାଛଡ଼ା ଆଉ କିଛି ହେବନାହିଁ । ଏ ଯୁଗରେ ଜିଲାପାଳ, ଅତିରିକ୍ତ ଜିଲାପାଳ, ଟ୍ରେଜେରୀ, ଜିଲାଦୌରାଜଜ୍, ଦୌରାଜଜ୍ ଏବଂ ସବୁ କାର୍ଯ୍ୟାଳୟଗୁଡ଼ିକ ଭରପୂର; ତଥାପି କୋଠରୀର ସଂକୀର୍ଣ୍ଣତା କେହି କେବେ ଅନୁଭବ କରିପାରି ନାହାନ୍ତି ବା କରି ପାରିବେ ନାହିଁ । ଅବଶ୍ୟ ଏହା ପୁରୁଣାକାଳିଆ ସିମେଣ୍ଟ, ଚୂନ, ଇଟାରେ ତିଆରି । ଏହାର ନିର୍ମାଣ କାଳରେ ବୋଧହୁଏ ଭେଜାଲର ସୃଷ୍ଟି ହୋଇ ନ ଥିଲା । ଫଳରେ ଏହି କାର୍ଯ୍ୟାଳୟଟି ୧୯୬୦ ମସିହାରୁ ଏଯାଏ ଖୁବ୍ ସୁନ୍ଦର ପରିସ୍ଥିତିରେ କାର୍ଯ୍ୟକାରୀ ହୋଇପାରୁଛି ।

ଏହାର କମନୀୟତାରେ ଯଦି ଷରି ପୁରାଇ ନ ଦିଆଯାଏ ତେବେ ଏ ଯୁଗ ଭିତରେ ଏହା ହଜିଯିବ ନାହିଁ । ଏହି କଚେରୀ ଘର ଭିତରେ ଉଲ୍ଲିଖିତ କୋଠରୀଗୁଡ଼ିକ ଏ ଅବଧି ବିନା ମରାମତିରେ ସେହିପରି ଜଳଜଳ ହୋଇ ରହିଛନ୍ତି; କିନ୍ତୁ ୧୯୬୦ ମସିହାରେ ତିଆରି ଏହି କେନ୍ଦୁଝର ଉପକଣ୍ଠରେ ଅନ୍ୟ ଛାତଘର ଭାଙ୍ଗି ଆସିଲାଣି । ଏ ଯୁଗରେ ବଳିଷ୍ଠ ଇଞ୍ଜିନିୟରମାନେ ମଧ୍ୟ ଏହାର କୌଣସି ଖଣ୍ଡେ ପରିବର୍ତ୍ତନ କରିବାକୁ ଅକ୍ଷମ ହେଉଥିଛନ୍ତି । ଏହାର ଉଚ୍ଚତା ଏତେ ବେଶୀ ଯେ ଏହା ଉପରକୁ ମିସ୍ତ୍ରୀମାନେ ଉଠି କାମ କରିବାକୁ ଭୟ କରୁଛନ୍ତି ।

ଏହାର କୋଠରୀଗୁଡ଼ିକର ମାପ—

ଦରବାର ହଲ୍—୫୦୦' × ୧୦୦' × ୩୦' ଏ.ଡି.ଏମ୍ ଓ ପୂର୍ବପାଖରେ—ସାମ୍ନାରେ କଲେକ୍ଟରଙ୍କ ଚେମ୍ବର ।

ଲାଇବ୍ରେରୀ ଘର—

ରାସ୍ତା—

ଇଙ୍ଗ୍ଲିସ୍ ଅଫିସ—

ସବ୍‌ଜଜ୍ ଅଫିସ—

ଏସ୍. ଡି. ଜ. ଏମ୍‌ଙ୍କ କୋର୍ଟ—

ରେକର୍ଡ଼ ରୁମ୍ –

ପଛ ପଟରେ—ସବ୍‌ଜଜ୍‌ଙ୍କ ଇଜଲାସ୍ , ସବ୍‌ଜଜ୍ ଅଫିସ, ଷ୍ଟେଟ୍ ବ୍ୟାଙ୍କ୍ (ହଠିଯାଉଛି), ପଶ୍ଚିମପଟରେ ନଜାରତ୍ ଅଫିସ—

ଡି· ସି· ଆର୍· ଓ· ଅଫିସ ।

ଟ୍ରେଜେରୀ ଅଫିସ ।

ଇମରଜେନ୍‌ସି ଅଫିସ ।

କୋର୍ଟ ମାଲଖାନା ।

ଷ୍ଟ୍ରଙ୍ଗ ରୁମ୍ ।

ସେଣ୍ଟ୍ରି —

ସବୁ ରୁମ୍‌ଗୁଡ଼ିକର ଆୟତନ ୧୭' × ୧୪' ଠାରୁ ବେଶୀ ।

ମୋ ସ୍ୱପ୍ନରେ —

କୋଟି ଜନତାର ହୃଦ ମନ ଜିଣି
କେନ୍ଦୁଝର କାର୍ଯ୍ୟାଳୟ,
କୋଟି କମକୁଟି କୋଠରୀ ଭିତରେ
କୋଟିରେ ହୁଏ ସହାୟ ॥
କରମ ବିପାକେ କେହୁ କେବେ ଯେବେ
ରୌଦ୍ରରେ ହୋଇ ଅଥୟ,
କଳପନା କରେ ଆଶ୍ରା ନେଇବାକୁ
ଅକ୍ଲେଶେ ପାଏ ଆଶ୍ରୟ ॥
କୋଟି ମୁଖେ ଶୁଭେ କେଉଁ ଶୁଭଲଗ୍ନେ
ଗଢ଼ିଥିଲା ଏ ନିଳୟ,
କୋଟି ମନ ହରେ ସୁଖ ବା ଦୁଃଖରେ
କାହାକୁ କରେନ ଭୟ ॥
ଜଏ ବା ଜହ୍ନବ କେତେ ଯୋଗ ହେବ
ନଷ୍ଟଲେ ଛୁଇଁ ବଳୟ,
କେତେ କାଳ ତୁନ ସିମେଣ୍ଟର ଗଢ଼ା
କୋଠରୀ ଦେବ ଅଭୟ ॥



# କିମ୍ବଦନ୍ତୀ ବହୁଳ କେନ୍ଦୁଝର :

## ପରିଶିଷ୍ଟ :

### ଶକୁନ୍ତଳା—

ବିଗତ ୧୯୭୦ ମସିହାରେ ଶ୍ରୀମତୀ ଶକୁନ୍ତଳା ମହାନ୍ତଙ୍କ ଦ୍ୱାରା ପ୍ରକାଶିତ ନୃତ୍ୟନାଟିକା—'ଶକୁନ୍ତଳା'ର ପ୍ରଣେତା ଶ୍ରୀ ଶତ୍ରୁଘ୍ନ ମହାନ୍ତ । ସେ ଏଠାରେ ଉତ୍ସର୍ଗପତ୍ରରେ ଫୁଟାଇଛନ୍ତି, "ଆଦିଶକ୍ତି ମା', ଯାହାର ଇଙ୍ଗିତରେ କେବଳ ଏ ମର ଜଗତ ନୁହେଁ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ବିଷ୍ଣୁ, ବ୍ରହ୍ମା ଓ ମହେଶ୍ୱର ପରିଚାଳିତ ସେହି ଆଦ୍ୟାଶକ୍ତି ମହାମହିମାମୟୀଙ୍କ ଆଶୀର୍ବାଦ ଫଳରେ ୧୯୭୧ ମସିହାରୁ ମୋର ଲେଖନୀରୁ କେତେଗୁଡ଼ିଏ ଶ୍ଲୋକ, ବଡ଼ କବିତା, ନାଟକ ଝରି ପାରିଛି । କିନ୍ତୁ ମୋର ପାରିପାର୍ଶ୍ୱିକ ଅବସ୍ଥା ଦୃଷ୍ଟିରୁ ଏଗୁଡ଼ିକୁ ଲୋକଲୋଚନର ଗୋଚରକୁ ଅଦ୍ୟାବଧି ଆଣି ପାରିବାକୁ କ୍ଷମ ହୋଇପାରି ନାହିଁ ।"

କବିଙ୍କ ପ୍ରୋକ୍ତ ଆତ୍ମବକ୍ତବ୍ୟରୁ ଜଣାଯାଏ ତାଙ୍କର ବାଣୀ ଆରାଧନା ଦୀର୍ଘଦିନ ଧରି ଚାଲି ଆସିଛି । ଶ୍ରୀ ମହାନ୍ତଙ୍କ ଜନ୍ମସ୍ଥାନ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର-ଝପରଖାଇ ଗ୍ରାମ । ଜନ୍ମ ତାରିଖ ତା ୨୪ । ୧୦ । ୧୯୨୪ । ପିତା ୰ କପିଳ ଚରଣ ମହାନ୍ତ ।

ଆଲୋଚ୍ୟ 'ଶକୁନ୍ତଳା'ର ବିଷୟବସ୍ତୁ ମହାକବି କାଳିଦାସ, ସ୍ୱଭାବ କବି ମେହେରଙ୍କ ଦ୍ୱାରା ଚମତ୍କାର ଭାବେ ପରିବେଷିତ ହୋଇଛି । ସେହି ବିଷୟବସ୍ତୁକୁ ଶ୍ରୀ ମହାନ୍ତ ଏକ ସରଳ ତରଳ ସୁଖପାଠ୍ୟ ନୃତ୍ୟନାଟିକାର ରୂପ ଦେଇଛନ୍ତି । ଏଥିରେ ଭାବ ଓ ଭାଷାର ଉତ୍ତମ ସମନ୍ୱୟ ଅନୁଭୂତ ହୁଏ । ଯଥା—

ବଦ୍ଧ୍ୟତ ବରଣୀ ଆଳୀ ଗହ୍ୱରେ/ଧରନ୍ତ ଆଙ୍କନ୍ତ ଚୁମା କୁସୁମେ
ବୀଣା ବନ୍ଦନ୍ଦିତ କଣ୍ଠେ ସଙ୍ଗୀତ/ହରନେଇ ହେଲେ ତରୁଣ ଚକ୍ର
କାନନ ମନ ହରଲେ/ଶୁକ ଶାରୀ କେଶ୍ଚି କୁମ୍ଭାଟୁଆ ଆଦି/
ତଟସ୍ଥ ହୋଇ ରହିଲେ ॥

ଏହି ପ୍ରାଚୀନ କଥାବସ୍ତୁଟିକୁ ସମୟୋପଯୋଗୀ କରିବାରେ ଶ୍ରୀ ମହାନ୍ତିଙ୍କ ମୌଳିକତା ସୁସ୍ପଷ୍ଟ । ତାଙ୍କର ଆହୁରି ଅନେକ ଗୀତନାଟ୍ୟ, ନୃତ୍ୟନାଟିକା ପାଣ୍ଡୁଲିପି ଆକାରରେ ରହିଛି । ମଞ୍ଚସ୍ଥ ହେଉଛି ।

## ମନର ଗୁହାରି—

ଏହା ଶ୍ରୀ ମହାନ୍ତିଙ୍କ ଏକ ଭକ୍ତିମୂଳକ କବିତାବଳୀ । ଲେଖାମାନ ‘ଅ’ଠାରୁ ‘କ୍ଷ’ ବର୍ଣ୍ଣମାଳା କ୍ରମରେ ସୁସଂଯୋଜିତ ହୋଇଛି । ଏହା ଉପରେ ଡଃ ହରେକୃଷ୍ଣ ମହତାବ ମତ ଦେଇ କହିଛନ୍ତି ଯେ ଶ୍ରୀ ମହାନ୍ତି କବି ହେବାପାଇଁ ଚେଷ୍ଟା ନ କରି, ନିଜର ଭକ୍ତିଭାବ ପ୍ରକାଶ କରିବା ପ୍ରତି ବେଶୀ ଦୃଷ୍ଟି ଦେଇଛନ୍ତି । ମନର ଗୁହାରି ଏକ ଭକ୍ତର ନିବେଦନ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ମତରେ—ଦ’ଟୋପା ଲୁହମିଶା କାଳିରେ ଏ ରଚନା ଶ୍ରୀ ମହାନ୍ତିଙ୍କର ହୃଦୟ— ପାଠକ ପାଠିକାର ମର୍ମସ୍ପର୍ଶ କରିବ—ଏହା ମନର ଦେବତାଙ୍କ ଶ୍ରୀଚରଣ ତଳେ ଆଶ୍ରୟ ପାଉ । ଅଧ୍ୟାପକ ନିତ୍ୟାନନ୍ଦ ପ୍ରଧାନ କହନ୍ତି, ଭକ୍ତଚରଣ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀ ଆଦି ଭକ୍ତମାନଙ୍କର ଶ୍ରୀ ମହାନ୍ତି ଜଣେ ଅନୁସାରୀ । ମିଳନୀ ସାହିତ୍ୟ ସଂସଦର ସଭାପତି ଶ୍ରୀ ମଦନ ମୋହନ ମିଶ୍ର ମତ ଦିଅନ୍ତି ଯେ, ପ୍ରଭୁଙ୍କର ଶ୍ରୀଚରଣରେ ସମର୍ପିତା ଏଇ କବିତା ମାଳାରେ ଭକ୍ତ କବିଙ୍କର ସରଳ ହୃଦୟର ତରଳିତ ଭାବଧାରା ମୂର୍ତ୍ତିମନ୍ତ ହୋଇଛି ।

ସାଧାରଣ ପାଠକ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ, ମଣିଷ ପ୍ରକାଶ୍ୟଭାବେ ହେଉ ବା ଅପ୍ରକାଶ୍ୟଭାବେ ହେଉ, ଏକ ଦୈବୀଶକ୍ତିର ଆଶ୍ରିତ ହୋଇଥାଏ । ଦେବଦେବୀଙ୍କୁ ଭକ୍ତି ନିବେଦନ କରିବା ପାଇଁ କୌଣସି ତାଲିମ ପାଇବାକୁ ହୁଏନାହିଁ । ଅଙ୍ଗଭଙ୍ଗୀ ପ୍ରଦର୍ଶନ କରି, ଠାକୁରଙ୍କୁ ଦୁଃଖ ଜଣାଇବା ଏକ ପ୍ରକାର ଭକ୍ତି; ମାତ୍ର ଏପରି ସମୟ ଆସିଥାଏ ଯେତେବେଳେ, କେବଳ ଦୁଃଖରେ ନୁହଁ ସୁଖରେ ମଧ୍ୟ ମଣିଷ ନୀରବ ନିଶ୍ଚଳ ମୁଦ୍ରାରେ ମନକଥା ତା’ର ସ୍ରଷ୍ଟା ପାଖରେ ପ୍ରକାଶ କରେ । ଏଠାରେ ତାହା ହିଁ ଘଟିଛି । ଅକୃତ୍ରିମ ଶୈଳୀରେ ଭାବ ପ୍ରକାଶ ପାଇଛି । କେତୋଟି ପଦ ଦ୍ରଷ୍ଟବ୍ୟ—

ଅନ୍ଧାର ନାଶି ଆଲୋକ ସନ୍ଧାନଟି ଦେବ।

ଅଖିଳ ବ୍ରହ୍ମାଣ୍ଡ ନାଥ ଦେବ ବାସୁଦେବ

ଅଜ୍ଞ-ଅଜ୍ଞାନ ଫେଡ଼ିବ,/ଅନାବିଲ ପ୍ରେମପଥ ମୋତେ ଦେଖାଇବ··· ।

× × × କାହିଁ କେଉଁଠି ଅଛ, ଭ୍ରମରେ ଭ୍ରମୁଅଛି, ଦେଖୁଛି ନେତ୍ରପଥେ ଯେତେ
କେଉଁଠି ତୁମ୍ଭ ରୂପ ନ ହେଉଛି ଗୋପ୍ୟ/ସବୁଠି ଅଛ ମୋର ମତେ
କେଉଁ ଫୁଲ ବା ରକ୍ତୁ ତୋତେ/ବାନ୍ଧି ପାରିବ କେଉଁମତେ
କଣିକାଏ କରୁଣା ଯେବେ ହୋଇବ ଊଣା/
ବାନ୍ଧି କେ ପାରିବ ଜଗତେ ?

× × × ଗଳାରେ ଲଗାଇ ଫାଶ, କର ତୁମ୍ଭେ ସର୍ବନାଶ/
କନ୍ଦାଇ କନ୍ଦାଇ ମାର ଦୁଃଖୀ ଭିକାରି
ଶରବଙ୍କ ଗୁରୁ ବୋଲ୍, ଅଦୃଶ୍ୟରେ ଶୂନ୍ୟ ଘାଲ୍/
ଗରିବ ମରଇ ତୁମ୍ଭ ନାମ ସୁମରି
ତୁମ୍ଭେପରା ଅହିତକାରୀ/କାହାର ହିତ କରିଛ କୃଷ୍ଣ ଶ୍ରୀହରି ??

ଆହୁରି ଅନେକ କ୍ଷୁଦ୍ର କଣାଣ ଓ ସାଧାରଣ କାବ୍ୟ କବିତା ଅପ୍ରକାଶିତ ରହିଛି ।

## ବିପ୍ଳବୀ ଧରଣୀ—

ଏହି ନାଟକଟି କେନ୍ଦୁଝରରେ ବିଗତ ୧୮୯୧ ମସିହାରେ ସଙ୍ଘଟିତ ଭୂୟାଁ ମେଳି ଉପରେ ଏକ ଗବେଷଣାଧର୍ମୀ ରଚନା । ଏ ମେଳିର ମୁଖ୍ୟ ନାୟକ ଧରଣୀଧର ଜଣେ ମାନବିକ ମୂଲ୍ୟବୋଧର ସଂରକ୍ଷକ । ସାମାଜିକ ଅନ୍ୟାୟ, ଅତ୍ୟାଚାର ଏବଂ ଅର୍ଥନୈତିକ ବୈଷମ୍ୟ ବିରୁଦ୍ଧରେ ସେ ସାହସର ସହିତ ସ୍ୱର ଉତ୍ତୋଳନ କରିଥିଲେ । ଏ ବିଷୟରେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ଆତ୍ମଜୀବନୀ, ତତ୍‌କାଳୀନ ସମ୍ବାଦପତ୍ର ଉତ୍କଳ ଦୀପିକା ଓ ପ୍ରଚଳିତ ଲୋକ କଥାରେ ଭିନ୍ନ ଭିନ୍ନ ତଥ୍ୟ ମିଳେ । ତେବେ ଆଲୋଚ୍ୟ ପୁସ୍ତକରେ ଲେଖକ ଶ୍ରୀ ମହାନ୍ତି ଉପରୋକ୍ତ ଐତିହାସିକ ଘଟଣା ପ୍ରତି ସତର୍କ ରହି ନାଟକୀୟ କୌଶଳର ସଫଳ ପ୍ରୟୋଗ କରି ପାରିଛନ୍ତି । ଏହି ନାଟକଟି ପ୍ରଥମେ ମିଳନୀ ସାହିତ୍ୟ ସଂସଦ ମାଧ୍ୟମରେ ମଞ୍ଚସ୍ଥ ହୋଇ ଦର୍ଶକମାନଙ୍କ ପ୍ରଶଂସା ଲାଭ କରିଥିଲା । ପୁସ୍ତକ ପ୍ରକାଶନ ପରେ ବହୁ ଅନୁଷ୍ଠାନ ପକ୍ଷରୁ ଏହା ଅଭିନୀତ ହୋଇ ଚାଲିଛି । ଏହା କେନ୍ଦୁଝରର ଆଦିବାସୀ ସଂପ୍ରଦାୟଙ୍କୁ ଉତ୍ସାହିତ

କରିଛି ଏବଂ ଗ୍ରାମ ଓ ପୁର ସଂପ୍ରଦାୟ ମଧ୍ୟରେ ବୈପ୍ଳବିକ ଜାଗରଣ ସୃଷ୍ଟି କରି-ପାରିଛି । ଏ ପୁସ୍ତକରେ ଐତିହାସିକ ସତ୍ୟତା ଯାହା ଥାଉ ନା କାହିଁକି ନାଟକୀୟ ଉତ୍କଣ୍ଠା ଓ ଚରିତ୍ର ଚିତ୍ରଣ ସମସ୍ତ ସଚେତନତା ବହନ କରେ । ଏହାପରି ଅସଂଖ୍ୟ ନାଟକର ସଫଳ ସ୍ରଷ୍ଟା ଶ୍ରୀ ମହାନ୍ତି ।

## ଜନଶ୍ରୁତି ବହୁଳ କେନ୍ଦୁଝର—

ଏହି ପୁସ୍ତକଟି ତା୧୫।୧।୧୯୮୬, ନୂଆଁ ଢଙ୍ଗରେ ପ୍ରକାଶ ପାଇ, ଦୀର୍ଘକାଳ ସୁପ୍ତ କେନ୍ଦୁଝର ପାଠକ ପାଠିକାଙ୍କ ମଧ୍ୟରେ ଚହଲ ପକାଇ ଦେଇଛି । ଏହା କେନ୍ଦୁଝରର ସାଂସ୍କୃତିକ ଆବିଷ୍କାରକମାନଙ୍କପାଇଁ ଦିଗ ନିର୍ଣ୍ଣୟ ଯନ୍ତ୍ର ସଦୃଶ । ଏହା ଉପରେ ସୁ-ସଂହତ ଜନମତ ପ୍ରକାଶ ପାଇବା କାଳ ସାପେକ୍ଷ । ଏହାର ୨ୟ ସଂସ୍କରଣ ପ୍ରକାଶ ପାଉଥିବା ଆନନ୍ଦର କଥା । କିନ୍ତୁ ଏଭଳି ପୁସ୍ତକରେ ଏକ ଅଭାବ ଅନୁଭବ କରାଯାଏ ଯାହା ଲେଖକ ନିଜେ ପ୍ରକାଶ କରିବାର ସୁବିଧା ନାହିଁ । ଏଣୁ ଏ ପରିଶିଷ୍ଟ ସଂଯୋଜିତ କରିବାକୁ ପଡ଼ୁଛି ।

ଶ୍ରୀ ଶତ୍ରୁଘ୍ନ ମହାନ୍ତି ଏକାଧାରରେ ଜଣେ ଦରଦୀ କବି, ଯୁଗଧର୍ମୀ ନାଟ୍ୟକାର, ଆଞ୍ଚଳିକ ସଂସ୍କୃତିର ଗବେଷକ ଏବଂ ସଂଗଠକ । ସେ ମିଳନୀ ସାହିତ୍ୟ ସଂସଦ କେନ୍ଦୁଝର, ଯଦୁମଣି ସାହିତ୍ୟ ସଂସଦ, ପୁରୀ ପ୍ରଭୃତି ସ୍ୱନାମ-ଧନ୍ୟ ସାରସ୍ୱତ ଅନୁଷ୍ଠାନମାନଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । କଲେକ୍ଟୋରେଟ୍ କଲଚରାଲ କ୍ଲବ, ମିଳନୀ ସଂସଦ ପ୍ରମୁଖ ଅନୁଷ୍ଠାନ ଗଠନରେ ମଧ୍ୟ ତାଙ୍କ ଅବଦାନ ଉଲ୍ଲେଖନୀୟ । ସାହିତ୍ୟ ଦେବତା ଲେଖକଙ୍କ ସର୍ବ କୁଶଳ କରନ୍ତୁ । "ରସୋ ବୈ ସଃ"

**ଶ୍ରୀ ଦିବାକର ସାହୁ**
ଉପ-ସଭାପତି, ମିଳନୀ ସାହିତ୍ୟ ସଂସଦ
ସମ୍ପାଦକ—ବନବାଣୀ
କେନ୍ଦୁଝର

# କେନ୍ଦୁଝର ରାଜବଂଶାନୁକ୍ରମ ସାରଣୀ

## ରାଜା ଜ୍ୟୋତି ଭଞ୍ଜଙ୍କଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ରାଜା ଓ ରାଜତ୍ୱକାଳର ତାଲିକା

| କ୍ର. ନ. | | ରାଜାଗଣ | ଅମ୍ଳୀ ଅବ୍ଦ | ଇଂରାଜୀ ଅବ୍ଦ | ମନ୍ତବ୍ୟ |
|---|---|---|---|---|---|
| ୧ । | ରାଜା | ଜ୍ୟୋତି ଭଞ୍ଜ | ୫୩୫ ଠାରୁ ୫୫୫ | ୧୧୨୮ ଠାରୁ ୧୧୪୮ | |
| ୨ । | ରାଜା | ଉଦସ୍ତ ଭଞ୍ଜ | ୫୫୫ ଠାରୁ ୫୮୦ | ୧୧୪୮ ଠାରୁ ୧୧୭୩ | |
| ୩ । | ରାଜା | ଗଢେଶ୍ୱର ଭଞ୍ଜ | ୫୮୦ ଠାରୁ ୫୮୩ | ୧୧୭୩ ଠାରୁ ୧୧୭୬ | |
| ୪ । | ରାଜା | ଅନନ୍ତ ଭଞ୍ଜ | ୫୮୩ ଠାରୁ ୫୮୮ | ୧୧୭୬ ଠାରୁ ୧୧୮୧ | |
| ୫ । | ରାଜା | ଦସ୍ତାନିଧି ଭଞ୍ଜ | ୫୮୮ ଠାରୁ ୬୦୮ | ୧୧୮୧ ଠାରୁ ୧୨୦୧ | |
| ୬ । | ରାଜା | ରତ୍ନାକର ଭଞ୍ଜ | ୬୦୮ ଠାରୁ ୬୨୫ | ୧୨୦୧ ଠାରୁ ୧୨୧୮ | |
| ୭ । | ରାଜା | ଚୂଡେଶ୍ୱର ଭଞ୍ଜ | ୬୨୫ ଠାରୁ ୬୪୩ | ୧୨୧୮ ଠାରୁ ୧୨୩୬ | |
| ୮ । | ରାଜା | ସନ୍ତ ଭଞ୍ଜ | ୬୪୩ ଠାରୁ ୬୫୩ | ୧୨୩୬ ଠାରୁ ୧୨୪୬ | |
| ୯ । | ରାଜା | ନରହର ଭଞ୍ଜ | ୬୫୩ ଠାରୁ ୬୭୩ | ୧୨୪୬ ଠାରୁ ୧୨୬୬ | |
| ୧୦ । | ରାଜା | ଯଦୁନାଥ ଭଞ୍ଜ | ୬୭୩ ଠାରୁ ୬୯୯ | ୧୨୬୬ ଠାରୁ ୧୨୯୨ | |

| କ୍ର. ନଂ | ରାଜାଗଣ | ଅମ୍ଲୀ ଅବ୍ଦ | ଇଂରାଜୀ ଅବ୍ଦ | ମନ୍ତବ୍ୟ |
|---|---|---|---|---|
| ୧୧ । | ରଜା ଗୋବର୍ଦ୍ଧନ ଭଞ୍ଜ | ୬୯୯ ଠାରୁ ୭୩୬ | ୧୨୯୨ ଠାରୁ ୧୩୨୯ | କେନ୍ଦୁଝର ଇତିହାସର |
| ୧୨ । | ରଜା ଗଙ୍ଗାଧର ଭଞ୍ଜ | ୭୩୬ ଠାରୁ ୭୪୭ | ୧୩୨୯ ଠାରୁ ୧୩୪୦ | |
| ୧୩ । | ରଜା ଜଗନ୍ନାଥ ଭଞ୍ଜ | ୭୪୭ ଠାରୁ ୭୬୧ | ୧୩୪୦ ଠାରୁ ୧୩୫୪ | |
| ୧୪ । | ରଜା ଶ୍ରୀଧର ଭଞ୍ଜ | ୭୬୧ ଠାରୁ ୭୮୦ | ୧୩୫୪ ଠାରୁ ୧୩୭୩ | |
| ୧୫ । | ରଜା ଶ୍ରୀକର ଭଞ୍ଜ | ୭୮୦ ଠାରୁ ୮୧୯ | ୧୩୭୩ ଠାରୁ ୧୪୧୨ | ୧୩୬୯ ଠାରୁ ୧୩୮୨ |
| ୧୬ । | ରଜା ହୃଷୀକେଶ ଭଞ୍ଜ | ୮୧୯ ଠାରୁ ୮୬୩ | ୧୪୧୨ ଠାରୁ ୧୪୫୬ | ୧୩୮୨ ଠାରୁ ୧୪୦୬ |
| ୧୭ । | ରଜା ଗୋପୀନାଥ ଭଞ୍ଜ | ୮୬୩ ଠାରୁ ୮୮୪ | ୧୪୫୬ ଠାରୁ ୧୪୭୭ | ୧୪୦୬ ଠାରୁ ୧୪୧୭ |
| ୧୮ । | ରଜା ଢାଡ଼ୁ ଭଞ୍ଜ | ୮୮୪ ଠାରୁ ୯୦୯ | ୧୪୭୭ ଠାରୁ ୧୫୦୨ | ୧୪୧୭ ଠାରୁ ୧୪୩୨ |
| ୧୯ । | ରଜା ଚନ୍ଦ୍ରଶେଖର ଭଞ୍ଜ | ୯୦୯ ଠାରୁ ୯୫୯ | ୧୫୦୨ ଠାରୁ ୧୫୪୩ | ୧୪୩୨ ଠାରୁ ୧୪୫୩ |
| ୨୦ । | ରଜା ଜଗନ୍ନାଥ ଭଞ୍ଜ | ୯୫୯ ଠାରୁ ୯୯୨ | ୧୫୪୩ ଠାରୁ ୧୫୮୫ | ୧୪୫୩ ଠାରୁ ୧୪୬୧ |
| ୨୧ । | ରଜା ତ୍ରିଲୋଚନ ଭଞ୍ଜ | ୯୯୨ ଠାରୁ ୧୦୧୧ | ୧୫୮୫ ଠାରୁ ୧୬୦୩ | ୧୪୬୧ ଠାରୁ ୧୪୮୦ |
| ୨୨ । | ରଜା ରାଜଗୋବିନ୍ଦ ଭଞ୍ଜ | ୧୦୧୧ ଠାରୁ ୧୦୪୧ | ୧୬୦୩ ଠାରୁ ୧୬୩୪ | ୧୪୮୦ ଠାରୁ ୧୫୩୪ |
| ୨୩ । | ରଜା ବୀରଭଦ୍ର ଭଞ୍ଜ | ୧୦୪୧ ଠାରୁ ୧୦୪୮ | ୧୬୩୪ ଠାରୁ ୧୬୪୧ | ୧୫୩୪ ଠାରୁ ୧୫୫୧ |
| ୨୪ । | ରଜା ନାରାୟଣ ଭଞ୍ଜ | ୧୦୪୮ ଠାରୁ ୧୦୬୧ | ୧୬୪୧ ଠାରୁ ୧୬୫୪ | |
| ୨୫ । | ରଜା ଶିବନାରାୟଣ ଭଞ୍ଜ | ୧୦୬୧ ଠାରୁ ୧୦୯୫ | ୧୬୫୪ ଠାରୁ ୧୬୮୮ | |
| ୨୬ । | ରଜା ଲକ୍ଷ୍ମୀନାରାୟଣ ଭଞ୍ଜ | ୧୦୯୫ ଠାରୁ ୧୧୦୭ | ୧୬୮୮ ଠାରୁ ୧୭୦୦ | |
| ୨୭ । | ରଜା ଜଗନ୍ନାଥ ଭଞ୍ଜ | ୧୧୦୭ ଠାରୁ ୧୧୨୬ | ୧୭୦୦ ଠାରୁ ୧୭୧୯ | |

| କ୍ର. ନଂ. | | ରାଜାଗଣ | ଅମ୍ଲୀ ଅବ୍ଦ | ଇଂରାଜୀ ଅବ୍ଦ | ମନ୍ତବ୍ୟ |
|---|---|---|---|---|---|
| ୨୮ । | ରାଜା | ରଘୁନାଥ ଭଞ୍ଜ | ୧୧୨୬ ଠାରୁ ୧୧୪୩ | ୧୭୧୯ ଠାରୁ ୧୭୩୬ | ୧୭୧୯ ଠାରୁ ୧୭୨୬ |
| ୨୯ । | ରାଜା | ଗୋପୀନାଥ ଭଞ୍ଜ | ୧୧୪୩ ଠାରୁ ୧୧୬୪ | ୧୭୩୬ ଠାରୁ ୧୭୫୭ | ୧୭୨୭ ଠାରୁ ୧୭୩୬ |
| ୩୦ । | ରାଜା | ନରସିଂହ ଭଞ୍ଜ | ୧୧୬୪ ଠାରୁ ୧୧୬୫ | ୧୭୫୭ ଠାରୁ ୧୭୫୮ | ୧୭୩୬ ଠାରୁ ୧୭୫୮ |
| ୩୧ । | ରାଜା | ଧନେଶ୍ୱର ନାରାୟଣ ଭଞ୍ଜ | ୧୧୬୫ ଠାରୁ ୧୧୬୯ | ୧୭୫୮ ଠାରୁ ୧୭୫୮ | ୧୭୫୮ ଠାରୁ ୧୭୬୨ |
| ୩୨ । | ରାଜା | ଜଗତେଶ୍ୱର ନାରାୟଣ | ୧୧୬୯ ଠାରୁ ୧୧୬୯ | ୧୭୫୮ ଠାରୁ ୧୭୬୨ | ୧୭୫୮ ଠାରୁ ୧୭୬୨ |
| ୩୩ । | ରାଜା | ପ୍ରତାପ ବଳଭଦ୍ର ଭଞ୍ଜ | ୧୧୬୯ ଠାରୁ ୧୨୦୪ | ୧୭୬୨ ଠାରୁ ୧୭୯୭ | ୧୭୬୪ ଠାରୁ ୧୭୯୨ |
| ୩୪ । | ରାଜା | ଜନାର୍ଦ୍ଦନ ଭଞ୍ଜ | ୧୨୦୪ ଠାରୁ ୧୨୩୯ | ୧୭୯୭ ଠାରୁ ୧୮୩୨ | ୧୭୯୨ ଠାରୁ ୧୮୩୧ |
| ୩୫ । | ରାଜା | ବିଶ୍ୱେଶ୍ୱର ଭଞ୍ଜ | ୧୨୩୯ ଠାରୁ ୧୨୪୭ | ୧୮୩୨ ଠାରୁ ୧୮୩୯ | ୧୮୩୧ ଠାରୁ ୧୮୩୮ |
| ୩୬ । | ରାଜା | ମହାରାଜ ଗଦାଧର ନାରାୟଣ ଭଞ୍ଜ | ୧୨୪୭ ଠାରୁ ୧୨୬୮ | ୧୮୩୯ ଠାରୁ ୧୮୬୧ | ୧୮୩୮ ଠାରୁ ୧୮୬୭ |
| ୩୭ । | ମହାରାଜା | ଧନୁର୍ଜ୍ଜୟ ନାରାୟଣ ଭଞ୍ଜ | ୧୨୬୮ ଠାରୁ ୧୩୧୨ | ୧୮୬୧ ଠାରୁ ୧୯୦୫ | |
| ୩୮ । | ରାଜା | ଗୋପୀନାଥ ନାରାୟଣ ଭଞ୍ଜ | | ୧୯୦୫ ଠାରୁ ୧୯୨୬ | |
| ୩୯ । | ରାଜା | ବଳଭଦ୍ର ନାରାୟଣ ଭଞ୍ଜ | | ୧୯୨୬ ଠାରୁ ୧୯୬୩ | |
| ୪୦ । | ରାଜା | ନୃସିଂହ ନାରାୟଣ ଭଞ୍ଜଦେଓ | | ୧୯୬୩ ଠାରୁ ୧୯୮୫ | |
| ୪୧ । | ରାଜା | ଅନନ୍ତ ନାରାୟଣ ଭଞ୍ଜଦେଓ | | ୧୯୮୬ ଠାରୁ ଅଦ୍ୟାବଧି | |

ପି—ଲକ୍ଷ୍ମୀନାରାୟଣ ଭଞ୍ଜଦେଓ—ଗ୍ରେଷ୍ଟରାୟ ସାହେବ

# ଶ୍ରୀ ଶତ୍ରୁଘ୍ନ ମହାନ୍ତଙ୍କ ଲେଖନୀରୁ—

ପ୍ରକାଶିତ—୧ । ଶକୁନ୍ତଳା (କାବ୍ୟ ଓ ନୃତ୍ୟନାଟିକା), ୨ । କଳିଯୁଗ ଚଉତିଶା, ୩ । ମନର ଗୁହାରି (ଜଣାଣ), ୪ । ବସୁନ୍ଧରା ଧରଣୀ (ନାଟକ), ୫ । କୁଆଁଙ୍କ ଫଗୁଣ (ବନଫୁଲ), ୬ । କେନ୍ଦୁଝରର ଲୋକନୃତ୍ୟ ଓ ନୃତ୍ୟକଳା (ଓଡ଼ିଆ ଲୋକନାଟ୍ୟ), ୭ । ସାହିତ୍ୟକ ଇତିହାସ (ପ୍ରଜାତନ୍ତ୍ର), ୮ । ବୈତରଣୀ (ବୈତରଣୀ ପତ୍ରିକା), ୯ । କେତେଗୁଡ଼ିଏ ପ୍ରବନ୍ଧ ଓ କବିତା (ବିଭିନ୍ନ ପତ୍ରପତ୍ରିକା) ।

(ଅପ୍ରକାଶିତ—୧ । ଧଳା ପରଦାର ଅନ୍ତରାଳେ, ୨ । ଆଶ୍ରିତ, ୩ । ମୁଠେ ମାଟି ପାଣ୍ଡୁଲିପି) ନୂହେଁ ପାଉଣ, ୪ । ଏ ଦୁନିଆ ବି ଏମିତି ହେଁ, ୫ । ଚନ୍ଦ୍ରଲେଖା, ୬ । ଇନ୍ଦ୍ରରପାଳ [ସାମାଜିକ ନାଟକ], ୭ । ଅରଣ୍ୟ ଫୁଲ [ପ୍ରକାଶିତ], ୮ । ଆଦର୍ଶ ବାପୁଜୀ, ୯ । ସୁନା ଆଖି, ୧୦ । ସାଇକ୍ଲୋନ, ୧୧ । ମୀମାଂସା [ଐତିହାସିକ], ୧୨ । ଜଳନ୍ତା ନିଆଁ ଖଣ୍ଡ, ୧୩ । ଉପେନ୍ଦ୍ର ଭଞ୍ଜ, ୧୪ । ମାତୃମୂର୍ତ୍ତି ଏ ସମସ୍ତ, ୧୫ । ଦାନର ମହତ୍ତ୍ୱ [ପୌରାଣିକ ନାଟକ], ୧୬ । ଫାଲ୍ଗୁନୀ, ୧୭ । ସତ୍ତା ଦର୍ପଣ, ମାଆର ଆବିର୍ଭାବ, [ନାଟକ], ୧୮ । ଜୟଦେବ, ୧୯ । ଦଶଭୁଜା, ୨୦ । ତାରିଣୀ, ୨୧ । ସୀତା ବିସର୍ଜିତା, ୨୨ । ଲବ-କୁଶ, ୨୩ । ନୀଳମାଧବ, ୨୪ । ଭକ୍ତ ପରୀକ୍ଷା [ନୃତ୍ୟନାଟିକା], ୨୫ । ରାମାୟଣ (୭ଖଣ୍ଡ) [ନାଟିକା ଓ ଗୀତିନାଟ୍ୟ], ୨୬ । ଗଳ୍ପ, ୨୭ । କବିତା ଗୁଚ୍ଛ, ୨୮ । ଜୀବନୀ, ୨୯ । ରାଧା-କୃଷ୍ଣ ମୋକଦ୍ଦମା ଓ ରୁକ୍ମିଣୀ ବିଭା କାବ୍ୟ, ୩୦ । ମାନଭଞ୍ଜନ, ୩୧ । ଭେନିସ ବଣିକ, ୩୨ । ଶ୍ରୀମଦ୍ ଭଗବତ୍ ଗୀତା [ଏକାଙ୍କିକା ଓ ଗୀତିନାଟ୍ୟ], ୩୩ । ତୁଳସୀ କାବ୍ୟ, ୩୪ । ପାଟଳିପୁତ୍ରର ନଗର ବଧୂ [ଐତିହାସିକ ନାଟକ], ୩୫ । ଜଳନ୍ଧର ବଧ, ଝୀମା ଭୂୟାଁ, ଅପହଞ୍ଚ କଏ, ଶ୍ରୀକୃଷ୍ଣ ବାଲ୍ୟଲୀଳା ଓ କଂସ ବଧ, ଆଜ୍ଞ ଖୋଜୁ ଖୋଜୁ ମୁକୁତା [ନାଟକ] ।

ଏହା ବ୍ୟତୀତ ଅନେକଗୁଡ଼ିଏ ଗପ ପାଣ୍ଡୁଲିପି ଆକାରରେ ଓ ଦୈନନ୍ଦିନ ଯୁଗୋପଯୋଗୀ କବିତା ମଧ୍ୟ ରଚିତ ଅଛି । ଲକ୍ଷ୍ମୀ ଓ ସରସ୍ୱତୀଙ୍କ ଚିରନ୍ତନ ବିବାଦ ଏ ଦରିଦ୍ର ଲେଖକର ଭାଗ୍ୟରେ ଲାଗି ରହିଥିବାରୁ ଏଗୁଡ଼ିକ ଲୋକ ମୁଖରେ ବିସ୍ତୃତ ହୋଇ ପାରୁନାହିଁ ।